# ଉତ୍କଳ ପ୍ରସଙ୍ଗ

ଅକ୍ଟୋବର ୨୦୦୯



***Published by:***

Department of Information & Public Relations
Government of Orissa,
Bhubaneswar-753010



# ଓଡ଼ିଶାରେ ଗାନ୍ଧୀ

ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ

**ସଂ**ପ୍ରତି ମାନବାଧିକାର ପ୍ରତି ଅଙ୍ଗୀକାରବଦ୍ଧ ଏକ ବିଶ୍ୱରେ ଆମେ ବାସ କରୁଛେଁ, ଯେଉଁଠି ପ୍ରତ୍ୟେକ ମଣିଷ ଜନ୍ମରୁ ସ୍ୱାଧୀନ ଓ ସମାନ । ଆଜି ଏହା ସମ୍ଭବ ହୋଇପାରିଛି, ବହୁ ମୁକ୍ତିକାମୀ, ସ୍ୱାଧୀନତା ପ୍ରେମୀ ବ୍ୟକ୍ତିଙ୍କ ନିଷ୍ପାପର, ନିରବଚ୍ଛିନ୍ନ ଓ ଏକନିଷ୍ଠ ସଂଗ୍ରାମ ଯୋଗୁଁ, ଯେଉଁମାନଙ୍କ ମାନବିକ ମୂଲ୍ୟବୋଧ ଓ ମାନବ ଅଧିକାର ଉପରେ ଥିଲା ଗଭୀର ଆସ୍ଥା ଓ ବିଶ୍ୱାସ । ଆଉ ଏମାନଙ୍କ ଭିତରେ ଅନନ୍ୟ ଓ ପଥିକୃତ ଥିଲେ, ବିଗତ ବିଂଶ ଶତାବ୍ଦୀର କିମ୍ବଦନ୍ତୀ-ପୁରୁଷ ମହାମାନବ ମହାତ୍ମା ଗାନ୍ଧୀ । ସେ ଭାରତକୁ ସ୍ୱାଧୀନତା, ସମାନତା ଏବଂ ନ୍ୟାୟ ଭିତ୍ତିରେ ଆଗକୁ ଆଗେଇଯିବା ପାଇଁ ପଥ ପ୍ରଦର୍ଶକ ସାଜିଥିଲେ । ବାସ୍ତବରେ ସେ ହିଁ ଥିଲେ ସ୍ୱାଧୀନ ଭାରତର ମୁଖ୍ୟ ବିଦ୍ଧାଣୀ, ବିଶ୍ୱର ସର୍ବବୃହତ୍ ଓ ସର୍ବ ଶକ୍ତିମାନ ଗଣତନ୍ତ୍ର ଏବଂ ଆଜିର ବିଶ୍ୱ ମାନବାଧିକାରର ପ୍ରମୁଖ ପ୍ରବକ୍ତା । ବର୍ଣ୍ଣ ବୈଷମ୍ୟକୁ ବିରୋଧ କରି ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରେ ଯେଉଁ ସତ୍ୟାଗ୍ରହ ଓ ଅହିଂସା ଆନ୍ଦୋଳନ ଆରମ୍ଭ କରିଥିଲେ, ତାହାରି ବଳରେ ଭାରତ ଆଜି ବ୍ରିଟିଶ୍ ସାମ୍ରାଜ୍ୟବାଦ କବଳରୁ ମୁକ୍ତ ହେବା ସହ ଏକ ଶୋଷଣ ଓ ଅନ୍ୟାୟ ମୁକ୍ତ ସମାଜରେ ପରିଣତ ହୋଇଛି, ଯାହା ସମଗ୍ର ବିଶ୍ୱ ପାଇଁ ଏବେ ବି ଏକ ଦୃଷ୍ଟାନ୍ତ । ପ୍ରଖ୍ୟାତ ବୈଜ୍ଞାନିକ ଆଲର୍ବଟ ଆଇନଷ୍ଟାଇନ୍ ସେଇଥିପାଇଁ ଯଥାର୍ଥରେ କହିଥିଲେ, 'ଭବିଷ୍ୟତ ପିଢ଼ି ହୁଏତ ବିଶ୍ୱାସ କରିବ ନାହିଁ ଯେ ଗାନ୍ଧୀ ନାମରେ ଜଣେ ରକ୍ତ ମାଂସଧାରୀ ଏପରି ଜଣେ ମଣିଷ ଏଇ ପୃଥିବୀରେ ଜନ୍ମଗ୍ରହଣ କରିଥିଲେ ।'



**୧୯୨୧ରୁ ୧୯୪୬ ମଧ୍ୟରେ ମହାତ୍ମା ଗାନ୍ଧୀ ଆଠ ଥର ଓଡ଼ିଶା ଗସ୍ତରେ ଆସିଥିଲେ । ଆଉ ଗାନ୍ଧିଜୀଙ୍କର ଏହି ଗସ୍ତ ଓଡ଼ିଶାବାସୀଙ୍କ ଉପରେ ଯାଦୁକରୀ ପ୍ରଭାବ ପକାଇଥିଲା ।** ଶହ ଶହ ସଂଖ୍ୟାରେ ଓଡ଼ିଶାବାସୀ ଆଗେଇ ଆସିଥିଲେ ବ୍ରିଟିଶ ସରକାର ବିରୋଧରେ ଆରମ୍ଭ ହୋଇଥିବା ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରିବା ପାଇଁ । ଛାତ୍ରମାନେ ପାଠ ଛାଡ଼ି ଦେଲେ, ବୃତ୍ତିଜୀବୀମାନେ ସେମାନଙ୍କର ବୃତ୍ତି ଛାଡ଼ି ଦେଲେ, ସମସ୍ତେ ସମୂହଭାବେ ସଂଗ୍ରାମରେ ଅଂଶ ଗ୍ରହଣ କରି ବ୍ରିଟିଶ ପୁଲିସ୍ ହାତରେ ଗିରଫ ହେଲେ । ସାଧାରଣ ଜନତା ମଧ୍ୟ ନିଜ ନିଜର ଅସାଧାରଣ ସାହସ ପ୍ରଦର୍ଶନପୂର୍ବକ ଏଥିରୁ ବାଦ ଗଲେ ନାହିଁ ।

ପ୍ରଥମ ଥର ପାଇଁ ଗାନ୍ଧିଜୀ ଓଡ଼ିଶା ଆସିଥିଲେ ୧୯୨୧ ମସିହାରେ । ୧୯୨୧ ମସିହା ମାର୍ଚ୍ଚ ମାସ ୨୩ ତାରିଖ ଦିନ ଦୋଳ ପୂର୍ଣ୍ଣିମା ତିଥିରେ ଗାନ୍ଧିଜୀ ସାଙ୍ଗରେ କସ୍ତୁରବାଙ୍କୁ ଧରି ଆସି ପହଞ୍ଚିଥିଲେ କଟକରେ । ସେଦିନ ଗାନ୍ଧିଜୀଙ୍କୁ ସ୍ୱାଗତ କରିବା ପାଇଁ କଟକ ରେଳ ଷ୍ଟେସନରେ ପରିଲକ୍ଷିତ ହୋଇଥିଲା ଅସମ୍ଭବ ଭିଡ଼ । ଗାନ୍ଧିଜୀ ଯେଉଁ ବାଟ ଦେଇ ଆସୁଥିଲେ, ସେଇ ବାଟ କଡ଼ରେ ଗାନ୍ଧିଜୀଙ୍କର ଗୋଟିଏ ଝଲକ ପାଇବା ପାଇଁ ଲୋକମାନଙ୍କ ମଧ୍ୟରେ ଆରମ୍ଭ ହୋଇଯାଇଥିଲା ପ୍ରତିଯୋଗିତା । ଗଛ ଉପରଠାରୁ ଆରମ୍ଭ କରି ଛାତ ଉପର ପର୍ଯ୍ୟନ୍ତ କିଛି ବି ବାଦ୍ ପଡ଼ିନଥିଲା ସେଥିରୁ । ସେଦିନ ମଧ୍ୟାହ୍ନରେ ଗାନ୍ଧିଜୀ ତାଙ୍କର ପ୍ରଥମ ସଭା କଟକର କଦମରସୁଲଠାରେ କରିଥିଲେ । ସେହି ସଭାରେ ଖିଲାପତ୍ ଆନ୍ଦୋଳନ ଏବଂ ହିନ୍ଦୁ-ମୁସଲିମ୍ ଭାଇଚାରା ଉପରେ ସେ ଉଦ୍‌ବୋଧନ ଦେଇଥିଲେ । ଅପରାହ୍ନରେ ସେ ବିନୋଦବିହାରୀଠାରେ ଆୟୋଜିତ ମହିଳାମାନଙ୍କର ଅନ୍ୟ ଏକ ସଭାରେ ଯୋଗଦେଇ, ଅଳଙ୍କାର ଓ ଆଭୂଷଣ ନ ପିନ୍ଧିବାକୁ ମହିଳାମାନଙ୍କୁ ପରାମର୍ଶ ଦେବା ସହ ସେହିସବୁ ଅଳଙ୍କାରକୁ

ସ୍ୱାଧୀନତା ସଂଗ୍ରାମ ଉଦ୍ଦେଶ୍ୟରେ ଦାନ କରିଦେବାକୁ ଆହ୍ୱାନ ଦେଇଥିଲେ । ଗାନ୍ଧିଜୀଙ୍କ ଭାଷଣ ପରେ ସେଦିନ ସେହି ସଭାରେ ଉପସ୍ଥିତ ଥିବା ଶତାଧିକ ମହିଳା ନିଜ ନିଜର ଅଳଙ୍କାର ସବୁକୁ ଓହ୍ଲାଇ ଗାନ୍ଧିଜୀଙ୍କୁ ଅର୍ପଣ କରିଥିଲେ । ଏଥିରୁ ସଂଗୃହୀତ ହୋଇଥିଲା, ପ୍ରାୟ ୬୦ରୁ ୭୦ ତୋଳା ସୁନା, ରୂପା ଅଳଙ୍କାର ଓ ନଗଦ ପ୍ରାୟ ହଜାରେ ଟଙ୍କା ।

ସେଦିନ ସନ୍ଧ୍ୟାରେ ଆଉ ଏକ ବିଶାଳ ସଭାର ଆୟୋଜନ ହୋଇଥିଲା କଟକ କାଠଯୋଡ଼ି ନଦୀ ବାଲିରେ । ସେଠାରେ ଉପସ୍ଥିତ ଜନତାଙ୍କୁ ଉଦ୍‌ବୋଧନ ଦେଇ ଗାନ୍ଧିଜୀ କହିଥିଲେ, ଆମେ ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଇଂରେଜମାନଙ୍କୁ ସାହାଯ୍ୟ ଓ ସମର୍ଥନ ଦେଇଥିଲୁଁ, ଆଉ ତା'ର ପ୍ରତିଦାନରେ ସେମାନେ ଆମକୁ ଦେଲେ ଜାଲିଓ୍ୱାନାବାଗ୍ ଗଣହତ୍ୟା । ସେଥିପାଇଁ ଏବେ ଅସହଯୋଗ ବ୍ୟତୀତ ଆଉ କୌଣସି ଅନ୍ୟ ବିକଳ୍ପ ଆମମାନଙ୍କ ନିକଟରେ ନାହିଁ । ସେହି ଅବସରରେ ସେ ଇଂରେଜମାନଙ୍କଦ୍ୱାରା ପ୍ରସ୍ତୁତ ସମସ୍ତ ବସ୍ତୁକୁ ପ୍ରତ୍ୟାଖାନ କରିବାକୁ ଆହ୍ୱାନ ଦେଇଥିଲେ । ସେହି କ୍ରମରେ ଗାନ୍ଧିଜୀ ମଧ୍ୟ କହିଥିଲେ ଯେ ପାଶ୍ଚାତ୍ୟ ଶିକ୍ଷା ଆମର କୌଣସି କାମରେ ଆସୁନାହିଁ । ସେଥିପାଇଁ ପାଶ୍ଚାତ୍ୟ ଶିକ୍ଷାକୁ ମଧ୍ୟ ପ୍ରତ୍ୟାଖାନ କରିବା ଦରକାର । ତେବେ ଗାନ୍ଧିଜୀଙ୍କର ସେହି ବକ୍ତବ୍ୟ ସଭାରେ ସୃଷ୍ଟି କରିଥିଲା କିଛିଟା ଭ୍ରୂକୁଞ୍ଚନ । ସଭାରେ ଉପସ୍ଥିତ ଥିବା କିଛି ଶ୍ରୋତା ଠିଆ ହୋଇ ଗାନ୍ଧିଜୀଙ୍କୁ ପ୍ରଶ୍ନ କରିଥିଲେ, ଯଦି ପାଶ୍ଚାତ୍ୟ ଶିକ୍ଷାର କୌଣସି ଉପାଦେୟତା ନାହିଁ, ତେବେ ସେ ନିଜେ କିପରି ପାଶ୍ଚାତ୍ୟ ଶିକ୍ଷା ଗ୍ରହଣ କଲେ । ତାହା ଶୁଣିବା ମାତ୍ରେ ଗାନ୍ଧିଜୀ ପ୍ରଶ୍ନକର୍ତ୍ତାଙ୍କୁ ତାଙ୍କର ପ୍ରଶ୍ନ ଶେଷ କରିବାକୁ ନଦେଇ କହିଲେ, 'ବୁଦ୍ଧ, ଚୈତନ୍ୟ, ଶଙ୍କର, କବୀର ଏବଂ ନାନକଙ୍କ ପରି ଅନେକ ବିଦ୍ୱାନ ଓ ମନିଷୀ ପାଶ୍ଚାତ୍ୟ ଶିକ୍ଷାର କୌଣସି ଧାର୍ ଧରି ନାହାନ୍ତି । ଆଜି ମୁଁ ଭାବୁଛି ସେମାନଙ୍କ ପଦାଙ୍କ ଅନୁସରଣ କରି ମୁଁ ବି ଯଦି କୌଣସି ପାଶ୍ଚାତ୍ୟ ଶିକ୍ଷା ଗ୍ରହଣ କରି ନଥାନ୍ତି, ତାହେଲେ ମୋ' ପାଇଁ ତାହା ବହୁତ ଭଲ ହୋଇଥାନ୍ତା । ସେଦିନ ସେହି ସଭାରେ ମଧ୍ୟ ଘଟିଥିଲା ଅନ୍ୟ ଏକ ଅଭାବନୀୟ ଘଟଣା । ଗାନ୍ଧୀଙ୍କ ସଭାକୁ ଭଣ୍ଡୁର କରିବା ଲକ୍ଷ୍ୟରେ ସେଠାରେ ଉପସ୍ଥିତ ଥିବା ଜନତାଙ୍କ ମଧ୍ୟରୁ କେହିଜଣେ ଗାନ୍ଧୀଙ୍କ ଆଡ଼କୁ ଲକ୍ଷ୍ୟ କରି ଗୋଟିଏ ଛିଣ୍ଡା କୁଲା ଫୋପାଡ଼ିବା ସହ ଚିତ୍କାର କରି କହିଲା, 'ଏଇଟା ହେଉଛି ଗାନ୍ଧୀଙ୍କୁ ଉପହାର ।' ଆଉ ସବୁଠାରୁ ଉଲ୍ଲେଖନୀୟ ଘଟଣା ହେଲା, ସେଦିନ ସେହି ସଭାରେ ଗାନ୍ଧୀଙ୍କ ଆଡ଼କୁ ଫୋପଡ଼ା ଯାଇଥିବା ସେଇ ଛିଣ୍ଡା କୁଲାଟି ସେହିଠାରେ ହିଁ କୋଡ଼ିଏ ଟଙ୍କାରେ ନିଲାମ ହୋଇଥିଲା । ଏହାପରେ ଗାନ୍ଧିଜୀ ଗୋପବନ୍ଧୁଙ୍କ ସହ ଭଦ୍ରକ, ସାକ୍ଷୀଗୋପାଳ ଏବଂ ପୁରୀ ଗସ୍ତ କରିବା ସହ ଏହି ସମସ୍ତ ସ୍ଥାନମାନଙ୍କରେ ଆୟୋଜିତ ସାଧାରଣ ସଭାମାନଙ୍କରେ ଉଦ୍‌ବୋଧନ ଦେଇଥିଲେ । ଏହାପରେ ୧୯୨୧ ମସିହା ମାର୍ଚ୍ଚ ୨୯ ତାରିଖ ଦିନ ସେ ବ୍ରହ୍ମପୁର ଅଭିମୁଖେ ଚାଲି ଯାଇଥିଲେ ଗାନ୍ଧିଜୀ ।

ପରବର୍ତ୍ତୀ ସମୟରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଆମନ୍ତ୍ରଣକ୍ରମେ ଦ୍ୱିତୀୟ ଥର ପାଇଁ ଗାନ୍ଧିଜୀ ଓଡ଼ିଶା ଗସ୍ତରେ ଆସିଥିଲେ ୧୯୨୫ ମସିହା ଅଗଷ୍ଟ ୧୯ ତାରିଖରେ । ସେହି ଗସ୍ତ ସମୟରେ ସେ ମଧୁସୂଦନ ଦାସଙ୍କଦ୍ୱାରା ପ୍ରତିଷ୍ଠିତ 'ଉତ୍କଳ ଟ୍ୟାନେରି'କୁ ବୁଲି ଦେଖିବା ସହ କଟକ ଉପକଣ୍ଠରେ ଥିବା କୃଷ୍ଣାଶ୍ରମକୁ ଯାଇ ସେଠାରେ ଥିବା ଅନ୍ତେବାସୀମାନଙ୍କର କଥା ବୁଝିଥିଲେ । ଏହାପରେ ସେଦିନ ସନ୍ଧ୍ୟାରେ ସେ କଟକ ଟାଉନ୍‌ହଲଠାରେ ଆୟୋଜିତ ଏକ ସାଧାରଣ ସଭାରେ ଯୋଗଦେଇ ଓଡ଼ିଶାରୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଏହାପରେ ଗାନ୍ଧିଜୀ ଏକ ପନ୍ଦର ଦିନିଆ ଓଡ଼ିଶା ଗସ୍ତରେ ଆସି ପହଞ୍ଚିଥିଲେ ୧୯୨୭ ଡିସେମ୍ବର ମାସ ୪ ତାରିଖ ଦିନ । ଗାନ୍ଧୀଙ୍କର ସେହି ଗସ୍ତର ମୂଳ ଉଦ୍ଦେଶ୍ୟ ଥିଲା ଖଦୀର ପ୍ରଚାର ଓ ପ୍ରସାର । ସେହି ଗସ୍ତ ସମୟରେ ସେ ବ୍ରହ୍ମପୁର, ଛତ୍ରପୁର, ବାଣପୁର, ବୋଲଗଡ଼, ଖୋର୍ଦ୍ଧା, ଜଟଣୀ, ପୁରୀ ଓ ବାଲେଶ୍ୱର ପ୍ରଭୃତି ଅଞ୍ଚଳ ଗସ୍ତ କରି ସେହିସବୁ ସ୍ଥାନମାନଙ୍କରେ ଆୟୋଜିତ ସାଧାରଣ ସଭାଗୁଡ଼ିକରେ ଉଦ୍‌ବୋଧନ ଦେଇସାରି କଟକ ସହରରେ ଆସି ପହଞ୍ଚିଥିଲେ ଡିସେମ୍ବର ୧୮ ତାରିଖ ଦିନ । ତେବେ କଟକରେ ପହଞ୍ଚିବା ବେଳକୁ ଗାନ୍ଧିଜୀ ତାଙ୍କର ଅବିଶ୍ରାନ୍ତ ଗସ୍ତ ଯୋଗୁଁ ଗୁରୁତର ଅସୁସ୍ଥ ହୋଇପଡ଼ିଥିଲେ । ସେଥିପାଇଁ ସେ ମଧୁସୂଦନ ଦାସଙ୍କ ବାସଭବନରେ ସଂପୂର୍ଣ୍ଣ ବିଶ୍ରାମରେ ରହିଲେ । ସଂପୂର୍ଣ୍ଣ ସୁସ୍ଥ ହେବାପରେ ଗାନ୍ଧିଜୀ କଟକ ଛାଡ଼ିଲେ ଡିସେମ୍ବର ୨୧ ତାରିଖରେ ଅଖିଳ ଭାରତ କଂଗ୍ରେସ ମହାଅଧିବେଶନରେ ଯୋଗ ଦେବାପାଇଁ ମାଡ୍ରାସ ଅଭିମୁଖେ ଯାତ୍ରା କଲେ ସେ ।

ଏହା ପରବର୍ଷ ୧୯୨୮ ମସିହା ଡିସେମ୍ବର ୨୨ ତାରିଖରେ କଲିକତାଠାରେ ଆୟୋଜିତ କଂଗ୍ରେସ ଅଧିବେଶନରେ ଯୋଗ ଦେବାକୁ ଯାଉଥିଲା ବେଳେ ଗାନ୍ଧିଜୀ ମଧ୍ୟ ଯାଇଥିଲେ ଓଡ଼ିଶା ବାଟେ । ଝାରସୁଗୁଡ଼ାଠାରେ ଆୟୋଜିତ ଏକ ସାଧାରଣ ସଭାରେ ଉଦ୍‌ବୋଧନ ଦେଇସାରି ଗାନ୍ଧିଜୀ ଯାଇଥିଲେ ସମ୍ବଲପୁର ଏବଂ ସେଠାରେ ଏକ ସଭାରେ ଉଦ୍‌ବୋଧନ ଦେଇସାରି ସେ ବାହାରି ଯାଇଥିଲେ କଲିକତା ।

ଅସ୍ପୃଶ୍ୟତାକୁ ବିରୋଧ ସହ ହରିଜନମାନଙ୍କର ଉତ୍‌ଥାନ ସକାଶେ ଗାନ୍ଧିଜୀ ଆରମ୍ଭ କଲେ ତାଙ୍କର ପଦଯାତ୍ରା ୧୯୩୪ ମସିହାରେ । ସେହି ଅଭିଯାନ କାଳରେ ଗାନ୍ଧିଜୀ ଦୁଇଥର ଓଡ଼ିଶା ଗସ୍ତରେ ଆସିଥିଲେ । ତାଙ୍କର ପ୍ରଥମ ଗସ୍ତ ଥିଲା ୧୯୩୪ ମସିହା ମେ ମାସ ୫ ତାରିଖ ଦିନ । ସେଦିନ ସେ ଝାରସୁଗୁଡ଼ା ଓ ସମ୍ବଲପୁରଠାରେ ଆୟୋଜିତ ଦୁଇଟି ସାଧାରଣ ସଭାରେ ଉଦ୍‌ବୋଧନ ଦେଇଥିଲେ । ମେ ୮ ତାରିଖ ଦିନ ସେ ପଣ୍ଡିତ ଗୋପବନ୍ଧୁ ଦାସଙ୍କର ଏକ ପ୍ରତିମୂର୍ତ୍ତିକୁ ପୁରୀଠାରେ ଅନାବରଣ କରିଥିଲେ । ତା’ପରେ ପୁରୀଠାରୁ ଗାନ୍ଧିଜୀ ତାଙ୍କର ପଦଯାତ୍ରା ଆରମ୍ଭ କରି ହରେକୃଷ୍ଣପୁର, ଚନ୍ଦନପୁର, ସାକ୍ଷୀଗୋପାଳ, କାଦୁଆ ଆଶ୍ରମ, ଦାଣ୍ଡମୁକୁନ୍ଦପୁର, ପିପିଲି, ବାଳକାଟି, ସତ୍ୟଭାମାପୁର, ବାଲିଅନ୍ତା, ତେଲେଙ୍ଗାପେଣ୍ଠ, କାଜିପାଟଣା ଦେଇ ଆସି ପହଞ୍ଚିଥିଲେ କଟକଠାରେ । ଏହାପରେ ୧୯୩୪ ମେ ୧୬ ତାରିଖ ଦିନ ସେ କଟକରୁ ବାହାରି ଯାଇଥିଲେ ପାଟଣା ଅଭିମୁଖେ ଏ.ଆଇ.ସି.ସି. ସାଧାରଣ ଅଧିବେଶନରେ ଯୋଗ ଦେବାପାଇଁ । ପାଟଣାଠାରେ ଏ.ଆଇ.ସି.ସି. ଅଧିବେଶନ ସରିଯିବା ପରେ ଗାନ୍ଧିଜୀ ଆଉଥରେ ସିଧାସଳଖ ପାଟଣାରୁ ଫେରି ଆସିଥିଲେ ଓଡ଼ିଶା ସେହିବର୍ଷ ମେ ୨୧ ତାରଖ ଦିନ । ଏଥର ଗାନ୍ଧିଜୀ ତାଙ୍କର ପଦଯାତ୍ରା କ୍ରମରେ ଯାଇଥିଲେ, ବିରୀ, ଚମ୍ପାପୁର, ଭେଡ଼ା, ଲେଖନପୁର, ଗୋପୀନାଥପୁର, ବହୁକୁଦ, ପାଟପୁର, ନିଶ୍ଚିନ୍ତକୋଇଲି, କାକଟିଆ, ସାଲାର, ଭଗବତୀପୁର, କେନ୍ଦ୍ରାପଡ଼ା, ବରିମୂଳ, ଇନ୍ଦୁପୁର, ଅଙ୍ଗେଇଶପୁର, କଲ୍ୟାଣପୁର, କଳାମାଟିଆ, କାଇପଦ, ବରୀ, କବୀରପୁର, ସାହାସପୁର, ନେଉଳି, ପୁରୁଷୋତ୍ତମପୁର, ବୁଢ଼ାଘାଟ, ଯାଜପୁର, ମଞ୍ଜୁରି, ତୋଡ଼ାଙ୍ଗ, ଗରଦପୁର, ଭଦ୍ରକ, ମାର୍କୋଣା, ସୋର, କଣ୍ଟାପଡ଼ା, ହଳଦିଆପଡ଼ା, ଅମର୍ଦା ଓ ଜଳେଶ୍ୱର ।

ଏହାପରେ ଗାନ୍ଧିଜୀ ତାଙ୍କର ପରବର୍ତ୍ତୀ ଓଡ଼ିଶା ଗସ୍ତରେ ଆସିଥିଲେ ୧୯୩୮ ମସିହା ମାର୍ଚ୍ଚ ୨୫ ତାରିଖରେ । ଗାନ୍ଧୀଙ୍କର ସେହି ଓଡ଼ିଶା ଗସ୍ତ ସମୟରେ ତାଙ୍କ ସହ ଆସିଥିଲେ, କସ୍ତୁରବା, ଦୁର୍ଗାବେନ୍, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ, ରାଜେନ୍ଦ୍ର ପ୍ରସାଦ, ଆଚାର୍ଯ୍ୟ କୃପାଳିନୀ, ମହାଦେବ ଦେଶାଇଙ୍କସମେତ ସ୍ୱାଧୀନତା ସଂଗ୍ରାମର ଆହୁରି ଅନେକ ସେନାନୀ । ତେବେ, ସେଥର ଏ ସମସ୍ତଙ୍କ ସହ ଗାନ୍ଧିଜୀଙ୍କର ଓଡ଼ିଶା ଆଗମନର ମୂଳ ଓ ମୁଖ୍ୟ ଉଦ୍ଦେଶ୍ୟ ଥିଲା ପୁରୀ ଜିଲ୍ଲା ଡେଲାଙ୍ଗ ବ୍ଲକ୍ ଅନ୍ତର୍ଗତ ବାରବୋଇ ଗ୍ରାମରେ ଚାଲିଥିବା ଉତ୍କଳ ଖଦୀ ଓ ଗ୍ରାମୋଦ୍ୟୋଗ ମେଳାରେ ଯୋଗଦାନ ।

ଗାନ୍ଧିଜୀ ଏହାପରେ ପୁନର୍ବାର ଏକ ସଂକ୍ଷିପ୍ତ ଓଡ଼ିଶା ଗସ୍ତରେ ଆସିଥିଲେ, ୧୯୪୬ ଜାନୁଆରୀ ୨୦ ତାରିଖରେ । ସେତେବେଳେ ସେ ଯାଉଥିଲେ କଲିକତାରୁ ମାଡ୍ରାସ୍ । ଯିବାବାଟରେ ସେ କଟକ ଓ ବ୍ରହ୍ମପୁରଠାରେ ଅଟକି ଦୁଇଟି ସାଧାରଣ ସଭାରେ ଉଦ୍‌ବୋଧନ ଦେଇଥିଲେ । ଆଉ ତାହା ହିଁ ଥିଲା ଗାନ୍ଧିଜୀଙ୍କର ଶେଷ ଓଡ଼ିଶା ଗସ୍ତ ଓ ଓଡ଼ିଶାରେ ତାଙ୍କର ଶେଷ କାର୍ଯ୍ୟକ୍ରମ ।

ଓଡ଼ିଶାର ଜନସାଧାରଣ ମଧ୍ୟ ଗାନ୍ଧିଜୀଙ୍କୁ ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଦେବା ସହ ତାଙ୍କୁ ଖୁବ୍ ଭଲ ପାଉଥିଲେ । ଗାନ୍ଧିଜୀଙ୍କ ପ୍ରତ୍ୟେକଟି ଓଡ଼ିଶା ଗସ୍ତ ସମୟରେ ସେମାନେ ତାଙ୍କ ପଛେପଛେ ଧାଉଁଥିଲେ । ତାଙ୍କର ଏକ ଝଲକ ମାତ୍ର ପାଇବା ପାଇଁ । ଅନେକେ ଓଡ଼ିଶାବାସୀ ତାଙ୍କୁ ବିବେଚନା କରୁଥିଲେ ଈଶ୍ୱରଙ୍କର ଅନ୍ୟ ଏକ ଅବତାର ରୂପେ । ଆଉ ବୋଧହୁଏ ଖାସ୍ ସେଇଥିପାଇଁ ସେମାନେ ଗାନ୍ଧିଜୀଙ୍କର ଏକ ଝଲକ ମାତ୍ର ପାଇବା ପାଇଁ ସେମାନଙ୍କ ନିକଟରେ ଥିବା ସମସ୍ତ ସମ୍ପତ୍ତିକୁ ଦେଇ ଦେବାପାଇଁ ସୁଦ୍ଧା କୁଣ୍ଠିତ ହେଉନଥିଲେ । ଆହୁରି ଅନେକେ ବି ଧାର କରଜ କରି ସୁଦ୍ଧା ଗାନ୍ଧଜୀଙ୍କୁ ତାଙ୍କର ଅହିଂସା ଆନ୍ଦୋଳନ ପାଇଁ ପାଣ୍ଠି ଯୋଗାଇ ଦେଉଥିଲେ ।

ଗାନ୍ଧିଜୀ ଓଡ଼ିଶାକୁ ତାଙ୍କର ପ୍ରଥମ ଗସ୍ତ କରିବା ସମୟରୁ ହିଁ ଜାଣିଥିଲେ ଯେ ଏଠାକାର ଲୋକମାନେ ହେଉଛନ୍ତି ଦରିଦ୍ର, କିନ୍ତୁ ଏହା ସହିତ ସେମାନେ ସମସ୍ତେ ହେଉଛନ୍ତି ଗୋଟିଏ ଗୋଟିଏ ବିଶାଳ ହୃଦୟର ଅଧିକାରୀ । ‘ତିଲକ ସ୍ୱରାଜ ପାଣ୍ଠି’ ପାଇଁ ପାଣ୍ଠି ସଂଗ୍ରହ କରୁଥିବାବେଳେ ଓଡ଼ିଶାବାସୀଙ୍କ ଆଚରଣ ଓ ସେମାନଙ୍କର ସ୍ୱେଚ୍ଛାକୃତ ଦାନ ଗାନ୍ଧିଜୀଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା । ପୁରୀଠାରେ ଗାନ୍ଧିଜୀ ଯେତେବେଳେ ଏକ ସାଧାରଣ ସଭାରେ ଉଦ୍‌ବୋଧନ ଦେଇସାରି ‘ତିଲକ ସ୍ୱରାଜ ପାଣ୍ଠି’ ପାଇଁ ସହାୟତା ମାଗି ବସିଲେ, ସେତେବେଳେ ସେଠାରେ ଉପସ୍ଥିତ ଥିବା ସହସ୍ରାଧିକ ଅନାହାରକ୍ଲିଷ୍ଟ ଦୁର୍ଭିକ୍ଷ ପ୍ରପୀଡ଼ିତ ନରନାରୀ ସେମାନଙ୍କ ଲୁଗାକାନିରେ ବାନ୍ଧି ରଖିଥିବା ପଇସାଟିଏଠାରୁ ଅଣାଏ ପର୍ଯ୍ୟନ୍ତ ଆଣି ଗାନ୍ଧିଜୀଙ୍କ ନିକଟରେ ବିନାଦ୍ୱିଧାରେ ଅର୍ପଣ କଲେ, ସେଥିରେ ସେ ସମ୍ପୂର୍ଣ୍ଣ ରୂପେ ଅଭିଭୂତ ହୋଇପଡ଼ିଥିଲେ । ସେଇଥିପାଇଁ ବୋଧହୁଏ ଗାନ୍ଧିଜୀ କହିଥିଲେ, ‘ଓଡ଼ିଶାର ଦୁର୍ଭିକ୍ଷ ପ୍ରପୀଡ଼ିତ କଙ୍କାଳସାର ନରନାରୀଙ୍କ ଚେହେରା ମୋର ଯେବେ ମନେ ପଡ଼ିଯାଏ ମୁଁ ଗଭୀର କଷ୍ଟ ପାଏ । ଏପିରକି ସ୍ୱପ୍ନରେ ବି ତାହାମୋତେ କଷ୍ଟଦିଏ । ଆଜି ଆସନ୍ତୁ, ଆମେ ପ୍ରଥମେ ସେମାନଙ୍କ ଜୀବନର ସେଇସବୁ ମୌଳିକ ଆବଶ୍ୟକତା ପୂରଣ କରିବା । ପରେ ଅନ୍ୟସବୁ ଜୀବନର ଆରାମ ଓ ଅଳଙ୍କାର ଅନୁସରଣ କରିବା ।’

ଆଜକୁ ବିଗତ ଛଅ ଦଶନ୍ଧି ତଳେ ଗାନ୍ଧିଜୀଙ୍କ ଉପଦେଶର ପ୍ରାସଙ୍ଗିକତା ଯେଉଁ ପରିମାଣରେ ଅନୁଭୂତ ହେଉନଥିଲା, ଆଜି ତାଙ୍କର ଅବର୍ତ୍ତମାନରେ ତା'ଠାରୁ କାହିଁ କେତେ ଗୁଣ ଅଧିକ ଅନୁଭୂତ ହେଉଛି । ଆଜି ବି କ୍ଷୁଧା ଓ ପୁଷ୍ଟିହୀନତା ସମଗ୍ର ବିଶ୍ୱରେ ତାର କାୟା ବିସ୍ତାର କରି ରଖିଛି। ହିଂସା ବ୍ୟାପିବାରେ ଲାଗିଛି ବିଶ୍ୱବ୍ୟାପୀ । **ଏପରିକି ଭାରତର ସବୁଠାରୁ ଶାନ୍ତିପ୍ରିୟ ରାଜ୍ୟ ଭାବେ ପରିଚିତ ଓଡ଼ିଶା ସୁଦ୍ଧା ଆଜି ହିଂସାରୁ ମୁକ୍ତ ନୁହେଁ । ମାଓବାଦ ଓ ନକ୍ସଲବାଦ ନାମରେ ହିଂସା ଆଜି କବଳିତ କରିଛି ସମଗ୍ର ଓଡ଼ିଶାକୁ । ଏସବୁ ପରିପ୍ରେକ୍ଷୀରେ ଗାନ୍ଧିଜୀଙ୍କ ଅହିଂସା ଓ ଶାନ୍ତିର ମନ୍ତ୍ର ଅଧିକ ପ୍ରାସଙ୍ଗିକ ହୋଇପଡ଼ିଛି ଆମ ସମସ୍ତଙ୍କ ପାଇଁ ।** ଶାନ୍ତି ଆଡ଼କୁ କୌଣସି ବାଟ ନାହିଁ, କିନ୍ତୁ ଶାନ୍ତି ହେଉଛି ସବୁ ଆଡ଼କୁ ବାଟ । ଯାହାକୁକି ଗାନ୍ଧିଜୀ ଆମ ସମସ୍ତଙ୍କୁ ଦେଖାଇ ଯାଇଛନ୍ତି ।

ବୋଧହୁଏ, ଏହା ଏକ ବିରାଟ ସଂଯୋଗ ଯେ ଗାନ୍ଧିଜୀଙ୍କ ପବିତ୍ର ଚିତାଭସ୍ମ ଓଡ଼ିଶାରେ ଅନେକ ଦିନ ପର୍ଯ୍ୟନ୍ତ ସଂରକ୍ଷିତ ହୋଇ ରହିଯାଇଥିଲା । ଗାନ୍ଧିଜୀଙ୍କର ଚିତାଭସ୍ମ ଥିବା ଏକ କଳସୀ ଯେ ୧୨ ଫେବୃଆରୀ ୧୯୪୮ଠାରୁ ୨୭ ଜୁନ୍ ୧୯୪୮ ପର୍ଯ୍ୟନ୍ତ ସମସ୍ତଙ୍କ ଅଲକ୍ଷ୍ୟରେ ପୁରୀଠାରେ ଥିବା ରାଜଭବନ ମଧ୍ୟରେ ରହିଯାଇଥିଲା, ଏହାକୁ ଇତିହାସ ଭୁଲି ଯାଇଥିଲା । ଏ ବିଷୟ ଜଣାପଡ଼ିଲା, ଯେତେବେଳେ ରାଜଭବନ ଉପରେ ଏକ ପୁସ୍ତକ ପାଇଁ ପାଣ୍ଡୁଲିପି ପ୍ରସ୍ତୁତ କରାଯାଉଥିଲା । ଏହାପରେ ଗାନ୍ଧିଜୀଙ୍କର ଚିତାଭସ୍ମ ଥିବା ସେଇ କଳସୀଟି ପୁରୀରୁ ଯାଇ ରହିଲା କଟକର ଇମ୍ପିରିଆଲ୍ ବ୍ୟାଙ୍କରେ (ପରବର୍ତ୍ତୀ କାଳରେ ତାହା ଷ୍ଟେଟ୍ ବ୍ୟାଙ୍କ ଭାବରେ ପରିଚିତ) । ପରବର୍ତ୍ତୀ ସମୟରେ ୧୯୯୭ ମସିହାରେ ଗାନ୍ଧିଜୀଙ୍କର ୪୯ତମ ଶ୍ରାଦ୍ଧ ବାର୍ଷିକ ପାଳନ ଅବସରରେ ସେହି ଚିତାଭସ୍ମ ଥିବା କଳସୀକୁ ହସ୍ତାନ୍ତର କରାଯାଇଥିଲା ଗାନ୍ଧିଜୀଙ୍କର ଅଣନାତି ଶ୍ରୀ ତୁଷାର ଗାନ୍ଧୀଙ୍କୁ ଗଙ୍ଗାରେ ବିସର୍ଜନ ଉଦ୍ଦେଶ୍ୟରେ ।

ଏଇ କିଛିଦିନ ତଳେ ଆମେରିକାର ରାଷ୍ଟ୍ରପତି ବାରାକ୍ ଓବାମା କହିଥିଲେ ଯେ ଯଦି ସେ କାହା ସହିତ ଏକତ୍ର ରାତ୍ରି ଭୋଜନ କରିବାକୁ ଅଧିକ ପସନ୍ଦ କରିବେ, ତେବେ ସେ ହେଉଛନ୍ତି ମହାତ୍ମା ଗାନ୍ଧୀ । ତେବେ ଆଜି ଗାନ୍ଧିଜୀଙ୍କର ଅବର୍ତ୍ତମାନରେ ଓବାମା ଯଦି ତାଙ୍କର ଇଚ୍ଛାକୁ ଆନ୍ତରିକ ଭାବେ ଚରିତାର୍ଥ କରିବାକୁ ଚାହୁଁଥାନ୍ତି, ତେବେ ସେ ଆମେରିକା ଛାଡ଼ି ଓଡ଼ିଶା ଆସନ୍ତୁ ଆଉ ଜଣେ ଦଳିତର ପରିବାରକୁ ଯାଇ ତା'ସହ ଏକତ୍ର ରାତ୍ରି ଭୋଜନ କରନ୍ତୁ । ତା'ହେଲେ ଯାଇ ତାଙ୍କର ଇଚ୍ଛା ଚରିତାର୍ଥ ହେବା ସହ ଆଶା ମଧ୍ୟ ପୂରଣ ହେବ ।

ଓଡ଼ିଶାର ରାଜ୍ୟପାଳ
ଭୁବନେଶ୍ୱର

---

## ବିଧାନସଭା ପରିସରରେ ମହାତ୍ମା ଗାନ୍ଧୀଙ୍କପ୍ରତି ଶ୍ରଦ୍ଧାଞ୍ଜଳି

ରାଜ୍ୟବାସୀ ଗତ ତା.୨.୧୦.୦୯ରିଖରେ ଗାନ୍ଧୀ ଜୟନ୍ତୀ ଅବସରରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଅମର ସ୍ମୃତିପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି । ବିଧାନସଭା ପରିସରରେ ଆୟୋଜିତ ରାଜ୍ୟସ୍ତରୀୟ ଉତ୍ସବରେ ରାଜ୍ୟପାଳ ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଏବଂ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଉପସ୍ଥିତ ରହି ଗାନ୍ଧିଜୀଙ୍କ ପ୍ରତିମୂର୍ତ୍ତିରେ ପୁଷ୍ପମାଲ୍ୟ ଅର୍ପଣ କରିଥିଲେ । ବାପୁଙ୍କ ପ୍ରିୟ ଭଜନ 'ବୈଷ୍ଣବ ଜନ ତୋ' ଓ ରାମଧୂନ 'ରଘୁପତି ରାଘବ ରାଜାରାମ' ଗାନ କରାଯାଇଥିଲା ।

ଉପବାଚସ୍ପତି ଶ୍ରୀ ଲାଲବିହାରୀ ହିମିରିକା ଉପସ୍ଥିତ ସମସ୍ତଙ୍କୁ ଗାନ୍ଧୀ ଜୟନ୍ତୀର ଶପଥ ପାଠ କରାଇଥିଲେ । ଏହି ଉତ୍ସବରେ ରାଜ୍ୟ ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କ ମଧ୍ୟରେ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ, ଶ୍ରୀ ରଘୁନାଥ ମହାନ୍ତି, ଶ୍ରୀ ସଞ୍ଜୀବ କୁମାର ସାହୁ ଏବଂ ରାଜ୍ୟ ଯୋଜନା ବୋର୍ଡ଼ ଉପାଧ୍ୟକ୍ଷ ଶ୍ରୀ ସୁରେନ୍ଦ୍ର ନାଥ ନାୟକ, ବିଧାୟକ ଶ୍ରୀ ବିଜୟ କୁମାର ମହାନ୍ତି, ଶ୍ରୀ ରମେଶ ରାଉତ, ପୂର୍ବତନ ବିଧାୟକ ଶ୍ରୀ ବିକ୍ରମ କେଶରୀ ବର୍ମା, ବହୁ ସ୍ୱାଧୀନତା ସଂଗ୍ରାମୀ ଏବଂ ଛାତ୍ରଛାତ୍ରୀ ଉପସ୍ଥିତ ଥିଲେ । ସୂଚନା ଓ ଲୋକ ସଂପର୍କ ବିଭାଗଦ୍ୱାରା ଆୟୋଜିତ ଏହି ଉତ୍ସବରେ ବିଭାଗୀୟ ଶାସନ ସଚିବ ଶ୍ରୀ ରବିନ୍ଦ୍ରନାଥ ଦାଶ, ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି ଏବଂ ଅନ୍ୟ ବିଭାଗୀୟ ଅଧିକାରୀମାନେ ଉପସ୍ଥିତ ଥିଲେ ।

ବିଧାନସଭାରୁ ଫେରିବା ପରେ ରାଜ୍ୟପାଳ ଶ୍ରୀ ଭଣ୍ଡାରେ ରାଜଭବନ ପରିସରରେ ବୃକ୍ଷରୋପଣ କରିଥିଲେ । ସଂପ୍ରତି ବିଶ୍ୱର ପରିବେଶକୁ ଲକ୍ଷ୍ୟ କଲେ ପ୍ରତ୍ୟେକ ବ୍ୟକ୍ତି ନିଜ ଉଦ୍ୟମରେ ବୃକ୍ଷରୋପଣ କରିବା ଉଚିତ ବୋଲି ବୃକ୍ଷରୋପଣ ଅବସରରେ ଶ୍ରୀ ଭଣ୍ଡାରେ କହିଥିଲେ । ଗାନ୍ଧୀ ଜୟନ୍ତୀରେ ସମସ୍ତେ ପରିବେଶପ୍ରତି ସଚେତନ ରହିବାକୁ ସେ ଆହ୍ୱାନ ଦେଇଥିଲେ ।

# ଗାନ୍ଧୀଙ୍କ ଆଖିରେ ଲୁହ

ଡଃ ବାବାଜୀ ଚରଣ ମିଶ୍ର

**ସ୍ୱ**ର୍ଣ୍ଣପ୍ରସୂ ଭାରତର ପ୍ରାଚୁର୍ଯ୍ୟରେ ପ୍ରଲୋଭିତ ହୋଇ ବିଭିନ୍ନ ସମୟରେ ବୈଦେଶିକ ଶତ୍ରୁ ଏ ଦେଶକୁ ଆକ୍ରମଣ କରିବା ସହିତ ଲୁଣ୍ଠନ କରିଯାଇଛନ୍ତି । ଧନ ସମ୍ପତ୍ତି ବୋହି ନେବା ସହିତ ଦେଶର ପ୍ରତିଷ୍ଠିତ ସାମାଜିକ ମୂଲ୍ୟବୋଧ, ଦୃଢ଼ ସଂସ୍କାର, ଉନ୍ନତ-ସଂସ୍କୃତି, ନୈତିକ ମାନଦଣ୍ଡ, ସୁଦୃଢ଼ ବୈଦିକ ଜ୍ଞାନ ସାଗର ପ୍ରଭୃତି ଉପରେ ବେଶ୍ କିଛି କ୍ଷତିସାଧନ କରାଇଛନ୍ତି । ଏ ସମସ୍ତ କରିବା ଭିତରେ ଏ ଦେଶ ଉପରେ ରାଜୁତି କରିବାର ଚେଷ୍ଟାରେ ମଧ୍ୟ ସଫଳ ହୋଇପାରିଛନ୍ତି । ଯେତେଯେତେ ବୈଦେଶିକ ଶକ୍ତି ଏ ଦେଶକୁ ଆସି ପ୍ରଭୂତ କ୍ଷତି କରିଯାଇଛନ୍ତି, ସେମାନଙ୍କ ମଧ୍ୟରେ ସବୁଠାରୁ ଅନିଷ୍ଟକାରୀ ଓ ସର୍ବଶେଷ ହେଉଛନ୍ତି ବିଲାତି ଶାସକମାନେ । ସେମାନେ ସବୁଠାରୁ ଅନିଷ୍ଟକାରୀ ଏଇଥିପାଇଁ ଯେ ଆମ ଦେଶରେ ବ୍ୟବସାୟ ବାଣିଜ୍ୟ କରିବାକୁ ଆସି କୌଶଳକ୍ରମେ ଶାସନ କରିବାର କ୍ଷମତା ଅକ୍ତିଆର କରି ପ୍ରଚୁର ଧନସମ୍ପତ୍ତି ତ ବୋହି ନେଲେ, ତା' ସହିତ ଦୀର୍ଘ ଅବଧି ପର୍ଯ୍ୟନ୍ତ ଶାସନ କରି ଚାଲିଲେ ।



ଅନ୍ୟାନ୍ୟ ଯେତେଯେତେ ବୈଦେଶିକ ଶକ୍ତି ଆସିଛନ୍ତି, ସେମାନଙ୍କ ବିରୋଧରେ ଜନତାଙ୍କର ସ୍ୱର ଉତ୍ତୋଳନ ସେତେ ମାତ୍ରାରେ ହୋଇନଥିଲା । ଯାହା ହୋଇଥିଲା ଏହି ବିଲାତି ଶୋଷଣକାରୀ ଶାସକମାନଙ୍କ ବିରୋଧରେ । ବହୁ ଆଗରୁ କାଁ ଭାଁ ସ୍ୱର ଉତ୍ତୋଳନ ହୋଇଥିଲେ ବି ସେ ସବୁ ସେତେ ସୁସଙ୍ଗଠିତ ନଥିଲା । ଫଳରେ ବିଲାତି ଶାସନମାନେ ସେସବୁକୁ ଦମନ କରିବାରେ ସମର୍ଥ ହୋଇପାରିଥିଲେ । ମାତ୍ର ଯେତେବେଳେ ସ୍ୱର ଉତ୍ତୋଳନ ତୀବ୍ର ହେଲା, ତାହାକୁ ଠିକ୍ ମାର୍ଗ ଦେଖାଇ ସୁସଙ୍ଗଠିତ କରାଇଥିଲେ ମହାତ୍ମା ଗାନ୍ଧୀ । ଯେହେତୁ ତାଙ୍କ ସଂଗ୍ରାମର ମୂଳମନ୍ତ୍ର ଥିଲା ଅହିଂସା । ଆମ ଭାରତୀୟ ସଂସ୍କୃତି ଅହିଂସାର ମନ୍ତ୍ରକୁ ଜୀବନର ମାର୍ଗ ରୂପେ କାଳେ କାଳେ ଗ୍ରହଣ କରିଆସିଥିଲା, ସେଇଥିପାଇଁ ଜନମତ ସଂଘବଦ୍ଧ ଆନ୍ଦୋଳନର ରୂପ ଧାରଣ କଲା । ଫଳସ୍ୱରୂପ ସୂର୍ଯ୍ୟାସ୍ତ ହେଉ ନଥିବା ସାମ୍ରାଜ୍ୟର ସମ୍ରାଟ ହାତରୁ ସ୍ୱାଧୀନତା ଛଡ଼ାଇ ଆଣିପାରିଲା ଏ ଦେଶ । ଏହି ଆନ୍ଦୋଳନରେ ବହୁ ନେତା ଓ ଜନତା ଯୋଗଦାନ କରିଥିଲେ ହେଁ ସ୍ୱାଧୀନତାର ଶ୍ରେୟ ଆମେ ଦେଇଥାଉ ମହାତ୍ମା ଗାନ୍ଧୀଙ୍କୁ । ସେଇଥିପାଇଁ ତ ତାଙ୍କୁ ଆମେ 'ଜାତିର ଜନକ' ଆଖ୍ୟା ଦେଇଅଛୁଁ ।

ବହୁ ତ୍ୟାଗ, ବଳିଦାନ ଓ କଷ୍ଟ ସ୍ୱୀକାର କରି ଆମ ଦେଶ ଛଅ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ହେଲା ସ୍ୱାଧୀନତା ଲାଭ କଲାଣି । ଯେତେବେଳେ ସ୍ୱାଧୀନତା ସଂଗ୍ରାମ ଚାଲୁ ରହିଥିଲା, ସମସ୍ତଙ୍କ ମନରେ ଗୋଟାଏ ଆଶା ଥିଲା ଯେ ବିଦେଶୀ ଲୋକେ ଏ ଦେଶରୁ ଗଲେ ଆମେ ଶୋଷଣମୁକ୍ତ ହେବା ସହିତ ଆମ ଲୋକେ ଦେଶ ଶାସନ କରିବେ । ଫଳରେ ଆମର ଦୁଃଖ, ଦୁର୍ଦ୍ଦଶା ବୁଝି ସେ ସବୁର ସମୁଚିତ ପ୍ରତିକାର କରିବେ । ତେଣୁ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ସାରା ଦେଶ ଆନନ୍ଦ ଓ ହର୍ଷ ଉଲ୍ଲାସରେ ପ୍ରକମ୍ପିତ ହୋଇଉଠିଥିଲା । ବର୍ଷ ପରେ ବର୍ଷ ଗଡ଼ି ଚାଲିଲା । ପ୍ରାୟ ୨୦ ବର୍ଷ ପରେ ଲୋକଙ୍କର ହସ ହସ ମୁହଁ ଆସ୍ତେ ଆସ୍ତେ ମଳିନ ପଡ଼ିବାକୁ ଲାଗିଲା । ପ୍ରାୟ ୪୦ ବର୍ଷ ଅତିବାହିତ ହୋଇଗଲାପରେ ଲୋକେ କ୍ରମେ କ୍ରମେ ଅନୁଭବ କଲେ ଯେ ଆମେ ମହରଗରୁ ଯାଇ କାନ୍ତାରରେ ପଡ଼ିଲୁ । ଆମ ଅବସ୍ଥାର ବିଶେଷ କିଛି ପରିବର୍ତ୍ତନ ହେଲା ନାହିଁ ନିଜ ଲୋକ ଶାସନ କରିବାଦ୍ୱାରା । ଧୀରେ ଧୀରେ ଲୋକଙ୍କ ମନରେ ହତାଶାଭାବ ଜାଗ୍ରତ ହେବାକୁ ଲାଗିଲା । ମାତ୍ର କିଛି ପ୍ରତିକ୍ରିୟାଶୀଳ ବ୍ୟକ୍ତି ନିଜକୁ

ଆଉ ସମ୍ଭାଳି ରଖିପାରିଲେ ନାହିଁ । ସେମାନେ ବିଚାର କଲେ ଯେ ଆମ ନିଜ ଦେଶର ଶାସକମାନେ ବିଦେଶୀ ଶାସକଙ୍କଠାରୁ କୌଣସି ଗୁଣରେ କମ୍ ନୁହନ୍ତି ଶୋଷଣ କରିବାରେ । ଲୋକଙ୍କ ମନରେ ଥିବା ହତାଶ ଭାବକୁ ପୁଞ୍ଜି କରି ସେମାନେ ଅନ୍ୟମାନଙ୍କୁ ଉସ୍କାଇଲେ । ସେମାନଙ୍କୁ ନୈତିକ ତଥା ଆର୍ଥିକ ବଳ ମିଳିଲା ବୈଦେଶିକ ଶକ୍ତିଙ୍କଠାରୁ, ଯେଉଁମାନେ କାଳେ କାଳେ ସ୍ୱର୍ଣ୍ଣପ୍ରସୂ ଭାରତପ୍ରତି ଈର୍ଷାନ୍ୱିତ ଥିଲେ । ସମ୍ଭବତଃ ଏହା ହିଁ ହେଉଛି ପଶ୍ଚିମବଙ୍ଗର ନକ୍ସଲବାଡ଼ିରୁ ସ୍ପଷ୍ଟ ନକ୍ସଲବାଦୀ ଓ ପରବର୍ତ୍ତୀ ସମୟରେ ମାଓବାଦୀର ଅସଲ କଥା । ଏବେତ ଦେଶର ପ୍ରାୟ ଅଧିକାଂଶ ଅଞ୍ଚଳ ଅସ୍ଥିରତାର ବାରୁଦ ଗଦା ଉପରେ ଶୋଇ ରହିଛି ।

ସ୍ୱାଧୀନତା ଲାଭର ଏତେ ବର୍ଷ ମଧ୍ୟରେ ଦେଶର ହାଲ୍ ଏପରି ହେବାର କାରଣ କ'ଣ ? ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାର ଜାତିର ପିତା ମହାତ୍ମା ଗାନ୍ଧୀ କହିଥିଲେ, 'ମୁଁ ଏଭଳି ଭାରତ ପାଇଁ କାର୍ଯ୍ୟ କରିବି ଯେଉଁଠି ଅତି ଗରିବ ବ୍ୟକ୍ତିମାନେ ଅନୁଭବ କରିବେ ଯେ ଏହା ସେମାନଙ୍କର ଦେଶ, ଯାହାର ନିର୍ମାଣରେ ସେମାନଙ୍କର ଫଳପ୍ରଦ ଭୂମିକା ରହିଛି । ଏହି ଭାରତରେ ଯେଉଁଠି ଉଚ୍ଚଶ୍ରେଣୀ ଓ ନିମ୍ନ ଶ୍ରେଣୀରେ ଲୋକ ରହିବେ ନାହିଁ । ଏପରି ଭାରତ ଯେଉଁଠି ପ୍ରତ୍ୟେକ ସଂପ୍ରଦାୟ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କରିବେ । ଏହି ଭାରତରେ ଛୁଆଁ ଅଛୁଆଁ ଭଳି ଭେଦଭାବ ଓ ବିଷାକ୍ତ ପାନୀୟ ଏବଂ ମାଦକ ଦ୍ରବ୍ୟ ଭଳି କ୍ଷତିକାରକ ପଦାର୍ଥ ପାଇଁ କୌଣସି ସ୍ଥାନ ରହିବ ନାହିଁ । ପୁରୁଷମାନଙ୍କ ଭଳି ମହିଳାମାନେ ମଧ୍ୟ ସମାନ ଅଧିକାର ଉପଭୋଗ କରିବେ । ଅନ୍ୟ ଦେଶଗୁଡ଼ିକ ସହିତ ଆମେ ଶାନ୍ତିରେ ରହିବୁଁ । ଏହା ହିଁ ହେବ ମୋର ସ୍ୱପ୍ନର ଭାରତ ।' ଆହୁରି ମଧ୍ୟ ସେ କହିଥିଲେ, 'ମୁଁ ପୂରାପୂରି ବିଶ୍ୱାସ କରେ ଓ ଅସଂଖ୍ୟ ଥର ଦୋହରାଇଛି ଯେ ପ୍ରକୃତ ଭାରତ କତିପୟ ସହରରେ ସୀମାବଦ୍ଧ ନୁହେଁ, ବରଂ ଗାଁ ଗହଳିରେ ଭରି ରହିଛି ।'

ଯଦି ସେ ମହାମାନବଙ୍କୁ ଏବେ ସୁଦ୍ଧା ଆମେ ଜାତିର ପିତା ବୋଲି ମାନୁଛୁଁ ଓ ସମ୍ମାନ ଦେଉଛୁଁ, ସେ ଦେଖିଥିବା ସ୍ୱପ୍ନର ଭାରତକୁ ଆମେ କେତେ ଦୂର ସାକାର କରିବାରେ ସମର୍ଥ ହୋଇଛୁ, ତାହା ତର୍ଜମା କରିବାର ବେଳ ଗଡ଼ିଗଲା ପରି ମନେହୁଏ । ଆଉ ଯଦି ନହୋଇଛେ, ତେବେ ଦୁଇଟି ଦିଗପ୍ରତି ନଜର କରିବାର ଆବଶ୍ୟକତା ଉପୁଜିଛି : ସ୍ଥିତାବସ୍ଥା ବଜାୟ ରଖିଛେଁ ନା ଦେଶକୁ ଆହୁରି ଅଧୋଗତି ଦିଗରେ ଠେଲି ଦେଇଛେଁ ? ସେଥିପାଇଁ ଯାହା ଆଖିରେ ପଡ଼େ, କାନରେ ଶୁଭେ, ଖବରକାଗଜଠାରୁ ଆରମ୍ଭ କରି ବିଭିନ୍ନ ଗଣମାଧ୍ୟମରୁ ଜାଣିବାକୁ ମିଳେ, ସେ ବିଷୟରେ ମହାତ୍ମା ଗାନ୍ଧୀଙ୍କ ସ୍ୱପ୍ନର ଭାରତ ଖୋଜାଯାଉ ।

ମହାତ୍ମା ଗାନ୍ଧୀଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ଆମ ସମ୍ବିଧାନର ମୁଖବନ୍ଧ (Preamble)ରେ ଯେତେ କଥା ଲେଖାଯାଇଛି, ସମ୍ଭବତଃ ତା' ମଧ୍ୟରୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଆମ ସରକାର ଲୋକଙ୍କର, ଲୋକଙ୍କଦ୍ୱାରା ଓ ଲୋକଙ୍କ ପାଇଁ ଉତ୍ସର୍ଗୀକୃତ । ହଁ, ସରକାର କହିପାରନ୍ତି ଯେ ଲୋକଙ୍କର ସରକାର କରିବା ପାଇଁ ତ ଗ୍ରାମପଞ୍ଚାୟତଠାରୁ ଲୋକସଭା ପର୍ଯ୍ୟନ୍ତ ଲୋକଙ୍କ ଭିତରୁ ଭୋଟ ଦେଇ ଲୋକେ ତାଙ୍କର ପ୍ରତିନିଧି ପଠାଇବାର ବ୍ୟବସ୍ଥା ହୋଇଛି । ସରକାରଙ୍କୁ ଅନୁରୋଧ ଯେ ଆଗ ସମୟ ପରି ଛଦ୍ମବେଶରେ ହେଉ ବା ଗୁପ୍ତଚର ଜରିଆରେ ହେଉ ଶାସକମାନେ ରାଜ୍ୟ ଭିତରର ଖବର ସଂଗ୍ରହ କରି ସେହି ଅନୁସାରେ ପ୍ରତିବିଧାନ କରୁଥିଲେ, ସେହିପରି କିଛି ବ୍ୟବସ୍ଥା କରି ବୁଝିବାକୁ ଚେଷ୍ଟା କରନ୍ତୁ, ଗାଁ ଗହଳିର ଦରିଦ୍ର ଓ ନିରକ୍ଷର ଲୋକମାନଙ୍କ ଅବସ୍ଥା । ତଦ୍ଦ୍ୱାରା ଗାଁର ଅସହାୟ ବୁଢ଼ା / ବୁଢ଼ୀଙ୍କ ବାର୍ଦ୍ଧକ୍ୟ ଭତ୍ତା, ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକଙ୍କ ବି.ପି.ଏଲ୍. କାର୍ଡ଼, ଘରଭାଙ୍ଗି ଗଲେ ତା' ପାଇଁ ସରକାରୀ ସାହାଯ୍ୟ, ଇନ୍ଦିରା ଆବାସ ଇତ୍ୟାଦି ବିଷୟରେ ଟିକେ ଭିତରେଇ କରି ବୁଝିଲେ ଜଣାପଡ଼ିବ ଠିକ୍ କଥା । ହଂକଂ ନଗରୀରେ ଥିବା ରାଜନୈତିକ ତଥା ଆର୍ଥନୈତିକ କ୍ଷେତ୍ରରେ ଅପ୍ରୀତିକର ପରିଣାମର ପରାମର୍ଶ ଦାୟୀ ଏକ ବିଶେଷଜ୍ଞ ମଣ୍ଡଳୀ ତାଙ୍କ ତୁଳନାତ୍ମକ ବିଶ୍ଳେଷଣରେ ଭାରତର ଶାସନ ଧାରାରେ ଥିବା ପ୍ରାୟ ସମସ୍ତ ବ୍ୟକ୍ତିବିଶେଷ ଅତ୍ୟନ୍ତ ନୀଚ ପନ୍ଥା ଅବଲମ୍ବନ କରୁଥିବାର ମତ ପୋଷଣ କରନ୍ତି । ତେଣୁ ଲୋକଙ୍କର, ଲୋକଙ୍କଦ୍ୱାରା ଓ ଲୋକଙ୍କ ପାଇଁ ସରକାର କେତେ ଯେ ଲୋକଙ୍କର, ତା' କେବଳ ମହାତ୍ମା ଗାନ୍ଧୀଙ୍କ ଭାରତରୁ ବୁଝିଲେ ଠିକ୍ ବୁଝା ପଡ଼ିବ । ଏବେ ବି ସୁଦ୍ଧା ଗାଁଗହଳିର ଲୋକେ ଅଭାବ ସମୟରେ ସାରୁ ମୁଣ୍ଡା, ଓଲୁଅ, ଆଳୁ ଶିଝା ଓ ଆଦିବାସୀ ଅଞ୍ଚଳର ଲୋକେ ଆମ୍ବ କୋଇଲି ଗୁଣ୍ଡରେ ତିଆରି ଜାଉ ଖାଇ ଜୀବନ ଧାରଣ କରୁଛନ୍ତି । ଏ ଅବସ୍ଥାରେ ତ ଅତି ଗରିବ ଲୋକେ ନିଶ୍ଚୟ ଭାବୁଥିବେ ଯେ ଏ ଦେଶ ଆମର, ଆମ ଶାସକ ସାହେବ ନୁହନ୍ତି, ଆମରି ଭିତରର ଲୋକ, ନା' କ'ଣ ! ସେଇଥିପାଇଁ ତ ଅତି ଅବହେଳିତ ଅଞ୍ଚଳର ଲୋକେ ସାଥୀରେ ଧରିଛନ୍ତି ମାଟିତଳ ଖଣି, ବମ୍, ବନ୍ଧୁକ ଇତ୍ୟାଦି ! ଆଉ ବଧାଇ ଜଣାଉଥିବାର ନମୁନା ତ ପ୍ରତିଦିନ ଜାଣିବାକୁ ମିଳୁଛି ବିଭିନ୍ନ ଗଣମାଧ୍ୟମ ଜରିଆରେ ।

ପୁଣି ରହିଲା ଉଚ୍ଚ ଶ୍ରେଣୀ ଓ ନିମ୍ନ ଶ୍ରେଣୀ ବୋଲି କୌଣସି ଅଲଗା ବ୍ୟକ୍ତିମାନେ ନରହିବା କଥା । ଏହାତ ଆମ ସମ୍ବିଧାନର ମୁଖବନ୍ଧରେ ଥିବା ଆଉ ଏକ ଶପଥ । ଅବଶ୍ୟ ବିଶ୍ୱବ୍ୟାଙ୍କର ପରିସଂଖ୍ୟାନ ଦର୍ଶାଏ ଯେ ଆମ ଦେଶରେ ମୁଣ୍ଡପିଛା ଆୟର ବୃଦ୍ଧି ଘଟିଛି । ମାତ୍ର ପ୍ରକୃତପକ୍ଷେ ଦେଶର ହାଲ୍ କ'ଣ ! ଧନୀଲୋକେ ଅଧିକ ଧନୀ ଓ ଗରିବ ଲୋକ ଅଧିକ ଗରିବ ହୋଇ ଚାଲିଛନ୍ତି । ବରଂ ପୂର୍ବରୁ ଉଚ୍ଚ ଆୟକାରୀ ବ୍ୟକ୍ତି ଓ ନିମ୍ନ ଆୟକାରୀଙ୍କ ଭିତରେ ଥିବା ପାର୍ଥକ୍ୟ ବେଶୀ ନଥିଲା । ମାତ୍ର ଏବେ ଏହା ବହୁ ଗୁଣରେ ବଢ଼ିଯାଇଛି । ଏହି ପରିସଂଖ୍ୟାନର ତଥ୍ୟ ଯେ ଗଣିତ ଶିକ୍ଷକଙ୍କର ନଦୀର ହାରାହାରି ଗଭୀରତା ବାହାର କଲାପରେ ନିର୍ଭୟରେ ନଦୀ ପାରିହେବା ସହିତ ତୁଳନୀୟ ବୋଲି ଧରାଯାଇପାରିବ ।

ଛୁଆଁ ଅଛୁଆଁ ଭେଦଭାବ ବିନା ଓ ବିଭିନ୍ନ ସଂପ୍ରଦାୟ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସହ ଭାରତର କଥା ଏବେ ଦେଖାଯାଉ । ସ୍ୱାଧୀନତାପରେ ଯଦି ଆମର ରାଜନୈତିକ ନେତାମାନେ ଆନ୍ତରିକତା ସହ ମହାତ୍ମା ଗାନ୍ଧୀଙ୍କ ଇଚ୍ଛାକୁ ସାକାର କରିବାକୁ ଚାହିଁ ଓ ବିନା ପ୍ରବଞ୍ଚନାରେ ଦେଶକୁ ଗଢ଼ିଥାନ୍ତେ, ଏବେ ଏହା ଉପରେ ପ୍ରଶ୍ନବାଚୀ ଉଠିନଥାନ୍ତା । କେବଳ ନିଜର ଆସ୍ଥାନ ବଜାୟ ରଖିବାକୁ ଜାତି ଓ ଧର୍ମରେ ଦେଶକୁ ଭାଗିଁ ଭାଗିଁ ଏପରି ଭୋଟ ବ୍ୟାଙ୍କର ଖେଳ ଖେଳୁଛନ୍ତି ଯେ ପ୍ରତିଦିନ ଘଟୁଥିବା ଦଙ୍ଗା, ଜଳାପୋଡ଼ା ଓ ସଂହାର ଇତ୍ୟାଦି ଜାରି ରହିଛି ସେମାନଙ୍କର ପ୍ରତ୍ୟକ୍ଷ ବା ପରୋକ୍ଷ ସହଯୋଗରେ । କେଉଁ ଦିନ କେଉଁ ମୁହୂର୍ତ୍ତରେ କେତେଦୂର ବିସ୍ଫୋରକ ଅବସ୍ଥା ସୃଷ୍ଟି ହୋଇଯିବ, ତା'ର ପୂର୍ବାନୁମାନ କରିବା ମଧ୍ୟ ସମ୍ଭବ ନୁହେଁ । ଏପରି ଅଚ୍ଛେଦ୍ୟ ଚକ୍ରାକାର ପଥରୁ ଆମେ ଯେ କିପରି ଓ କେବେ ମୁକ୍ତ ହେବୁ, ତା' ପାଇଁ ଆଖି ପାଉନି କି ବୁଦ୍ଧି ବାଟ ଦିଶୁନି ।

ମହାତ୍ମା ଗାନ୍ଧୀଙ୍କ ସ୍ୱପ୍ନର ଭାରତର ବିଷାକ୍ତ ପାନୀୟ ଏବଂ ମାଦକଦ୍ରବ୍ୟ ଭଳି କ୍ଷତିକାରକ ଦ୍ରବ୍ୟ ପାଇଁ କୌଣସି ସ୍ଥାନ ନ ରହିବା କଥା । ଏକଥା ସହ ଏବକା ପରିସ୍ଥିତିକୁ ତୁଳନା କଲେ ଯେ କେହି ସଚେତନ ତଥା ଗାନ୍ଧୀପ୍ରେମୀ ବ୍ୟକ୍ତି ଦୁଃଖରେ ମ୍ରିୟମାଣ ହୋଇଯିବ । ସ୍ୱାଧୀନତା ପରେ ବିଷାକ୍ତ ପାନୀୟ ଏବଂ ମାଦକଦ୍ରବ୍ୟର ବ୍ୟବହାର ବଢ଼ି ବଢ଼ି ଗଲାପରି ଜଣାପଡ଼େ । ସାଧାରଣ ଲୋକେ ଗାଁ ଗହଳିରେ ପିଲାଠାରୁ ବୁଢ଼ାଯାଏଁ ପ୍ରାୟ ସମସ୍ତେ କିଛି ନା କିଛି ନିଶାପାଣିରେ ଅଭ୍ୟସ୍ତ । ଆଉ ସନ୍ଧ୍ୟା ହୋଇଗଲେ ଖଜୁରୀ ରସର ତାଡ଼ି ପିଇବା ପାଇଁ ଶୁଣ୍ଡିର ଭାଟିରେ ବେଶ୍ ଭିଡ଼ ଜମୁଛି । ଆଉ ବଜାର ସହର କଥା ତ ଛାଡ଼ । ପରିସ୍ଥିତି ଏପରି ହେଲାଣି ଅନେକ ମଦ୍ୟପାନ କରି ଦଫ୍ତର ନ ଆସିବା ପାଇଁ ନିର୍ଦ୍ଦେଶନାମା ଜାରି କରିବା ଆବଶ୍ୟକ ହେଲା । ଧନ୍ୟ ଏ ମହାତ୍ମା ଗାନ୍ଧୀଙ୍କ ଦାୟାଦମାନେ ।

ଆଉ ରହିଲା ନାରୀ ସ୍ୱାଧୀନତା ଓ ସେମାନଙ୍କର ସୁରକ୍ଷା କଥା । ଏ ବିଷୟରେ ବେଶୀ ଖୋଲି ଲେଖିବା ବୋଧହୁଏ ନିଷ୍ପ୍ରୟୋଜନ । ନିଜେ ନାରୀମାନେ ସ୍ୱାଧୀନତା ନାମରେ ପୁରୁଷଙ୍କ ହାତରେ ନଗ୍ନ କ୍ରୀଡ଼ନକ ସାଜିବା ପୁରୁଷମାନେ ମଧ୍ୟ ଆଗେଇ ଆସି ନାରୀମାନଙ୍କୁ ଆଉ ମା' ଭଉଣୀର ଭାବ ଛାଡ଼ି ଏକ ସର୍ବଶ୍ରେଷ୍ଠ ସମ୍ଭୋଗ ପାଇଁ ଜୀବନ୍ତ ଦ୍ରବ୍ୟ ବୋଲି ଗ୍ରହଣ କରିଛନ୍ତି । ନାରୀମାନେ ମଧ୍ୟ ନିଜକୁ ସେହି ଭାବରେ ଟେକି ଦେଇଛନ୍ତି ପୁରୁଷମାନଙ୍କ ହାତରେ । ତେଣୁ କୌଣସି ନାରୀ ଆଜି କୌଣସି ସ୍ଥାନରେ ଓ କୌଣସି ସମୟରେ ଆଉ ସୁରକ୍ଷିତ ହୋଇ ରହିବା ସତେ ଯେପରି ଏକ ସ୍ମୃତି ଲୁପ୍ତ ଚିନ୍ତାଧାରା ହୋଇଗଲାଣି । ଆଉ ମଦ୍ୟପଙ୍କ ସଂଖ୍ୟା ବୃଦ୍ଧି ଏ ଦେଶର ନାରୀଙ୍କ ସୁରକ୍ଷା ଓ ସ୍ୱାଧୀନତାକୁ କେତେ ଯେ ବିପନ୍ନ କରିଛି, ତା'ର ଥଳକୂଳ ନାହିଁ ।

ସର୍ବଶେଷରେ ଗାଁ ଗହଳିରେ ମହାତ୍ମା ଗାନ୍ଧୀଙ୍କ ସ୍ୱପ୍ନରେ ଭାରତ ଭରି ରହିବା କଥା ଏବେ ସ୍ୱପ୍ନ ହେବାକୁ ଦ୍ରୁତ ବେଗରେ ଆଗେଇ ଚାଲିଛି । ଛୋଟ ଛୋଟ ବଜାର ଥିବା ଜାଗା ବଡ଼ ବଡ଼ ବଜାରରେ, ବିଜ୍ଞାପିତ ଅଞ୍ଚଳ ସହରରେ, ସହର ନଗରରେ, ନଗର ମହାନଗରରେ ବା ଦୈତମହାନଗରରେ ପରିଣତ ହୋଇଚାଲିଛି । ଚାଷ ଜମି ସବୁ ଧୀରେ ଧୀରେ କୋଠାବାଡ଼ିରେ ପରିବର୍ତ୍ତିତ ହେବାକୁ ଲାଗିଛି । କୃଷି ଉପରେ ଗୁରୁତ୍ୱ ନଥାଇ ଶିଳ୍ପାୟନ ଉପରେ ଖୁବ୍ ଗୁରୁତ୍ୱ ଦିଆଯାଉଛି । ଯାହା ଜଣାପଡ଼େ, ଆମ ଦେଶରେ ସ୍ୱାଧୀନତାର ଶତାବ୍ଦୀ ଦିବସ ପାଳନ ହେବା ବେଳକୁ ଦେଶରୁ ଗାନ୍ଧୀବାଦ ପ୍ରାୟ ଲୋପ ପାଇଯାଇଥିବ । କେହି କାହାକୁ ଆଦର୍ଶର ବାଟ ଦେଖାଇବାର ପନ୍ଥା ପରିହାର କରିସାରିଥିବେ । କେହି କାହାର ଦୁଃଖ, ହାରିଗୁହାରୀ ଶୁଣୁ ନ ଥିବେ । କୌଣସି କାମ କରାଇବା ପାଇଁ ତଳସ୍ତରରେ ଅସୁବିଧା ଉପୁଜିଲେ ଉପରସ୍ତରରେ ଫେରାଦୀ ହେଲେ ବି କିଛି କାର୍ଯ୍ୟକାରୀ ହୋଇପାରୁନଥିବେ । ଯଦି ମହାତ୍ମା ଗାନ୍ଧୀ ଏସବୁ ବିଷୟ ଜାଣିବାର ଅବସ୍ଥାରେ ଥାଆନ୍ତେ, ନିଶ୍ଚୟ ଅନୁତାପ କରୁଥାନ୍ତେ ଯେ କ'ଣ ପାଇଁ ଶାଳଗ୍ରାମ ଧରାଇଦେଲେ ମାଙ୍କଡ଼ମାନଙ୍କ ହାତରେ । ତାଙ୍କ ଦାୟାଦମାନେ ତ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ତାହାଙ୍କୁ ଅପମାନିତ କରୁଥାନ୍ତେ ପ୍ରତି ମୁହୂର୍ତ୍ତରେ । ଆଉ ସେହି ଅପମାନ ଓ ଅନୁତାପ ତଥା ଆତ୍ମଗ୍ଲାନିର ଜ୍ୱାଳାରେ ସଦାସର୍ବଦା ସୃଷ୍ଟି ହେଉଥା'ନ୍ତା ଗାନ୍ଧୀଙ୍କ ଆଖିରେ ଲୁହ ।

ଏଲ୍.-୨୫୦
ନୂଆପଲ୍ଲୀ ବ୍ରିଟ୍ କଲୋନୀ
ଭୁବନେଶ୍ୱର-୧୨

# ମହାମାନବ ଗାନ୍ଧିଜୀ

ବିକ୍ରମ କେଶରୀ ବର୍ମା

**ସ**ତ୍ୟ, ପ୍ରେମ ଓ ଅହିଂସାର ପ୍ରତୀକ ଥିଲେ ମହାତ୍ମା ଗାନ୍ଧୀ । ସେ ରାଜନୀତି ସହିତ ନୀତି, ଆଦର୍ଶ, ଆଧ୍ୟାତ୍ମିକତା, ସତ୍ୟ, ପ୍ରେମ ଓ ଅହିଂସାର ବିଶେଷତଃ ମାନବବାଦୀ ଚିନ୍ତାଧାରାର ଅପୂର୍ବ ସମନ୍ୱୟ ଆଣିବା ସଙ୍ଗେ ସଙ୍ଗେ ପ୍ରଥମେ ନିଜ ଜୀବନରେ ସଫଳ ଭାବେ ପ୍ରୟୋଗ କରିବା ସଂଗେସଂଗେ ବିଶ୍ୱ ପରୀକ୍ଷାଗାରରେ ପରୀକ୍ଷା କରି ମଧ୍ୟ ସଫଳ ହୋଇଥିଲେ । ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନ୍ ଯଥାର୍ଥରେ କହିଥିଲେ – 'ବିଶ୍ୱପୃଷ୍ଠରେ ଏପରି ଜଣେ ରକ୍ତମାଂସର ମଣିଷ ଜନ୍ମ ହୋଇଥିଲେ, ଏକଥା ଭବିଷ୍ୟତ ବଂଶଧର ବିଶ୍ୱାସ କରି ପାରିବେ ନାହିଁ ।' ଆଇନଷ୍ଟାଇନ୍ଙ୍କ ଉକ୍ତି ଯଥାର୍ଥ ଥିଲା ସତ୍ୟର ଉପାସକ – ପିଲାଦିନରୁ ସେ ସତ୍ୟପଥରେ ଚାଲିବା ପାଇଁ ଅଭ୍ୟାସ କରିଥିଲେ । ସ୍କୁଲରେ ପାଠପଢୁଥିବାବେଳେ ସ୍କୁଲ ପରିଦର୍ଶକ ସ୍କୁଲ ପରିଦର୍ଶନ ପାଇଁ ଆସିଥିଲେ । ସେ ପିଲାମାନଙ୍କୁ କେତୋଟି ପ୍ରଶ୍ନ ଦେଇଥିଲେ ଓ ଲିଖିତ ଉତ୍ତର ଦେବାକୁ କହିଥିଲେ, ମୋହନ ଦାସଙ୍କର ଗୋଟିଏ ଉତ୍ତର ଭୁଲ୍ ଥିଲା । ତେଣୁ ଶ୍ରେଣୀର ଶିକ୍ଷକ ନିଜ ପାପୁଲିରେ ଠିକ୍ ଉତ୍ତର ଲେଖି ତାଙ୍କୁ ଦେଖାଇଲେ ଓ ଠିକ୍ ଉତ୍ତର ଲେଖିବାକୁ ସଙ୍କେତ ଦେଲେ । କିନ୍ତୁ ଶିକ୍ଷକଙ୍କଠାରୁ ଯେତେ ସଙ୍କେତ ପାଇଲେ ମଧ୍ୟ ମୋହନ ଠିକ୍ ଉତ୍ତର ଲେଖିଲା ନାହିଁ । ପରିଦର୍ଶକ ମହୋଦୟ ସବୁ ଛାତ୍ରଙ୍କ ଖାତା ଦେଖିବା ସଙ୍ଗେ ସଙ୍ଗେ ମୋହନର ଖାତା ଦେଖିଲେ । ମୋହନର ଉତ୍ତରଟି ଭୁଲ୍ ଥିବାରୁ ଠିକ୍ ଉତ୍ତର ଲେଖିଦେଲେ । ପରିଦର୍ଶକ ସ୍କୁଲ ପରିଦର୍ଶନ ସାରି ଯିବା ପରେ ଶିକ୍ଷକ ମୋହନକୁ ଡାକି ଗାଳି କଲେ । କହିଲେ– ଆ'ରେ ମୋହନା ତୁ ଏଡ଼େ ବୋକା, ମୁଁ ମୋ ପାପୁଲିରେ ଠିକ୍ ଉତ୍ତର ଲେଖି ତୋତେ ଏତେ ଥର ସଙ୍କେତ ଦେଲି, ତଥାପି ତୁ ଠିକ୍ ଉତ୍ତର ଲେଖିଲୁ ନାହିଁ । ମୋହନ ଧୀର ଗଳାରେ କହିଲା – ସାର୍ କପି ନକରିବା ପାଇଁ ଆପଣ ଆମକୁ ପୂର୍ବରୁ କେତେଥର ଉପଦେଶ ଦେଇଥିଲେ । ତେବେ ମୁଁ କପି କରିଥାନ୍ତି କିପରି ? ଏହାଶୁଣି ଶିକ୍ଷକଙ୍କ ମୁହଁ ତଳକୁ ହୋଇଗଲା । ସେ ନିଜ ଭୁଲ୍ ବୁଝିପାରି ଅନୁତପ୍ତ ହେଲେ । ସେହି ସତ୍ୟନିଷ୍ଠ ବାଳକ ମୋହନ ଦାସ କରମଚାନ୍ଦ୍ ଗାନ୍ଧୀ ପରେ ମହାତ୍ମା ଗାନ୍ଧୀ ନାମରେ ସମଗ୍ର ବିଶ୍ୱରେ ପ୍ରସିଦ୍ଧି ଲାଭ କଲେ ।



ମହାତ୍ମା ଗାନ୍ଧୀ ଜୀବନରେ କେବେ ସତ୍ୟପଥରୁ ବିଚ୍ୟୁତ୍ ହୋଇନଥିଲେ । ସେ ଦକ୍ଷିଣ ଆଫ୍ରିକାରେ ଗୋରା ସରକାରଙ୍କ ବର୍ଣ୍ଣବିଦ୍ୱେଷ ନୀତି ଓ ଭାରତୀୟମାନଙ୍କପ୍ରତି ଅତ୍ୟାଚାର ବିରୋଧରେ ସତ୍ୟାଗ୍ରହ କରି ସଫଳ ହୋଇଥିଲେ । ଭାରତରେ ମଧ୍ୟ ଇଂରେଜ ସରକାରଙ୍କ ବିରୋଧରେ ଏକାଧିକବାର ସତ୍ୟାଗ୍ରହ କରି ସଫଳ ହୋଇଥିଲେ, ସତ୍ୟପ୍ରତି ଆଗ୍ରହକୁ ସତ୍ୟାଗ୍ରହ କୁହାଯାଏ । ଏହି ମହାମାନବ ଗୁଳି ଚୋଟରେ ଆଖି ବୁଜିବା ପର୍ଯ୍ୟନ୍ତ ସତ୍ ପଥରୁ ବିଚ୍ୟୁତ୍ ହୋଇନଥିଲେ ।

ଅହିଂସାର ପୂଜାରୀ– ମହାତ୍ମା ଗାନ୍ଧୀ ଅହିଂସାକୁ ଶକ୍ତିଶାଳୀ ଅସ୍ତ୍ର ରୂପେ ଗ୍ରହଣ କରିଥିଲେ । ସେ ଅହିଂସାକୁ ନିଜ ଜୀବନରେ ଓ ରାଜନୀତି କ୍ଷେତ୍ରରେ ପ୍ରୟୋଗ କରିଥିଲେ । ମହାବୀର ଜୀନ, ଗୌତମ ବୁଦ୍ଧ ଓ ସମ୍ରାଟ ଅଶୋକ ଭାରତବର୍ଷରେ ଅହିଂସାର ବାଣୀ ପ୍ରଚାର କରିଥିଲେ । ମହାତ୍ମା ଗାନ୍ଧୀ ତାହା ରାଜନୀତିରେ ସଫଳତାର ସହ ପ୍ରୟୋଗ କରିଥିଲେ । ଗାନ୍ଧିଜୀ ସ୍ପଷ୍ଟ ଭାବରେ କହିଥିଲେ ଯେ ଅହିଂସା ସବଳର ଅସ୍ତ୍ର । ଦୁର୍ବଳର ଅସ୍ତ୍ର ନୁହେଁ । ବିରାଡ଼ି ଯଦି ମୂଷାକୁ ନଖାଇ ଛାଡ଼ି ଦିଏ ତେବେ ତାହା ବିରାଡ଼ିର ଅହିଂସା ଗୁଣ ବୋଲି କୁହାଯାଇ ପାରେ । କିନ୍ତୁ ମୂଷା ଯଦି ବିରାଡ଼ିକୁ ଦେଖି ପଳାଇଯାଏ ଏହା ତା'ର ଭୀରୁତା, ଅହିଂସା ନୁହେଁ ।

ମହାତ୍ମା ଗାନ୍ଧୀ ୧୯୨୧ ମସିହାରେ ଇଂରେଜ ସରକାର ବିରୋଧରେ ଅହିଂସା ମାର୍ଗରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ । ଇଂଲଣ୍ଡ ଏକ ଦ୍ୱୀପ ରାଜ୍ୟ, ଭାରତ ଏକ ଉପମହାଦେଶ, ଇଂଲଣ୍ଡ କୂଟନୀତି ପ୍ରୟୋଗ କରି ଭାରତ ଉପମହାଦେଶକୁ କରାୟତ୍ତ କରିପାରି ଶାସନ କରୁଥିଲା ସତ, କିନ୍ତୁ ଭାରତର ଆଭ୍ୟନ୍ତରୀଣ ଶକ୍ତି ଓ କୋଟି କୋଟି ଲୋକଙ୍କ ଆତ୍ମବିଶ୍ୱାସର ଶକ୍ତି ପ୍ରବଳ ଥିଲା । ସେଥିପାଇଁ ଗାନ୍ଧିଜୀ ୧୯୨୧ରେ ଇଂରେଜ ସରକାର ବିରୋଧରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ । ଚାହୁଁ ଚାହୁଁ ଆନ୍ଦୋଳନ କୁମାରୀକାଠାରୁ କାଶ୍ମୀର ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ମହାତ୍ମା ଗାନ୍ଧୀଙ୍କ ସହ ସବୁ ତୁଙ୍ଗ ନେତା ଓ ହଜାର ହଜାର କଂଗ୍ରେସ କର୍ମୀ କାରାବରଣ କରିଥିଲେ । ଏହି ସମୟରେ ବିହାରର ଚଉରାଚୌରୀଠାରେ ଉତ୍ତ୍ୟକ୍ତ ଜନତା ଜଣେ ପୁଲିସ୍ କନେଷ୍ଟବଳକୁ ନିଆଁ ଲଗାଇ ଜୀବନ୍ତ ଦଗ୍ଧ କରି ଦେଲେ । ଏ ସମ୍ବାଦ ଗାନ୍ଧିଜୀ ପାଇବା ମାତ୍ରେ ଗଭୀର ମର୍ମାହତ ହୋଇଥିଲେ ଓ ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହାର କରି ନେଇଥିଲେ । ସେ ସ୍ପଷ୍ଟ ଭାବରେ କହିଥିଲେ – 'ମୁଁ ହିମାଳୟ ପରି ଭୁଲ କରିଛି । ଜନସାଧାରଣଙ୍କୁ ଅହିଂସା ବିଷୟରେ ପ୍ରକୃତ ଶିକ୍ଷା ନଦେଇ ଏତେବଡ଼ ଆନ୍ଦୋଳନ ମଧ୍ୟକୁ ଠେଲି ଦେଲି ।'

ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହୃତ ହେବାପରେ ଗାନ୍ଧିଜୀ ସମଗ୍ର ଭାରତ ପଦଯାତ୍ରା କରି ଅହିଂସାର ପ୍ରକୃତ ମାର୍ଗ ବୁଝାଇବା ସଙ୍ଗେ ସଙ୍ଗେ ବିଭିନ୍ନ ରଚନାତ୍ମକ କାର୍ଯ୍ୟ, ଯଥା– ଅସ୍ପୃଶ୍ୟତା ନିବାରଣ, ସୂତାକଟା, ଖଦଡ଼ ପ୍ରଚାର, ବିଦେଶୀ ବସ୍ତ୍ର ବର୍ଜନ, ନିଶା ନିବାରଣ, ମୌଳିକ ଶିକ୍ଷା ଇତ୍ୟାଦିର ପ୍ରଚାର ଓ ପ୍ରସାର କରାଇଥିଲେ । ୧୯୨୧ରୁ ୧୯୪୨ ମସିହା ପର୍ଯ୍ୟନ୍ତ ପ୍ରାୟ ୨୦ ବର୍ଷ ସେ ଭାରତର ସମଗ୍ର ଅଞ୍ଚଳରେ ପଦଯାତ୍ରା କରିଥିଲେ । ଓଡ଼ିଶାରେ ଅନେକ ଥର ପଦଯାତ୍ରା କରିଥିଲେ । ଏହି ପଦଯାତ୍ରା ବେଳେ ସେ ସହରଠାରୁ ପୁରପଲ୍ଲୀ ପର୍ଯ୍ୟନ୍ତ ସବୁଆଡ଼େ ଯାଇ ଲୋକଙ୍କ ସୁଖ ଦୁଃଖ ବୁଝୁଥିଲେ ଓ ଉପରୋକ୍ତ ରଚନାତ୍ମକ କାର୍ଯ୍ୟଗୁଡ଼ିକପ୍ରତି ସେମାନଙ୍କୁ ଆକୃଷ୍ଟ କରାଉଥିଲେ । ଗାନ୍ଧିଜୀ ଦେଶର ସ୍ୱାଧୀନତା ଲାଭ ସଙ୍ଗେସଙ୍ଗେ ସାମାଜିକ ପରିବର୍ତ୍ତନ ଓ କୁସଂସ୍କାର ଦୂର କରିବା ପାଇଁ ମଧ୍ୟ ମନପ୍ରାଣ ଢାଳି ଦେଇଥିଲେ । ସେ ଅହିଂସାକୁ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ । ଆଜିର ହିଂସା ଜର୍ଜରିତ ବିଶ୍ୱରେ ଗାନ୍ଧିଜୀଙ୍କ ପ୍ରଦର୍ଶିତ ଅହିଂସା ମାର୍ଗର ଆବଶ୍ୟକତା ବେଶୀ ଉପଲବ୍ଧ କରାଯାଉଛି । ବିଶ୍ୱବକ୍ଷରେ ଯେତେ ଯେତେ ସ୍ୱାଧୀନତା ଆନ୍ଦୋଳନ ହୋଇଛି, ସେସବୁ ଗୁଳିଗୁଳା, ତୋପ ଓ କମାଣଦ୍ୱାରା ହିଂସାତ୍ମକ ବାଟଦ୍ୱାରା ସଂଗଠିତ ହୋଇଛି, କିନ୍ତୁ ଭାରତର ସ୍ୱାଧୀନତା ଆନ୍ଦୋଳନ ଅହିଂସା ମାଧ୍ୟମରେ ବିନା ରକ୍ତପାତରେ ସଫଳ ହୋଇପାରିଥିବା ବିଶ୍ୱରେ ବିସ୍ମୟ ଅଟେ । ଏହା କେବଳ ଅହିଂସାର ପ୍ରକୃତ ପୂଜାରୀ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସମ୍ଭବ ହୋଇପାରିଥିଲା ।

ମହାତ୍ମା ଗାନ୍ଧୀ ମହାନ୍ ପ୍ରେମମୟ ପୁରୁଷ ଥିଲେ । ସେ ମାନବ ଜାତିକୁ ପ୍ରେମ କରୁଥିଲେ । ପଶୁପକ୍ଷୀମାନଙ୍କୁ ମଧ୍ୟ ଅନ୍ତର ସହକାରେ ଭଲ ପାଉଥିଲେ । କ୍ଷୀର ବାଛୁରୀର ଆହାର ହୋଇଥିବାରୁ ଓ ନିଷ୍ଠୁର ମଣିଷ ବାଛୁରୀ ପାଇଁ ପର୍ଯ୍ୟାପ୍ତ ପରିମାଣର କ୍ଷୀର ନରଖି ଗାଈ ମାତାର ଚେରରୁ ସବୁ କ୍ଷୀର ଦୋହନ କରୁଥିବାରୁ ସେ ଗାଈ କ୍ଷୀର ପିଇବା ଛାଡ଼ି ଦେଇଥିଲେ । ପରେ ଡାକ୍ତରଙ୍କ ପରାମର୍ଶରେ ପରିଣତ ବୟସରେ ସାମାନ୍ୟ ଛେଳି କ୍ଷୀର ପାନ କରୁଥିଲେ ।

ବ୍ରିଟିଶ ସରକାରଙ୍କ ବିରୋଧରେ ସେ ଆନ୍ଦୋଳନ କରୁଥିଲେ ମଧ୍ୟ ସେ ବ୍ରିଟିଶବାସୀଙ୍କୁ ଘୃଣା କରୁ ନଥିଲେ । ସେ କୌଣସି ନିର୍ଦ୍ଦିଷ୍ଟ ଧର୍ମ, ସମ୍ପ୍ରଦାୟ ଓ ଗୋଷ୍ଠୀ ମଧ୍ୟରେ ଆବଦ୍ଧ ନଥିଲେ । ସେ ଥିଲେ ମାନବବାଦର ପ୍ରତୀକ । ସମଗ୍ର ମାନବ ଜାତିର ଅଭ୍ୟୁଥାନ ପାଇଁ ସେ ସଦାସର୍ବଦା କାର୍ଯ୍ୟ କରୁଥିଲେ । ସେ ନୂଆଖାଲି ସାମ୍ପ୍ରଦାୟିକ ଦଙ୍ଗା ସମୟରେ ଏକାକୀ ପଦଯାତ୍ରା କରି ସାମ୍ପ୍ରଦାୟିକ ସଦ୍‌ଭାବ ଫେରାଇ ଆଣି ପାରିଥିଲେ ।

ସେ ନାଥୁରାମ ଗଡ଼ସେ ନାମକ ଏକ ପାଗଳ ଯୁବକର ଗୁଳି ଚୋଟରେ ହେ ରାମ କହି ଟଳିପଡ଼ି ଥିବାବେଳେ ମଧ୍ୟ ଅପରାଧୀକୁ ଦଣ୍ଡ ନଦେଇ କ୍ଷମା ଦେବା ପାଇଁ ହସ୍ତ ହଲାଇ କହିଥିଲେ ।

ଏପରି ମାନବବାଦୀ, ବିଶ୍ୱହିତୈଷୀ, ସତ୍ୟ, ପ୍ରେମ, ଅହିଂସାର ପୂଜାରୀ ଜନନେତା ଆଧୁନିକ ବିଶ୍ୱରେ ବିରଳ, ଏଥିରେ ସନ୍ଦେହ ନାହିଁ ।

ପୂର୍ବତନ ବିଧାୟକ
ମାହାଙ୍ଗା

# ନୀଳାଚଳ ଓ ନୀଳାଚଳୀ

ଡକ୍ଟର ପ୍ରଦୀପ କୁମାର ଚୌଧୁରୀ

**ଆ**ମେ ସବୁ ନୀଳାଚଳ ଶବ୍ଦ ସହ ପରିଚିତ । କିନ୍ତୁ ନୀଳାଚଳୀ ଶବ୍ଦ ଆମ୍ଭମାନଙ୍କୁ ଅପରିଚିତ ଏବଂ ନୂଆ ହେଲେ ମଧ୍ୟ ଏହା ନୀଳାଚଳ ସହ ସମ୍ପର୍କିତ, ଏଥିରେ ସନ୍ଦେହ ନାହିଁ । ନୀଳାଚଳ ଅର୍ଥ ନୀଳ ଅଞ୍ଚଳ । ନୀଳାଚଳ ପୁଲିଙ୍ଗକୁ ସୂଚାଇଲାବେଳେ ନୀଳାଚଳୀ ସ୍ତ୍ରୀଲିଙ୍ଗ ଶବ୍ଦ ଅଟେ । ନୀଳାଚଳ ଅର୍ଥ ହେଲା ନୀଳ ଅଞ୍ଚଳରେ ଅବସ୍ଥାନ କରୁଥିବା ଏକମାତ୍ର ପୁରୁଷକାରକ





ଗୁଆହାଟିର କାମାକ୍ଷା ମନ୍ଦିର

ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ବୁଝାଇଥାଏ । ନୀଳାଚଳୀ ଅର୍ଥ ନୀଳ ଅଞ୍ଚଳରେ ଅବସ୍ଥାନ କରୁଥିବା ଏକମାତ୍ର ମାତୃଶକ୍ତି ମାତା କାମାକ୍ଷାଙ୍କୁ ବୁଝାଇଥାଏ । ସୁଦୂର ଭାରତର ପୂର୍ବାଞ୍ଚଳରେ ଆସାମ ରାଜ୍ୟର ରାଜଧାନୀ ଗୁଆହାଟିଠାରେ ନୀଳ ପର୍ବତ ଉପରେ ମାତା କାମାକ୍ଷା ବାସ କରନ୍ତି । ଠିକ୍ ସେହିପରି ଶ୍ରୀଜଗନ୍ନାଥଙ୍କୁ ନୀଳାଚଳିଆ ଏବଂ ମାତା କାମାକ୍ଷାଙ୍କୁ ନୀଳାଚଳୀ ବୋଲି ଭକ୍ତିରେ ସମ୍ବୋଧନ କରାଯାଏ । ଭାରତବର୍ଷର ସୁଦୂର ପୂର୍ବ ଦିଗରେ ମାତା କାମାକ୍ଷାଙ୍କ ପୀଠ ଅବସ୍ଥିତ ହେଲାବେଳେ, ଠିକ୍ ସେହିପରି ଭାରତବର୍ଷର ଚତୁଃଧାମର ଶ୍ରେଷ୍ଠ ଧାମ ଶ୍ରୀଜଗନ୍ନାଥଙ୍କ କ୍ଷେତ୍ର ପୂର୍ବ ଦିଗରେ ଅବସ୍ଥାପିତ । ନୀଳାଚଳ ଧାମରେ ଥିବା ଶ୍ରୀଜଗନ୍ନାଥଙ୍କ କ୍ଷେତ୍ର ପୂର୍ବ ଦିଗରେ ଅବସ୍ଥାପିତ । **ନୀଳାଚଳ ଧାମରେ ଥିବା ଶ୍ରୀଜଗନ୍ନାଥ ଏବଂ ନୀଳ ପର୍ବତରେ ଥିବା ମାତା କାମାକ୍ଷାଙ୍କ ବହୁ ପୌରାଣିକ, ତାତ୍ତ୍ୱିକ, ଐତିହାସିକ ଏବଂ ଭୌଗୋଳିକ ସାମଞ୍ଜସ୍ୟ ରହିଛି । ପୌରାଣିକ ତତ୍ତ୍ୱରେ ଶକ୍ତିପୀଠ ମାତା କାମାକ୍ଷା ଦେବୀ ସତୀଙ୍କ ସହ ସମ୍ପର୍କିତ ।** ଏକଦା ମାତା ସତୀଙ୍କ ପିତା ଦକ୍ଷ ପ୍ରଜାପତିଙ୍କଦ୍ୱାରା ଅନୁଷ୍ଠିତ ଯଜ୍ଞକୁ ନିଜ ଝିଅ ସତୀ ଏବଂ ଜାମାତା ମହାଦେବଙ୍କୁ ନିମନ୍ତ୍ରିତ କରି ନଥିଲେ । ଏଥିରେ ସତୀ ନିଜକୁ ଅପମାନିତ ମନେ କରି ପିତାଙ୍କ ଗୃହକୁ କାରଣ ବୁଝିବାକୁ ଗଲେ । ସେଠାରେ ନିଜ ପିତା ଦକ୍ଷ ପ୍ରଜାପତିଙ୍କଠାରୁ ନିଜର ପ୍ରିୟ ପତିଦେବ ମହାଦେବଙ୍କପ୍ରତି

ଅପମାନିତ ଶବ୍ଦ ଏବଂ ଭର୍ତ୍ସନା ଶୁଣି ନିଜକୁ ଅସହ୍ୟ ମନେକରି ନିଜ ପିତାଙ୍କଦ୍ୱାରା ଆୟୋଜିତ ପବିତ୍ର ଯଜ୍ଞ କୁଣ୍ଡରେ ନିଜକୁ ଝାସ ଦେଲେ । ଏଥିରେ ଦେବ ଦେବ ମହାଦେବ କ୍ରୋଧିତ ହୋଇ ଦକ୍ଷ ପ୍ରଜାପତିଙ୍କ ଶିର ଛେଦନ କଲେ ଏବଂ ବିଚଳିତ ଓ ବିବ୍ରତ ହୋଇ ମାତା ସତୀଙ୍କ ଅର୍ଦ୍ଧଦଗ୍ଧ ନୀଳବର୍ଣ୍ଣ ଶରୀରକୁ ନିଜ ସ୍କନ୍ଧରେ ଧରି ଚତୁର୍ଦ୍ଦିଗ ବୁଲିବାକୁ ଲାଗିଲେ । ଏଥିରେ ସର୍ବ ଦେବାଦେବୀ ଚିନ୍ତିତ ହୋଇ ପଡ଼ିଲେ । ଦେବ ଦେବ ମହାଦେବ ଯଦି ମୃତ ସତୀଙ୍କ ଶରୀରପ୍ରତି ମୋହତ୍ୟାଗ ନ କରନ୍ତି, ତେବେ ସୃଷ୍ଟି ଭୟଙ୍କର ପରିସ୍ଥିତିର ସମ୍ମୁଖୀନ ହୋଇ ପ୍ରଳୟ ବା ଧ୍ୱଂସମୁଖୀ ହେବ । ତେଣୁ ସତୀଙ୍କ ଶରୀର ପ୍ରତି ଶିବଙ୍କ ମୋହ ଭଙ୍ଗ କରିବାକୁ ଉପାୟ ଚିନ୍ତା କରାଗଲା । ଏହି ଉପାୟର ମୁଖ୍ୟ କର୍ଣ୍ଣଧାର ଶ୍ରୀହରି ବିଷ୍ଣୁ ଧାରଣ କରିଥିବା ଶ୍ରୀସୁଦର୍ଶନ ଚକ୍ରକୁ ନିର୍ଦ୍ଦେଶ ଦେଲେ ଶିବଙ୍କ ଅନୁଗାମୀ ହେବାକୁ ଏବଂ ଶିବଙ୍କ ସ୍କନ୍ଧରେ ଥିବା ନିର୍ଜୀବ ସତୀଙ୍କ ଶରୀରକୁ ଖଣ୍ଡବିଖଣ୍ଡିତ କରି ଶିବଙ୍କ ମୋହ ଭଙ୍ଗ କରିବାକୁ ।

ଶ୍ରୀବିଷ୍ଣୁଙ୍କ ଆଦେଶ ମାନି ସୁଦର୍ଶନ ମାତା ସତୀଙ୍କ ଶରୀରକୁ ଖଣ୍ଡବିଖଣ୍ଡିତ କରିବାକୁ ଲାଗିଲେ । ମାତାଙ୍କ ଶରୀରର ଭିନ୍ନ ଭିନ୍ନ ଅଙ୍ଗ ବିକ୍ଷିପ୍ତ ଭାବରେ ସାରା ଭାରତବର୍ଷରେ ୫୧ଟି କ୍ଷେତ୍ରରେ ପଡ଼ିଲା । କିନ୍ତୁ ଶେଷରେ ମାତାଙ୍କର ଗୁପ୍ତାଙ୍ଗ ଭାରତର ପୂର୍ବରେ ଆସାମ ରାଜ୍ୟର ଗୁଆହାଟିର ନିକଟବର୍ତ୍ତୀ ଏକ ନୀଳ ପର୍ବତରେ ପତିତ ହେଲା । ଏଠାରେ ଶିବଙ୍କର ମୋହ ଭଙ୍ଗ ହେଲା । ଶିବ ଶ୍ରୀହରି ବିଷ୍ଣୁଙ୍କୁ ନିଜ ସମ୍ମୁଖରେ ଦେଖି କ୍ରୋଧିତ ହେଲେ, କାରଣ ତାଙ୍କର ଅତି ପ୍ରିୟତମା ପତ୍ନୀ ସତୀଙ୍କ ପବିତ୍ର ଶରୀରକୁ ନିଜେ ବିଷ୍ଣୁ ପଠାଇଥିବା ସୁଦର୍ଶନ ଚକ୍ରଦ୍ୱାରା ଖଣ୍ଡବିଖଣ୍ଡିତ କଲେ । ଏଥିରେ ଶ୍ରୀହରି ମହାଦେବଙ୍କୁ ବିନମ୍ର ପ୍ରମାଣ କରି କହିଲେ, ହେ ଆଶୁତୋଷ ! ତୁମେ ଦେଇଥିବା ସୁଦର୍ଶନ ଚକ୍ରଦ୍ୱାରା ଖଣ୍ଡବିଖଣ୍ଡିତ ମାତାଙ୍କ ଶରୀରର ପତିତ ଅଞ୍ଚଳ ଏକ ଏକ ଶକ୍ତିପୀଠରେ ପରିଣତ ହେବ । **ଏହା ଶୁଣି ମହାଦେବ କହିଲେ, ହେ ବିଷ୍ଣୁ ! ତୁମେ ସତୀଙ୍କ ଶରୀରକୁ ଖଣ୍ଡବିଖଣ୍ଡିତ କରିଥିବା ହେତୁ ତୁମେ ମଧ ନୀଳ ପର୍ବତରେ ଖଣ୍ଡିଆ ଦିଅଁ ଭାବରେ ପୂଜା ପାଇବ । ତେଣୁ ନୀଳାଚଳରେ ଶ୍ରୀଜଗନ୍ନାଥ ହସ୍ତ, ପଦ, କର୍ଣ୍ଣ ବିହୁନେ ଅବସ୍ଥାପିତ ।** ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ମାତା ସତୀଙ୍କ ପତିତ ଅର୍ଦ୍ଧଦଗ୍ଧ ଶରୀର ନୀଳ, ଦେବ ଦେବ ମହାଦେବଙ୍କ କଣ୍ଠ ନୀଳ ଏବଂ ଶ୍ରୀବିଷ୍ଣୁଙ୍କ ଶରୀରର ବର୍ଣ୍ଣ ଶ୍ୟାମଳ ବା ନୀଳ । ଏହି ପର୍ବତ ଉପରେ ଶିବ, ବିଷ୍ଣୁ ଓ ଦେବୀ ସତୀଙ୍କ ତ୍ରିନୀଳ ସୂତ୍ର ଜାଗ୍ରତ ହେବା ଫଳରେ ସାରା ଅଞ୍ଚଳ ନୀଳ ଦେଖାଗଲା । ସେଠାରେ କାମାକ୍ଷା ଦେବୀଙ୍କ ଅବସ୍ଥାନ ହେତୁ ନୀଳାଚଳୀ ରୂପେ ସେ ଖ୍ୟାତ ହେଲେ । ଠିକ୍ ସେହିପରି, ଶ୍ରୀମନ୍ଦିର ମହୋଦଧି ନିକଟବର୍ତ୍ତୀ ଏକ କୂର୍ମାକୃତି ପାହାଡ଼ ଉପରେ ଅବସ୍ଥାପିତ । ମହାପ୍ରଭୁ ଶ୍ରୀଜଗନ୍ନାଥ ଅବସ୍ଥାପିତ ଏହି ପାହାଡ଼ ନିଜର କୃଷ୍ଣନୀଳ ବର୍ଣ୍ଣ ଶରୀରର ତେଜରେ ସମଗ୍ର ଅଞ୍ଚଳ ନୀଳବର୍ଣ୍ଣ ହୋଇ ଉଠିଲା । ପ୍ରଭୁ ବିଜେ କରୁଥିବା ଶ୍ରୀମନ୍ଦିର ରତ୍ନସିଂହାସନ କନ୍ଦର ନୀଳବର୍ଣ୍ଣରେ ଉଦ୍‌ଭାସିତ ହେବା ଫଳରେ ଏହି କନ୍ଦରକୁ ନୀଳକନ୍ଦର କୁହାଗଲା । ତେଣୁ ସେ ନୀଳାଚଳିଆ ଭାବେ ସାରା ପୃଥିବୀରେ ପରିଚିତ ।

ଐତିହାସିକ କିମ୍ବଦନ୍ତୀ କହେ, ଭାରତ ଭୂଖଣ୍ଡର ପୂର୍ବାଞ୍ଚଳ ଓଡ଼ିଶା ଓ ଆସାମର ସଂସ୍କୃତି, ପରମ୍ପରା ଓ ପୂଜାପର୍ବାଣି ସହିତ ବହୁ ସାମଞ୍ଜସ୍ୟ ରହିଛି । ଆସାମ ରାଜ ପରିବାର ସହିତ ଆମ ରାଜ୍ୟର ରାଜ ପରିବାରମାନଙ୍କର ସମ୍ପର୍କ ଆମ ଇତିହାସ ପୃଷ୍ଠା ମଣ୍ଡନ କରିଛି । ଶ୍ରୀକ୍ଷେତ୍ର ଭାରତରେ ଏକ ବିଶିଷ୍ଟ ଦେବ କ୍ଷେତ୍ର ଭାବେ ପରିଚିତ । ଭାରତର ଏକମାତ୍ର ଦୈବୀକ୍ଷେତ୍ର ମାତା କାମାକ୍ଷା ପୀଠ ସହ ଶ୍ରୀଜଗନ୍ନାଥଙ୍କ ପ୍ରତ୍ୟକ୍ଷ ସମ୍ପର୍କ ରହିଛି । ରଜ ସମୟର ଅମାବାସ୍ୟା ତିଥିରେ ଏହି ପ୍ରାଚୀନ ଶକ୍ତିପୀଠରେ ଅମ୍ବୁ ଅମାବାସ୍ୟା ପର୍ବ ପାଳିତ ହୁଏ । ଏହି ସମୟରେ ମାତା ରଜସ୍ୱଳା ହୁଅନ୍ତି ବୋଲି ଆମର ବିଶ୍ୱାସ ରହିଛି । ସେହି ସମୟରେ ମାତାଙ୍କ ମନ୍ଦିର ସର୍ବସାଧାରଣଙ୍କ ଦର୍ଶନ ଓ ପୂଜା ପାଇଁ ବନ୍ଦ ରହେ ଏବଂ ଗୁପ୍ତପୂଜା ମାତାଙ୍କ ସେବାୟତମାନଙ୍କଦ୍ୱାରା ପାଳିତ ହୋଇଥାଏ । ଠିକ୍ ସେହି ସମୟରେ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ମାତା ସୁଭଦ୍ରା ଅଣସର ଯାଆନ୍ତି, ସର୍ବସାଧାରଣଙ୍କ ଦର୍ଶନ ଓ ପୂଜା ବନ୍ଦ ରହେ ଏବଂ ପ୍ରଭୁଙ୍କ ଗୁପ୍ତ ସେବା ଦଇତାପତିମାନଙ୍କଦ୍ୱାରା ପାଳିତ ହୁଏ । ଏଥିରୁ ପ୍ରମାଣିତ ଭାରତବର୍ଷର ଏହି ଦେବପୀଠ ଶ୍ରୀକ୍ଷେତ୍ରର ଏହି ପରମ୍ପରା ଏକମାତ୍ର ଦୈବୀପୀଠ ମାତା କାମାକ୍ଷାଙ୍କ ସହ ସମ୍ପର୍କ ରହିଛି ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ତେଣୁ ଶ୍ରୀକ୍ଷେତ୍ର ନୀଳାଚଳ ଏବଂ ଶ୍ରୀକ୍ଷେତ୍ରୀ ନୀଳାଚଳୀ । ଜଣେ ସୃଷ୍ଟିଦାତ୍ରୀ ହେଲାବେଳେ ଅନ୍ୟ ଜଣେ ମୋକ୍ଷଦାତା ।

ଜ୍ୟୋତିର୍ବିଦ ଓ ଭାରତୀୟ
ସୂଚନା ସେବା ଅଧିକାରୀ
କ୍ୱାର୍ଟର ନଂ-ଭି.ଏ.-୩୪/୪, ୟୁନିଟ୍-୨
ଭୁବନେଶ୍ୱର

■■■■■■■■

# ଶ୍ରୀମନ୍ଦିରରେ ତନ୍ତ୍ରର ପ୍ରଭାବ

ନିରଞ୍ଜନ ପ୍ରଧାନ

**ଓ**ଡ଼ିଶା ଏକ ପରମ ପବିତ୍ର ଜଗନ୍ନାଥ ସଂସ୍କୃତିର ଭୂମି ରୂପେ କାହିଁ କେଉଁ ଅନାଦିକାଳରୁ ପରିଚିତ । ଏହି ଜଗନ୍ନାଥଙ୍କ ଭୂମିରେ ଯୁଗେ ଯୁଗେ ବିଭିନ୍ନ ଧର୍ମର ସମନ୍ୱୟ ଘଟିଛି । ଏଠାରେ ତନ୍ତ୍ରର ପ୍ରଚଳନ କେବେଠାରୁ ଆରମ୍ଭ ହେଲା ସେ ସମ୍ପର୍କରେ ଇତିହାସ ନୀରବ ।

ଓଡ଼ିଶାରେ ତନ୍ତ୍ର ତିନି ଭାଗରେ ବିଭକ୍ତ ଯଥା– ଆଦିବାସୀ ତନ୍ତ୍ର, ବୌଦ୍ଧତନ୍ତ୍ର ଓ ହିନ୍ଦୁତନ୍ତ୍ର ଅନ୍ୟତମ । ସପ୍ତମ/ଅଷ୍ଟମ ଶତାବ୍ଦୀ ବେଳକୁ ଆଦିବାସୀ ତନ୍ତ୍ର ଓ ବୌଦ୍ଧତନ୍ତ୍ର ଏଭଳି ଭାବରେ ପ୍ରାଧାନ୍ୟ ବିସ୍ତାର କରିଥିଲା ଯେ ପରବର୍ତ୍ତୀ ସମୟରେ ଶ୍ରୀକ୍ଷେତ୍ରକୁ ଆସିଥିବା ଆର୍ଯ୍ୟମାନେ ସ୍ୱତଃ ଏହାକୁ ଗ୍ରହଣ କରି ନେଇଥିଲେ । ପୁରୀ ରାଜା ଚୋଡ଼ଗଙ୍ଗ ଦେବଙ୍କ ସମୟରେ ନିତେଇ ଧୋବଣୀ ଓ ଲୁହାକୁଟୀ କମାରୁଣୀ ନାମରେ ତନ୍ତ୍ର ଆସନ ଜମାଇ ରଖିଥିଲା । ଏହାଦ୍ୱାରା ଓଡ଼ିଶାର ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କ ପୀଠରେ ତନ୍ତ୍ରର ପ୍ରଭାବ ପରିଲକ୍ଷିତ ହେଲା । ମୋଟ ଉପରେ ସମଗ୍ର ଓଡ଼ିଶାକୁ ତନ୍ତ୍ରପୀଠ ରୂପେ ଗ୍ରହଣ କରାଯାଇଛି ।



'ଉତ୍କଳେ ନାଭିଦେଶେଷ୍ଟ ବିରଜା କ୍ଷେତ୍ର ମୁଚ୍ୟତେ
ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବ ।'

ତନ୍ତ୍ରର ଆଉ ଗୋଟିଏ ମୁଖ୍ୟ କାରଣ ହେଲା– ଦେବତାଙ୍କୁ ଗୋଟିଏ ଯନ୍ତ୍ର ଉପରେ ଉପବେଶନ କରାଇ ବିଭିନ୍ନ ଉପଚାରରେ ପୂଜା କରାଯାଇଥାଏ । ଶ୍ରୀମନ୍ଦିରରେ ଯେଉଁ ରତ୍ନସିଂହାସନ ଉପରେ ଠାକୁରମାନେ ବସି ପୂଜା ପାଉଛନ୍ତି, ସେଥିରେ ତାରା ଯନ୍ତ୍ର, ଭୁବନେଶ୍ୱରୀ ଯନ୍ତ୍ର ଓ ଶ୍ୟାମା ଯନ୍ତ୍ର ଖୋଦିତ ହୋଇଛି । ଯଥାକ୍ରମେ ବଡ଼ଠାକୁର ଶ୍ରୀବଳଭଦ୍ର, ମା' ସୁଭଦ୍ରା ଓ ମହାପ୍ରଭୁ ଶ୍ରୀଜଗନ୍ନାଥ ବସି ପୂଜା ପାଉଛନ୍ତି । ପୁନଶ୍ଚ ଶ୍ରୀଜଗନ୍ନାଥଙ୍କ ଆଗରେ ଯେଉଁଠି ଭୋଗ ବଢ଼ାଯାଏ – ତାହା ଭୈରବୀ ଚକ୍ର ଉପରେ ସଂପାଦିତ ହୋଇଥାଏ ।

'ତାରା ଯନ୍ତ୍ରେ ପ୍ରଳମ୍ବଘ୍ନୋ ସୁଭଦ୍ରା ଭୁବନେଶ୍ୱରୀ
ଶ୍ୟାମା ଯନ୍ତ୍ରେ ଜଗନ୍ନାଥ ସାକ୍ଷାତ୍ ଦକ୍ଷିଣ କାଳିକା ।'

ଆଉମଧ ଶ୍ରୀଜଗନ୍ନାଥ ମନ୍ଦିରରେ ପଞ୍ଚମକାର ପୂଜାର ବିଧାନ ଦେଖିବାକୁ ମିଳେ । ଏହି ପଞ୍ଚମକାର ପୂଜା – ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନର ସାଙ୍କେତିକ ନିଦର୍ଶନ । ମଦ୍ୟ– ନାଲିଓଳିରେ ଘଷାଜଳ, କଂସା ପାତ୍ରରେ ପଇଡ଼, ମାଂସ– ଅଦାକୁ ଘିଅରେ ଭାଜି ଅଦାପାଚେଲି, ମତ୍ସ୍ୟ– ବିରିପିଠା, ମୁଦ୍ରା– କାନ୍ତି, ମୈଥୁନ– ଦେବଦାସୀ ଓ ଯୌନକଳା ମୂର୍ତ୍ତି । ଶ୍ରୀମନ୍ଦିରରେ ଏହାକୁ ସିଧାସଳଖ ଗ୍ରହଣ ନକରି ସାଙ୍କେତିକ ଭାବେ ଗ୍ରହଣ କରନ୍ତି । କେତେକ ମତବ୍ୟକ୍ତ କରନ୍ତି ଯେ – ଶ୍ରୀଜଗନ୍ନାଥ ପୂଜା ସମୟରେ ତନ୍ତ୍ରଶାସ୍ତ୍ର ଅନୁଯାୟୀ କାଳିକା ରୂପେ 'କ୍ଲିଂ' ବୀଜମନ୍ତ୍ରରେ ପୂଜା ପାଆନ୍ତି । ଯଥା– 'ଓଁ କ୍ଲିଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ନମଃ ।' ତେଣୁ ତନ୍ତ୍ରଶାସ୍ତ୍ର ଅନୁଯାୟୀ–

'ନୀଳାଦ୍ରୌ ଶ୍ରୀଜଗନ୍ନାଥ ସାକ୍ଷାତ୍ ଦକ୍ଷିଣକାଳିକା'

କେବଳ ସେତିକି ନୁହେଁ । ତନ୍ତ୍ର ଚୂଡ଼ାମଣି ଗ୍ରନ୍ଥରେ ମଧ କୁହାଯାଇଛି –

'ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ ।'

ଏଠି ଆଉ ଗୋଟିଏ କଥା ଦେଖିବା – ତାନ୍ତ୍ରିକ ଉପଚାରର ଅନ୍ୟ ଏକ ଅଙ୍ଗ ହେଉଛି ବଳିପ୍ରଥା । ଶ୍ରୀମନ୍ଦିରର ବେଢ଼ା ଭିତରେ

ମା' ବିମଳା ଠାକୁରାଣୀଙ୍କ ପାଖରେ ଆଶ୍ୱିନ ମାସ ଦଶହରାରେ ମହାସପ୍ତମୀ, ମହାଷ୍ଟମୀ ଓ ମହାନବମୀ ମତ୍ସ୍ୟ ରନ୍ଧନ କରାଯାଇ ପୂଜା କରିବା ସଙ୍ଗେ ସଙ୍ଗେ ପଶୁ ବଳିର ବିଧାନ ଆଜି ପର୍ଯ୍ୟନ୍ତ ଚଳି ଆସିଛି । ମହାସପ୍ତମୀ, ମହାଷ୍ଟମୀ ଓ ମହାନବମୀ ଏହି ତିନି ଦିନ ମହାପ୍ରଭୁଙ୍କ ପହୁଡ଼ ସରିବା ପରେ ମା' ବିମଳାଙ୍କ ପାଖରେ ବଳିକର୍ମ ଆରମ୍ଭ ହୁଏ । ସେହିଦିନ ଦେବୀ ରକ୍ତମୁଖା ହୋଇଥିବାରୁ ଶ୍ରୀଜଗନ୍ନାଥଙ୍କ ବିଡ଼ିଆ ଆଦି ବିମଳାଙ୍କୁ ସମର୍ପଣ କରାଯାଏ ନାହିଁ । ବଳି ନିମନ୍ତେ ମାଛକୁ ଶ୍ରୀଜଗନ୍ନାଥଙ୍କ ପହୁଡ଼ ପରେ ପଶ୍ଚିମ ଦ୍ୱାର ବାଟେ (ତନ୍ତ୍ର ଦ୍ୱାର) ବିମଳାଙ୍କ କୂଅ ପାଖରେ ଅସ୍ଥାୟୀ ତାଟି ଘେରା ରୋଷଘରେ ମାଛ ଆଦି ରନ୍ଧାଯାଏ । ବିମଳାଙ୍କ ଜଗମୋହନରେ କାଳିଙ୍କ ପାଖରୁ ଖଡ୍ଗ ଆଣି ସଂସ୍କାର ପୂଜା କରାଯାଏ । ତା'ପରେ କଟେଇତଦ୍ୱାରା ବଳିଛେଦନ ବକୁଳ ପିଣ୍ଡିରେ କରନ୍ତି । ନିଶାର୍ଦ୍ଧରେ ସେବାୟତଙ୍କଦ୍ୱାରା ରକ୍ତରେ ପାଚିଲା କଦଳି ପଡ଼ି ବିମଳାଙ୍କ ସମ୍ମୁଖରେ ରଖାଯାଏ । ତାନ୍ତ୍ରିକ ପୂଜକ ଜପ କରୁଥିବାବେଳେ ଖେଚୁଡ଼ି ଓ ମାଛ ଆଦି ବିମଳାଙ୍କ ମୁଖଶାଳାରେ ପୂଜା କରାଯାଏ ।

ତନ୍ତ୍ର ଗ୍ରନ୍ଥରେ ମଧ୍ୟ ଜଗନ୍ନାଥଙ୍କୁ ତନ୍ତ୍ରର ଦେବତା ବୋଲି ବର୍ଣ୍ଣନା କରାଯାଇଛି । ନୀଳତନ୍ତ୍ରର ବର୍ଣ୍ଣନା ଅନୁସାରେ–

'ତାରାଯନ୍ତ୍ର ମହାଶେଷ ସୁଭଦ୍ରା ଭୁବନେଶ୍ୱରୀମ୍
ଶ୍ୟାମାଚକ୍ରେ ଜଗନ୍ନାଥଃ ଦକ୍ଷିଣ କାଳିକା ସ୍ୱୟଂ ।'

ପୁନଶ୍ଚ ତାନ୍ତ୍ରିକ ମତରେ ପଞ୍ଚମକାର ଉପାସନା ପଦ୍ଧତି ଭିତରେ ମୈଥୁନ ହେଉଛି ଶେଷତତ୍ତ୍ୱ । ଏ ସମ୍ବନ୍ଧରେ ଶିବ ପାର୍ବତୀଙ୍କୁ କହିଛନ୍ତି–

'ମୈଥୁନଂ ପରମଂ ତତ୍ତ୍ୱ ସୃଷ୍ଟି ସ୍ଥିତ୍ୟନ୍ତ କାରଣମ୍
ମୈଥୁନା ଜାୟତେ ସିଦ୍ଧି ବ୍ରହ୍ମଜ୍ଞାନ ସୁଦୁର୍ଲ୍ଲଭମ୍ ।'

ମୈଥୁନ ହେଉଛି ପରମ ତତ୍ତ୍ୱ । ମୈଥୁନଦ୍ୱାରା ବ୍ରହ୍ମଜ୍ଞାନ ସିଦ୍ଧି ହୋଇପାରେ । ଶ୍ରୀମନ୍ଦିରରେ ମୈଥୁନ ଚିତ୍ର ତାନ୍ତ୍ରିକ ଉପାସନାର ନିଦର୍ଶନ ସ୍ୱରୂପା କୈବଲ୍ୟ ତନ୍ତ୍ର ପ୍ରଥମ ପଟଳରେ ଉଲ୍ଲେଖ ଅଛି ଯେ–

'ମଦ୍ୟମାଂସ ତଥା ମତ୍ସ୍ୟ ମୁଦ୍ରା ମୈଥୁନ ମେବଚ
ପଞ୍ଚତତ୍ତ୍ୱ ମିଦଂ ଦେବୀ ନିର୍ବାଣ ମୁକ୍ତ ହେତବେ ।'

ଅଷ୍ଟମ ଶତାବ୍ଦୀରେ ଓଡ଼ିଶାରେ ବଜ୍ରଯାନୀ ତନ୍ତ୍ର ପ୍ରାଧାନ୍ୟ ବିସ୍ତାର କରିବା, ଶକ୍ତି ଉପାସନା ମାଧ୍ୟମରେ କାମୋପାସନା ଅତ୍ୟନ୍ତ ଲୋକପ୍ରିୟ ହୋଇଉଠିଲା । ଫଳରେ ମନ୍ଦିର ଗାତ୍ରରେ ମୈଥୁନ ମୂର୍ତ୍ତିମାନ ଖୋଳାଯାଇଥିଲା । ଏଗୁଡ଼ିକୁ ଆର୍ଯ୍ୟ ପରମ୍ପରାକୁ ବିଶ୍ୱାସ କରୁଥିବା ଲୋକମାନେ ଅବଶ୍ୟ ଚତୁର୍ବର୍ଗ ଫଳ ପ୍ରାପ୍ତି (ଧର୍ମ, ଅର୍ଥ, କାମ, ମୋକ୍ଷ) ନିମିତ୍ତ କାମକୁ ଗ୍ରହଣ କରିନେଲେ । ମାତ୍ର ଏହାର ମୂଳପିଣ୍ଡ ଥିଲା ସେଇ ତାନ୍ତ୍ରିକ ପରମ୍ପରା । ସେଇ ସମୟରେ ଶାକ୍ତ ତାନ୍ତ୍ରିକ ମତରେ ସୁଭଦ୍ରାଙ୍କୁ ମଧ୍ୟ ଜଗନ୍ନାଥଙ୍କ ଶକ୍ତି ଭାବରେ ଚିତ୍ରଣ କରାଯାଇଛି ।

'ତସ୍ୟ ଶକ୍ତି ସ୍ୱରୂପେୟଂ ଭଗିନୀ– ସ୍ତ୍ରୀ (ଶ୍ରୀ) ପ୍ରବର୍ତ୍ତିକା'
(ସ୍କନ୍ଦ ପୁରାଣ, ଉତ୍କଳ ଖଣ୍ଡ)

ସୁଭଦ୍ରାଙ୍କୁ ସ୍ତ୍ରୀ ଜାତିର ପ୍ରତୀକ ବୋଲି ଉଲ୍ଲିଖିତ କରାଯିବା ସଂଗେସଂଗେ ତାଙ୍କୁ ଜଗନ୍ନାଥଙ୍କର ଶକ୍ତି ବୋଲି ଗ୍ରହଣ କରାଯାଇଛି । ଏଣେ ଭଗିନୀ– ତେଣେ ସ୍ତ୍ରୀ, ଏ ଉଭୟର ଏକତ୍ର ସନ୍ନିବେଶ ଆମକୁ ବଡ଼ ଅସାମାଜିକ ଲାଗୁଥିଲେ ମଧ୍ୟ ତନ୍ତ୍ର ପରମ୍ପରା ପାଇଁ ଏହା ଏକ ସାଧାରଣ କଥା ଅଟେ । ତେଣୁ ଏ ପ୍ରକାର ପରିପ୍ରକାଶକୁ ତନ୍ତ୍ରର ପ୍ରଭାବ ବୋଲି ଧରିନେବା ଯୁକ୍ତିସଙ୍ଗତ ।

ଓଡ଼ିଶାରେ ବୌଦ୍ଧତନ୍ତ୍ରର ପ୍ରଭାବ ଜଗନ୍ନାଥଙ୍କ ସେବା–ପୂଜାରେ ପରିଲକ୍ଷିତ ହେଲା । ତନ୍ତ୍ରରେ ପଞ୍ଚମକାରର ମୈଥୁନ କ୍ରମରେ – ଯେକୌଣସି ପୁରୁଷ ଯେକୌଣସି ସ୍ତ୍ରୀକୁ ଶକ୍ତି ରୂପରେ ଗ୍ରହଣ କରିବାର କୌଣସି ଦ୍ୱିଧା ବା ଅନ୍ତରାୟ ନଥିଲା । ଏପରିକି ଜନନୀ, ଭଗିନୀ, କନ୍ୟା, ଭଗିନେୟୀଙ୍କୁ ମଧ୍ୟ ଶକ୍ତିରୂପରେ ବା ସାଧିକା ସ୍ତ୍ରୀ ରୂପରେ ଗ୍ରହଣ କରାଯାଇପାରୁଥିଲା । ସମାଜର ପୂଜା ତାନ୍ତ୍ରିକ ଯୋଗୀ ଋଷିମାନେ ଏହି କାର୍ଯ୍ୟ କରୁଥିଲେ । ଅନଙ୍ଗ ବ୍ରଜଙ୍କର ଉପଦେଶ କ୍ରମରେ ଏ ପ୍ରକାର ଉପଦେଶ ଦିଆଯାଇଥିଲା, ଯଥା–

'ଜନୟିତ୍ରୀଂ ସ୍ୱସାରଂ ଚ ସ୍ୱପୁତ୍ରୀଂ ଭଗିନେୟିକାମ୍
କାମୟନ୍ ତତ୍ତ୍ୱଯୋଗେନ ଲଘୁସିଧ୍ୟେତ୍ ସାଧକାଃ ।'

କୌଳ ଯୋଗୀମାନଙ୍କର କର୍ପୂର ମଞ୍ଜରୀରେ ଉଲ୍ଲେଖ ଅଛି –

'ମଦ୍ୟ ପିବାମୋ ମହିଳାଂ ରମୟାମଂ
ମୋକ୍ଷଂ ଚ ଯାମଃ କୁଳମାର୍ଗ ଲଗ୍ନାଃ ।'

ସେଥିପାଇଁ ଯେତେବେଳେ ତନ୍ତ୍ର ଓଡ଼ିଶାରେ ଲୋକପ୍ରିୟ ହୋଇଉଠିଲା ତାହାକୁ ବ୍ରାହ୍ମଣ, ବୈଷ୍ଣବ ଓ ଶୈବମାନେ ବିନାଦ୍ୱିଧାରେ ଗ୍ରହଣ କରିନେଲେ । ଏହାଦ୍ୱାରା ସେମାନଙ୍କର ଲୋକପ୍ରିୟତା ସହଜ ଓ ସୁଲଭ ହୋଇଗଲା । ଫଳରେ ଦଶମହାବିଦ୍ୟା, ମାତୃକା ପୂଜା ଓ କୁମାରୀ ପୂଜନ ଇତ୍ୟାଦିର ପ୍ରଭାବ ବିସ୍ତାର କଲା । ମା'

ସୁଭଦ୍ରାଙ୍କର ଭୁବନେଶ୍ୱରୀ ଯନ୍ତଟି ହେଉଛି ଏକ ତାନ୍ତ୍ରିକ ଯନ୍ତ୍ର ଓ ଭୁବନେଶ୍ୱରୀ ନିଜେ ମଧ୍ୟ ତାନ୍ତ୍ରିକ ଦେବୀ । ସୁଭଦ୍ରାଙ୍କୁ ଏଠି ଭୁବନେଶ୍ୱରୀ ରୂପେ ଗ୍ରହଣ କରିବା ମୂଳରେ ହିଁ ସେହି ତନ୍ତ୍ରର ପ୍ରଭାବ ନିହିତ । ତେଣୁ ଏସବୁ ବିଚାର ଦୃଷ୍ଟିରୁ ଶ୍ରୀକ୍ଷେତ୍ର ଯେ ଏକ ତନ୍ତ୍ରପୀଠ ବୋଲି ସହଜରେ ଅନୁମେୟ ।

ଅତଏବ ପଞ୍ଚମାକାର ଉପାସନା ଓ ତାନ୍ତ୍ରିକ ପରମ୍ପରା ବ୍ରାହ୍ମଣୀୟ ଧର୍ମରେ ଅଙ୍ଗୀଭୂତ ହେବା ପରେ ପରେ ଏହା ଜଗନ୍ନାଥ ଉପାସନାରେ ମଧ୍ୟ କାୟାବିସ୍ତାର କଲା । କେତେକ ଗବେଷକଙ୍କ ମତରେ ଜଗନ୍ନାଥ ତନ୍ତ୍ରର ଦେବତା ହୋଇଥିବାରୁ ପଞ୍ଚମାକାର ପୂଜାରେ ଦେବଦାସୀମାନେ ମୈଥୁନର ପ୍ରତିନିଧିତ୍ୱ କରନ୍ତି । ପଶ୍ଚିମ ଦ୍ୱାରକୁ ତନ୍ତ୍ର ଦ୍ୱାର କୁହାଯାଏ । ସେହି ଦ୍ୱାର ଦେଇ ମାହାରିମାନେ ଶ୍ରୀମନ୍ଦିରକୁ ଯିବା ଆସିବା କରନ୍ତି । ସେମାନଙ୍କ ଭିତରେ ଭିତରେ ଗାଆଣି କଳାହାଟ ଦ୍ୱାରରେ ପହଞ୍ଚିବା ପରେ ପିନ୍ଧିଥିବା ଝିନ ବସ୍ତ୍ର ଶରୀର ଉପର ଭାଗରୁ କାଢ଼ି ଦେଇ ଅର୍ଦ୍ଧଲଗ୍ନ ଅବସ୍ଥାରେ ଗୋପନ ସେବା କରିଥାନ୍ତି । ପଞ୍ଚମାକାର ପୂଜାର ମୈଥୁନ ଉପଚାର ପାଇଁ ଏହି ଦେବଦାସୀମାନେ ଶକ୍ତି ରୂପରେ ବ୍ୟବହୃତ ବୋଲି କେତେକ ମଧ୍ୟ ମତ ଦିଅନ୍ତି ।

ଏହାଛଡ଼ା ରଥଯାତ୍ରା ସମୟରେ ହେରାପଞ୍ଚମୀ ଦିନର ନୀତିଗୁଡ଼ିକ ଶ୍ରୀମନ୍ଦିରରେ ତନ୍ତ୍ରର ଏକ ପ୍ରତ୍ୟକ୍ଷ ଉଦାହରଣ । ତନ୍ତ୍ରରେ ସମ୍ମୋହନ, ବଶୀକରଣ, ଉଚ୍ଚାଟନ, ତାରଣ, ମାରଣ ବିଦ୍ୟା ମଧ୍ୟରୁ ଉଚ୍ଚାଟନ ଓ ବଶୀକରଣ ବିଦ୍ୟା ଅନ୍ୟତମ । ଜଗଜ୍ଜନନୀ ମା' ଲକ୍ଷ୍ମୀ ଦୀର୍ଘ ଦିନ ବିଚ୍ଛେଦର ପ୍ରତିକାର ପାଇଁ ପରମ ଭୈରବୀ କ୍ଷେତ୍ରର ମାଲିକାଣୀ ମା' ବିମଳାଙ୍କୁ ନିଜର ଦୁଃଖ ଜଣାଇ ପଚାରନ୍ତେ ମା' ବିମଳା ଉପଦେଶ ଦିଅନ୍ତି –

'ଯଦା ଧବୋ ବାପି ବିବେକଶୂନ୍ୟୋଃ ପ୍ର୍ୟଚ୍ଚାଟନ ତନ୍ତ୍ର ପ୍ରସିଦ୍ଧମେବ ଚୂର୍ଣ୍ଣ ଗୃହୀତ୍ୱା ଧବୋ[ଽ]ପି ଯତ୍ର ତତ୍ ପାର୍ଶ୍ୱକଂ ଗଛ ସୁରେଶ୍ୱରୀ ତ୍ୱମ୍ ।'

ତେଣୁ ସେଠାରେ ତନ୍ତ୍ରର ଉଚ୍ଚାଟନ ବିଦ୍ୟା ଆଦିର ସୂଚନା ମିଳେ, ଯାହା ଆଜି ପର୍ଯ୍ୟନ୍ତ ଶ୍ରୀମନ୍ଦିର ସେବା ପୂଜା ନୀତିରେ ଚଳି ଆସିଛି । ପରିଶେଷରେ କେବଳ ଏତିକି କୁହାଯାଇପାରେ ଯେ, ଶ୍ରୀଜଗନ୍ନାଥ ମନ୍ଦିରରେ ତନ୍ତ୍ରର ପ୍ରଭାବ ଦେଖାଗଲେ ମଧ୍ୟ କେଉଁ ତନ୍ତ୍ରଦ୍ୱାରା ପ୍ରଭାବିତ ତାହା ଠିକ୍ ଭାବେ ନିରୂପଣ କରିବା କଷ୍ଟକର । ତେଣୁ ଶ୍ରୀମନ୍ଦିରରେ ଯେଉଁ ତାନ୍ତ୍ରିକ ମୁଦ୍ରା ବା ଯନ୍ତ୍ର ରହିଛି ତାହା କେଉଁ ସମୟର, କିପରି ଭାବରେ ଓ କାହାଦ୍ୱାରା ପ୍ରଭାବିତ ହୋଇଆସିଛି ତାହା ଗବେଷଣାସାପେକ୍ଷ ଓ ତାହାର ବିଶେଷ ଅନୁସନ୍ଧାନ ଅପରିହାର୍ଯ୍ୟ ।

ନିର୍ମାଲ୍ୟ
୧୧୨/୨୫୦୦, ଖଣ୍ଡଗିରି ବିହାର
ଭୁବନେଶ୍ୱର




ଓଡ଼ିଶା ଆୟୁର୍ବେଦ ସେବାସଂସ୍ଥା ପକ୍ଷରୁ ଭୁବନେଶ୍ୱରଠାରେ ଅନୁଷ୍ଠିତ ରାଜ୍ୟସ୍ତରୀୟ ଧନ୍ୱନ୍ତରୀ ଜୟନ୍ତୀରେ ସୂଚନା ଓ ଲୋକ ସଂପର୍କ ଏବଂ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ ଉଦ୍‌ବୋଧନ ଦେଉଛନ୍ତି । ଅନ୍ୟମାନଙ୍କ ମଧ୍ୟରେ ଡାକ୍ତର ଦୀନବନ୍ଧୁ ମହାରଣା, ଏଡ୍‌ସ ସେଲ୍ ନିର୍ଦ୍ଦେଶକ ଅଲେଖ ଚନ୍ଦ୍ର ପଡ଼ିଆରୀ, ପଣ୍ଡିତ ପ୍ରବୋଧ ମିଶ୍ର ଓ ପରିବେଶ ନିର୍ଦ୍ଦେଶକ ଭାଗୀରଥି ବେହେରା ଉପସ୍ଥିତ ଅଛନ୍ତି । ୧୬.୧୦.୦୯

# ଶକ୍ତି ସ୍ୱରୂପିଣୀ ମା' କାଳୀ

ରବୀନ୍ଦ୍ର କୁମାର ବେହୁରିଆ

**ଭା**ରତର ସୁ-ପ୍ରାଚୀନ ସାହିତ୍ୟ ଋଗ୍ ବେଦରେ ଯେପରି ଇନ୍ଦ୍ର, ବରୁଣ ପ୍ରଭୃତି ଦେବତାଙ୍କର ପରିଚୟ ମିଳିଥାଏ, ସେହିପରି ବୈଦିକ ଦେବୀ କାଳୀ, ଦୁର୍ଗା, ଲକ୍ଷ୍ମୀ, ସରସ୍ୱତୀ ପ୍ରଭୃତି ଦେବୀଙ୍କର ଦେଖିବାକୁ ମିଳିଥାଏ । ଏପରିକି ଜଗତର କର୍ତ୍ତା ଓ କାରଣ ସ୍ୱରୂପ ଈଶ୍ୱରଙ୍କୁ ଜଗଦମ୍ବାଭାବେ ଉପାସନା କରିବା ପ୍ରଣାଳୀ ଭାରତର ଶକ୍ତି ଉପାସନାର ପରମ୍ପରା । ଏହି ପରମ୍ପରାକୁ ବୃଦ୍ଧିମନ୍ତ କରିଛନ୍ତି ମା' କାଳୀଙ୍କର ଭକ୍ତି ଉପାସନାର ନିରଳସ ସାଧକମାନେ । ଶ୍ରୀଶ୍ରୀ ରାମକୃଷ୍ଣ ପରମହଂସ ଦେବ, ସ୍ୱାମୀ ବିବେକାନନ୍ଦ ବାସ୍ତବରେ କହିବାକୁ ଗଲେ ଋଗବେଦଠାରୁ ଆରମ୍ଭ କରି ବାଣ ଭଟ୍ଟଙ୍କର 'ଚଣ୍ଡୀ ଶତକ' ଓ ଗୁପ୍ତ ଯୁଗରେ ସଂକଳିତ 'ସପ୍ତଶତୀ ଚଣ୍ଡୀ'ରେ ଦେବ ଅପେକ୍ଷା ଦେବୀଙ୍କର ପ୍ରକାଶ ଓ ପ୍ରଭାବର ଛାୟା ଅଧିକ ଦେଖିବାକୁ ମିଳିଥାଏ ।



ମହାମାୟାଙ୍କର ତ୍ରିବିଧ ସ୍ୱରୂପ ହେଉଛି ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ । ତନ୍ମଧ୍ୟରୁ ମହାକାଳୀ ହେଉଛନ୍ତି ତମ-ପ୍ରଧାନ ରୌଦ୍ରରୂପ । ଶାସ୍ତ୍ର ପୁରାଣ ଓ ତନ୍ତ୍ରରେ ମହାକାଳୀଙ୍କୁ ସୃଷ୍ଟିର ଆଧାର ରୂପେ ଚିତ୍ରଣ କରାଯାଇଛି । ବିଜ୍ଞ, ପ୍ରାଜ୍ଞ ଓ ସିଦ୍ଧସାଧକଙ୍କ ମତରେ କାଳୀ ହିଁ ବିଶ୍ୱର ପ୍ରସୂତି ତଥା ଜୀବଜଗତର ଭକ୍ତିମୁକ୍ତି ପ୍ରଦାୟିନୀ । ମହନୀୟତା ହେଉଛି କାଳ ସହିତ କାଳୀଙ୍କ ସଂପର୍କ ସୂକ୍ଷ୍ମାତିସୂକ୍ଷ୍ମ ଏବଂ ଆତ୍ମିକ ବିଚାରବୋଧରେ ମହାକାଳ ମହାକାଳୀଙ୍କ ଶ୍ରୀଚରଣ ତଳେ ନିପତିତ । ଏହି ଦିବ୍ୟ ଦୃଷ୍ଟିରେ ପ୍ରାଚୀନ କାଳରୁ କାଳୀ ଉପାସନା ଜନମାନସକୁ ଉଦ୍‌ବୁଦ୍ଧ କରିଛି ।

ବୈଦିକ ଯୁଗରେ ମହାଶକ୍ତିଙ୍କର ସୃଷ୍ଟି, ସ୍ଥିତି, ପ୍ରଳୟ ତ୍ରିରୂପ ଚିନ୍ତନ କରାଯାଇ ପ୍ରଳୟରୂପୀଙ୍କୁ ରାତ୍ରି, କାଳରାତ୍ରି ଓ କାଳୀ ନାମରେ ଅଭିହିତ କରାଯାଇଛି । ମୁଣ୍ଡକ ଉପନିଷଦରେ କାଳୀଙ୍କ କରାଳ ମୂର୍ତ୍ତିରେ ବିବରଣ ଉପଲବ୍ଧ ହୋଇଥାଏ ।

'କାଳୀ କରାଳୀ ଚ ମନୋଜନାଚ ସୁଲୋହିତାଚ ସୁଧୂମ୍ରବର୍ଣ୍ଣା,
ସ୍ଫୁଲିଙ୍ଗିନୀ ବିଶ୍ୱରୁଚି ଚ ଦେବୀ ଲୋଲାୟମାନା ଇତି ସପ୍ତଜିହ୍ୱାଃ ।'

ମନ୍ତ୍ରଟିରେ କାଳୀ, କରାଳୀ, ମନୋଜନା, ସୁଲୋହିତା, ସୁଧୂମ୍ରବର୍ଣ୍ଣା, ସ୍ଫୁଲିଙ୍ଗିନୀ ଓ ବିଶ୍ୱରୁଚି ପ୍ରଭୃତି ସପ୍ତଦେବୀଙ୍କୁ ଅଗ୍ନିଙ୍କର ସପ୍ତଜିହ୍ୱା ସ୍ୱରୂପରେ ପ୍ରତିପାଦନ କରାଯାଇଛି । ତନ୍ମଧ୍ୟରୁ ପ୍ରଥମ ଜିହ୍ୱାକୁ କାଳୀ ଓ ଦ୍ୱିତୀୟ ଜିହ୍ୱାକୁ କରାଳୀ କୁହାଯାଇ କାଳୀଙ୍କ ପ୍ରାଧାନ୍ୟ ପ୍ରତିଷ୍ଠା କରାଯାଇଛି । ଅତଏବ ବୈଦିକ ଯୁଗରୁ କାଳୀଚେତନାର ଉନ୍ମେଷ ଘଟି ଏହି ଯୁଗର ଅନ୍ତିମ କାଳରେ କାଳୀଙ୍କ କରାଳ ମୂର୍ତ୍ତିର ଅବତାରଣା କରାଯାଇଛି ।

ମାର୍କଣ୍ଡେୟ ପୁରାଣରେ ମହାକାଳୀଙ୍କ ଉତ୍ପତ୍ତି ସମ୍ବନ୍ଧରେ ବର୍ଣ୍ଣିତ ଅଛି ଯେ ପ୍ରଳୟ କାଳରେ ସଂପୂର୍ଣ୍ଣ ସଂସାର ଜଳମଗ୍ନ ଥିବା ସମୟରେ ଯୋଗ ନିଦ୍ରାଭିଭୂତ ଭଗବାନ ବିଷ୍ଣୁଙ୍କ କର୍ଣ୍ଣମୂଳରୁ ମଧୁ ଓ କୈଟଭ ନାମକ ରାକ୍ଷସଦ୍ୱୟ ଉତ୍ପନ୍ନ ହୋଇ ବ୍ରହ୍ମାଙ୍କୁ ଆକ୍ରମଣ କରନ୍ତେ ବ୍ରହ୍ମା ଯୋଗନିଦ୍ରାଙ୍କୁ ସ୍ତୁତି କଲେ – 'ହେ ଦେବି ! ତୁମେ ଜଗତର ଉତ୍ପତ୍ତି, ସ୍ଥିତି ଓ ସଂହାରକାରିଣୀ ରୂପେ ବିଦ୍ୟମାନ । ତୁମେ ମହାବିଦ୍ୟା, ମହାମାୟା, ମହାମେଘ ଓ ମହାମୋହ ସ୍ୱରୂପିଣୀ । ତୁମେ ଅସୁରଙ୍କୁ ମୋହିତ କରି ସେମାନଙ୍କୁ ମାରିବା ପାଇଁ ଭଗବାନଙ୍କୁ ଜାଗ୍ରତ କର ।' ପ୍ରଜାପତି ବ୍ରହ୍ମାଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ମହାମାୟା ଭଗବାନଙ୍କର ନେତ୍ର, ମୁଖ, ନାସିକା, ବାହୁ ଓ ହୃଦୟରୁ ବାହାରି ଆବିର୍ଭୂତା ହେଲେ । ସେ ଖଡ୍‌ଗ, ଚକ୍ର, ଗଦା, ତୀର, ଧନୁ, ପରିଘ, ଶଙ୍ଖ, ତ୍ରିଶୂଳ, ଭୁଶୁଣ୍ଡୀ ଓ ନରମୁଣ୍ଡ ଧାରଣ କରିଥିଲେ । ସେ ତ୍ରିନୟନା, ସର୍ବାଳଙ୍କାର ଭୂଷିତା, ନୀଳକାନ୍ତମଣି ସମ ପ୍ରଭାଯୁକ୍ତ, ଦଶପାଦ ଓ ଦଶମୁଖ ଯୁକ୍ତ ଥିଲେ । ପ୍ରଜାପତି ବ୍ରହ୍ମା ଏହି ସ୍ୱରୂପକୁ

ଧ୍ୟାନ ଓ ସ୍ତୁତି କରିବାରୁ ତୁଷ୍ଟ ହୋଇଥିଲେ । ଯୋଗନିଦ୍ରା ବିଷ୍ଣୁଙ୍କୁ ତ୍ୟାଗ କରିବାରୁ ତାଙ୍କର ନିଦ୍ରାଭଙ୍ଗ ହେଲା । ସେ ମଧୁ କୈଟଭଙ୍କୁ ବଧ କରିବା ପାଇଁ ତାଙ୍କ ସହ ଯୁଦ୍ଧରେ ପ୍ରବୃତ୍ତ ହେଲେ । ପାଞ୍ଚ ହଜାର ବର୍ଷ ବିତି ଗଲା । ଅସୁରଦ୍ୱୟ ମରିବାର କୌଣସି ଉପାୟ ନ ପାଇ ବିଷ୍ଣୁ ଯୋଗମାୟାଙ୍କୁ ପ୍ରାର୍ଥନା କଲେ । ସେ ମଧୁ କୈଟଭର ବୁଦ୍ଧିକୁ ମୋହିତ କରି ଦେଲେ । ତେଣୁ ଦୁଇଜଣ ଅଭିମାନ ପୂର୍ବକ ଭଗବାନ ବିଷ୍ଣୁଙ୍କୁ କହିଲେ – 'ଆମ୍ଭେ ତୁମ ଯୁଦ୍ଧରେ ସନ୍ତୁଷ୍ଟ ହୋଇଛୁଁ । ତୁମେ ଆମକୁ ବର ମାଗ ।' ଭଗବାନ ବିଷ୍ଣୁ କହିଲେ – 'ଯଦି ଆପଣ ବର ଦେବାକୁ ଇଚ୍ଛା କରିଛନ୍ତି, ତେବେ ଆପଣ ଦୁଇଜଣ ମୋ' ହସ୍ତରେ ମୃତ୍ୟୁ ବରଣ କରିବାକୁ ବର ଦିଅନ୍ତୁ ।' ମଧୁ କୈଟଭ ତଥାସ୍ତୁ କହିବାରୁ ଭଗବାନ ବିଷ୍ଣୁ ସେମାନଙ୍କୁ ନିଜ ଜଙ୍ଘ ଉପରେ ରଖି ବଧ କରିଥିଲେ । କାଳୀ ଉପାସନାର ଉତ୍ତରଣରେ ଏହି ଉପାଖ୍ୟାନ ଶ୍ରୀଦୁର୍ଗା ସପ୍ତଶତୀ ପ୍ରଥମ ଚରିତ ରୂପେ ପ୍ରସିଦ୍ଧି ଲାଭ କଲା । ବୈଦିକ ମୁନିଋଷିବୃନ୍ଦ ଧ୍ୟାନଯୋଗ ମାଧ୍ୟମରେ ମହାମାୟା ମହାକାଳୀଙ୍କର ଯେଉଁ ରୂପ ପ୍ରତ୍ୟକ୍ଷ କରିଥିଲେ ତାହା ହିଁ ପୁରାଣ ଯୁଗରେ ସାର୍ବଜନନୀ ସାକାର ଉପାସନାର ସ୍ୱରୂପ ଗ୍ରହଣ କଲା । ସେହି ରୂପର ରହସ୍ୟ ହିଁ ମାର୍କଣ୍ଡେୟ ପୁରାଣୋକ୍ତ ଦୁର୍ଗା ସପ୍ତଶତୀରେ ଅଭିବ୍ୟକ୍ତ ।

କାଳୀଙ୍କ ପ୍ରାଚୀନତା ସଂପର୍କରେ ଐତିହାସିକ ପାନିକର କହନ୍ତି – 'In fact Siva and Kali and the worship of Lingam and other features of popular Hinduism were well established in India long before the Aryan came.' ସାରଳା ଦାସ ତାଙ୍କ ରଚିତ 'ଚଣ୍ଡୀ ପୁରାଣ'ରେ ଲେଖିଛନ୍ତି –

'ଯେତେ ରୁଧିର ଟୋପା ପଡ଼ିଲାକ ପୃଥ୍ୱୀ
ଟୋପାକରୁ ତଥା ଏକ ଦୈତ୍ୟ ଉପୁଜି ।'

'ଚଣ୍ଡୀ ପୁରାଣ'ରେ ବର୍ଣ୍ଣିତ ଅଛି ଯେ ମହିଷାସୁର ସେନାପତି ରକ୍ତବୀର୍ଯ୍ୟ ସହିତ ଯୁଦ୍ଧବେଳେ ଯୁଦ୍ଧକ୍ଷେତ୍ରରେ ଭୂମିରେ ରକ୍ତପାତ ମାତ୍ରକେ ସହସ୍ରାଧିକ ଅସୁର ସୈନ୍ୟଙ୍କ ଜନ୍ମ ଫଳରେ, ଦୁର୍ଗା କ୍ରୋଧାନ୍ୱିତ ହୋଇ କପାଳରୁ ଅନ୍ୟ ଏକ ଦେବୀ ଜାତ କଲେ ଯେ ରକ୍ତପାତ୍ର ଧରି ରକ୍ତବୀର୍ଯ୍ୟର ପତିତ ରକ୍ତ ଶୋଷଣ କରିବାକୁ ଲାଗିଲେ । ଦେବୀଙ୍କର ଏପରି ଉଗ୍ର ରୂପକୁ ଚାମୁଣ୍ଡା ବୋଲି କୁହାଯାଏ । ସପ୍ତଶତୀ ଚଣ୍ଡୀରେ ଦେବୀଙ୍କ ସ୍ତୋତ୍ରରେ ଉଲ୍ଲେଖ ଅଛି –

'ଦ୍ରଷ୍ଟାଂ କରାଳ ବଦନେ ଶିରୋମାଳା ବିଭୂଷଣେ,
ଚାମୁଣ୍ଡେ ମୁଣ୍ଡ ମଥନେ ନାରାୟଣୀ ନମସ୍ତୁତେ ।'

ଶିରୋମାଳା ବିଭୂଷିତା ଭୟଙ୍କର ଦେବୀ ଚଣ୍ଡ ଓ ମୁଣ୍ଡକୁ ନିପାତ କରିଥିଲେ । ଶାରଦାତିଳକ ତନ୍ତ୍ରରେ ଉଲ୍ଲେଖ ଅଛି –

'ଶୂଳଂ କୃପାଣଂ ନୃଶିରଃ କପାଳଃ ଦଧତୀ କରୈଃ
ମୁଣ୍ଡସ୍ରଙ୍ ମଣ୍ଡିତା ଧେୟା ଚାମୁଣ୍ଡା ରକ୍ତବିଗ୍ରହା ।'

ଅର୍ଥାତ୍ ରକ୍ତବର୍ଣ୍ଣା ଚାମୁଣ୍ଡା ମୁଣ୍ଡମାଳା ବିଭୂଷିତା, ହସ୍ତରେ ଖଡ଼୍ଗ, ପର୍ଶୁ, ଛିନ୍ନମସ୍ତକ ଏବଂ ଖର୍ପର ଧାରଣ କରିଥାନ୍ତି । ଆହୁରି ମଧ୍ୟ ବର୍ଣ୍ଣିତ ଅଛି –

'ଚତୁର୍ଭୁଜା ତ୍ରିନେତା ଚ ରକ୍ତବର୍ଣ୍ଣୋର୍ଦ୍ଧ୍ୱ କେଶିକା,
କପାଳ ଶୂଳହସ୍ତାଚ ବରଦା ଭୟ ପାଣିନୀ ।'

ଚାମୁଣ୍ଡା ମୂର୍ତ୍ତି ଭୈରବୀ ନାମରେ ବିଭିନ୍ନ ସ୍ଥାନରେ ପୂଜା ପାଉଛନ୍ତି । ଚଣ୍ଡୀ ପୁରାଣରେ ବର୍ଣ୍ଣିତ ଅଛି ଯେ ଦୁର୍ଗା ରକ୍ତବୀର୍ଯ୍ୟ, କାନ୍ତିମାଳା, ବିଡ଼ାଳାକ୍ଷ, ବୀରଦଣ୍ଡ ଓ କାଳଦଣ୍ଡ ପ୍ରଭୃତିଙ୍କ ସହ ଯୁଦ୍ଧ କଲାବେଳେ କ୍ରୋଧାନ୍ୱିତ ହୋଇଥିଲେ । ବର୍ଣ୍ଣିତ ଅଛି –

'ନୟନ କଟାକ୍ଷୀ ପୁଣି ଚାହିଁଲେକ ଦେବୀ
ତକ୍ଷଣେ ନୟନୁ ଜାତ ହୋଇଲେ ଭୈରବୀ ।'

'ମାର୍କଣ୍ଡେୟ ପୁରାଣ' ଅନୁସାରେ ରକ୍ତବୀର୍ଯ୍ୟ ବଧ କରିବା ପାଇଁ ଚଣ୍ଡୀଙ୍କଠାରୁ ସାହାଯ୍ୟକାରିଣୀ ମା' କାଳୀଙ୍କର ସୃଷ୍ଟି । 'କାଳିକା ପୁରାଣ' ଓ 'ଯୋଗିନୀ ତନ୍ତ୍ର'ରେ ବର୍ଣ୍ଣିତ କାଳୀ ଓ କାମାକ୍ଷା ଏକ ଓ ଅଭିନ୍ନ ଏକ ହିନ୍ଦୁ ଦେବୀ ରୂପେ ସ୍ୱୀକାର କରାଯାଇଛି ।

ପୁରାଣରୁ ଜଣାପଡ଼େ ଯେ ମହିଷାସୁର ଓ ଅନ୍ୟାନ୍ୟ ଅସୁରମାନଙ୍କ ସହିତ ଯୁଦ୍ଧ କରି ଦେବୀ ବଡ଼ ମ୍ରିୟମାଣ ହୋଇ ପଡ଼ିଥିଲେ । ସର୍ବଶେଷରେ ଅସୁର ରକ୍ତରେ ବସୁନ୍ଧରାକୁ ପ୍ଲାବିତ କରି ଦେବୀଙ୍କ ମନରେ କ୍ରୋଧ ଜାତ ହୋଇ ବିଶ୍ୱ ସୃଷ୍ଟିର ଧ୍ୱଂସାର୍ଥେ ଉଗ୍ର ରୂପ ଧରି ଅଗ୍ରସର ହୁଅନ୍ତେ ଦେବତାମାନଙ୍କ ମଧ୍ୟରେ ଭାଳେଣି ପଡ଼ିଲା । ସେମାନେ ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଶିବଙ୍କ ବ୍ୟତୀତ ଅନ୍ୟ କେହି ଦେବୀଙ୍କୁ ଶାନ୍ତ କରିପାରିବେ ନାହିଁ । ଦେବତାମାନଙ୍କ ଅନୁରୋଧରେ ଶିବ ଅଗ୍ରସର ହୋଇ ଅଜଣାତରେ ଶୋଇ ରହିଲେ । ଅକସ୍ମାତ ଦେବୀଙ୍କର ପାଦ ଶିବଙ୍କ ବକ୍ଷ ଦେଶରେ ପଡ଼ନ୍ତେ । ନିଜର ଭୁଲ୍ ପାଇଁ ଅର୍ଦ୍ଧ ଜିହ୍ୱା ପ୍ରସାରଣ କରି ତଟସ୍ଥ ହୋଇ ରହିଲେ ଦେବୀ । ଆଉ ମଧ୍ୟ ସ୍ଥାନେ ସ୍ଥାନେ ଶିଳ୍ପୀବୃନ୍ଦ ଦେବୀଙ୍କର ଭୟଙ୍କର କଙ୍କାଳମୟ ଶରୀର, ଶିରମାଳା ବିଭୂଷଣ, ରକ୍ତପାତ ଧାରଣ, ଶ୍ମଶାନର ଦୃଶ୍ୟ ପ୍ରଭୃତି ଚମତ୍କାର ଭାବରେ ପ୍ରଦର୍ଶିତ କରିପାରିଛନ୍ତି । ଦେବୀଙ୍କର ଏପରି ରୂପକୁ ଚାମୁଣ୍ଡା ଆଖ୍ୟା ଦିଆଯାଇଛି । ଶିବ କାଳ ଓ ତାଙ୍କର ଶକ୍ତି ହିଁ କାଳୀ ।

ଚିନ୍ମୟୀ ସ୍ୱରୂପା କାଳୀଙ୍କ ବିନା ଶିବ ଶବରେ ପରିଣତ ହୋଇଥାନ୍ତି । ତେଣୁ ଗୀତାରେ କୁହାଯାଇଛି – 'କାଳୋସ୍ମି ଲୋକକ୍ଷୟ କୃତ' – ଏହି କାଳର ଶକ୍ତି ହିଁ କାଳୀ । ମହାଭାରତରେ ମଧ୍ୟ କୁହାଯାଇଛି – 'ଭୂତାନୀ କାଳଃ ପଚତୀତିବାର୍ତ୍ତା ।'

ତନ୍ତ୍ରଶାସ୍ତ୍ରରେ କାଳୀଙ୍କୁ 'ଆଦ୍ୟାଶକ୍ତି ମହାମାୟା' ଉଲ୍ଲେଖ କରାଯାଇ ତାଙ୍କର ଆଠ ପ୍ରକାର ମୂର୍ତ୍ତିର ଉପାସନା ନିର୍ଦ୍ଧାରଣ କରାଯାଇଅଛି । ତନ୍ମଧ୍ୟରେ ଦକ୍ଷିଣା, ଭଦ୍ର ଓ ଶ୍ମଶାନ କାଳୀ ପ୍ରଭୃତି ବିଶେଷ ପ୍ରସିଦ୍ଧି ଲାଭ କରିଅଛି । ତନ୍ତ୍ର ସାଧନାରେ ସାଧକ ଅରୂପକୁ ରୂପବନ୍ତ କରିପାରେ । ଏହି ଦିବ୍ୟ ଦୃଷ୍ଟିରେ କାଳୀତନ୍ତ୍ର, ସ୍ୱତନ୍ତ୍ର ତନ୍ତ୍ର ଓ କାଳୀକା ପୁରାଣ ପ୍ରଭୃତି ତନ୍ତ୍ରଶାସ୍ତ୍ର ବର୍ଣ୍ଣିତ ମୂର୍ତ୍ତି ତତ୍ତ୍ୱକୁ ତତ୍କାଳୀନ କାଳୀତନ୍ତ୍ର ସାଧନାର ମହତ ପରିଚୟ ଉପଲବ୍ଧି ହୋଇଥାଏ । କାଳୀତନ୍ତ୍ର ସାଧନା ନିମିତ୍ତ ବିଭିନ୍ନ ପ୍ରାନ୍ତରରେ ଅନେକ ପୀଠ ସୃଷ୍ଟି ହୋଇପାରିଛି । କେହି କେହି ସାଧକ ଶ୍ମଶାନ ସନ୍ନିକଟରେ କାଳୀପୀଠ ସ୍ଥାପନ ପୂର୍ବକ ଆଧାତ୍ମିକ ଜ୍ଞାନ ସମ୍ବଳିତ ପଞ୍ଚମାକାର ସାଧନାରେ ସିଦ୍ଧିଲାଭ କରିଅଛନ୍ତି । ଫଳରେ କାଳୀତନ୍ତ୍ର ସାଧନା ଲୋକଖ୍ୟାତି ଅର୍ଜନପୂର୍ବକ ସିଦ୍ଧ ସାଧନା ପଦ୍ଧତି ରୂପେ ସାର୍ବଜନୀନ ସ୍ୱୀକୃତି ଲାଭ କରିଛି ।

ଗୌରବର କଥା । ଶାକ୍ତ ଓ ବୈଷ୍ଣବ ସଂସ୍କୃତିର ମହାମିଳନରେ ଶ୍ରୀଜଗନ୍ନାଥ ସ୍ୱୟଂ ଦକ୍ଷିଣ କାଳିକା ନାମରେ ଅଭିହିତ ହେଲେ ।

'ତାରାଯନ୍ତ୍ରେ ପ୍ରଳମ୍ବୟୋ ସୁଭଦ୍ରା ଭୁବନେଶ୍ୱରୀ
ଶ୍ୟାମାଯନ୍ତ୍ରେ ଜଗନ୍ନାଥଃ ସାକ୍ଷାତ ଦକ୍ଷିଣ କାଳିକା ।'

ପ୍ରମାଣିତ ହେଉଛି, କାଳୀ ଉପାସନାର ଉତ୍ତରଣରେ ଓଡ଼ିଶାରେ କାଳୀ, ଚାମୁଣ୍ଡା, ଭଦ୍ରକାଳୀ, ଦକ୍ଷିଣକାଳୀ ପ୍ରଭୃତି ଉପାସନାର ବ୍ୟାପକ ପ୍ରସାର ଘଟି ରାଷ୍ଟ୍ର ଦେବତା ଜଗନ୍ନାଥ ମଧ୍ୟ ଦକ୍ଷିଣକାଳିକା ରୂପେ ପୂଜିତ ହେଲେ । ଗୁପ୍ତ ଓ ପ୍ରାଚୀନ ଯୁଗ ପରେ ମଧ୍ୟ ଯୁଗରେ ସମଗ୍ର ଭାରତରେ ନୂତନ କାଳୀପୀଠମାନ ପ୍ରତିଷ୍ଠିତ ହେଲା । ଦିଲ୍ଲୀର କାଳୀ ମନ୍ଦିର, ମସୌରୀର ଚାମୁଣ୍ଡା-ମନ୍ଦିର, କଲିକତାର କାଳୀ ମନ୍ଦିର ପ୍ରଭୃତି ଏହି ସମୟର କୀର୍ତ୍ତି । ଏହି ଯୁଗରେ ଭକ୍ତ ଚଣ୍ଡୀ ଦାସ, ସାଧକ କମଳାକାନ୍ତ, ସାଧକ ରାମ ପ୍ରସାଦ, ସାଧକ ରାମକୃଷ୍ଣ ପରମହଂସ କାଳୀ ଉପାସନାକୁ ଭବ୍ୟରୂପ ପ୍ରଦାନ କରିଥିଲେ । ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀରୁ ସାର୍ବଜନୀନ ମୃଣ୍ମୟୀ କାଳିପୂଜା ଅନୁଷ୍ଠିତ ହୋଇ ଜଗଜ୍ଜନନୀ ମହାକାଳୀ ଜାତି, ଧର୍ମ, ବର୍ଣ୍ଣ, ସଂପ୍ରଦାୟ ନିର୍ବିଶେଷରେ ସର୍ବଜନାରାଧ୍ୟ ହୋଇଗଲେ । ଓଡ଼ିଶାର ପ୍ରସିଦ୍ଧି ଦେବୀପୀଠ କାକଟପୁର-ମଙ୍ଗଳା, ବାଙ୍କି-ଚର୍ଚ୍ଚିକା, ଝଙ୍କଡ଼-ସାରଳା, କୋଣାର୍କ-ରାମଚଣ୍ଡୀ, ସମଲେଶ୍ୱରୀ-ସମ୍ବଲପୁର, ବିରଜା-ଯାଜପୁର, ଭଦ୍ରକରେ ଭଦ୍ରକାଳୀ ଓଡ଼ିଆ ଜୀବନ ଭାଷା ସାହିତ୍ୟ ସଂସ୍କୃତିରେ ଜାଜ୍ୱଲ୍ୟମାନ ହୋଇ ରହିଛି । ପ୍ରବାଦ ଅଛି, ସ୍ୱୟଂ ମହାରାଜା ବିକ୍ରମାଦିତ୍ୟ ଓ ତଦୀୟ ଭ୍ରାତା ଭଦ୍ରକାଳୀଙ୍କ ସାଧକ ଥିଲେ । ତତ୍କାଳୀନ ଭାରତର ଅନେକ ରାଜା, ମହାରାଜା ଓ ସାମନ୍ତଙ୍କର ଇଷ୍ଟଦେବୀ ଥିଲେ ମହାକାଳୀ ।

'ଓଁ ଜୟନ୍ତୀ ମଙ୍ଗଳକାଳୀ ଭଦ୍ରକାଳୀ କପାଳିନୀ
ଦୁର୍ଗା କ୍ଷମା ଶିବା ଧାତ୍ରୀ ସ୍ୱାହା ସୁଧା ନମସ୍ତୁତେ ।'

ଭଦ୍ରକାଳୀ ପୀଠ ଓଡ଼ିଶାର ଏକ ପ୍ରସିଦ୍ଧ ଶାକ୍ତ ତାନ୍ତ୍ରିକ ପୀଠ ରୂପେ ସ୍ୱୀକୃତ । ତାଙ୍କ ନିକଟରେ ଖ୍ରୀଷ୍ଟୀୟ ତୃତୀୟ-ଚତୁର୍ଥରେ ଖୋଦିତ ଏକ ଶିଳାଲେଖ ଦେଖିବାକୁ ମିଳେ ।

'ଭଦ୍ରକରୁ ପ୍ରାପ୍ତ ଭଦ୍ରକାଳୀ ପ୍ରସ୍ତର ଅଭିଲେଖ ଗୁପ୍ତକାଳୀନ ଅକ୍ଷର ସମ୍ବଳିତ ଅଟେ । ଅଭିଲେଖ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ 'ମହାରାଜ ଶ୍ରୀଗଣ'ଙ୍କ ରାଜତ୍ୱରେ ଉତ୍କୀର୍ଣ୍ଣ । ଏଥିରୁ ରାଜାଙ୍କ ନାମ ତଥା ଅନ୍ୟ ଉପାଦାନ କିଛି ମିଳେ ।' (ମହତାବ, ହରେକୃଷ୍ଣ – ଓଡ଼ିଶା ଇତିହାସ) ଭଦ୍ରକାଳୀ କଳା ମୁଗୁନି ପଥରରେ ନିର୍ମିତ । ଠାକୁରାଣୀ ଚତୁର୍ଭୁଜା ଏବଂ ଲଳିତାସନରେ ସିଂହ ପୃଷ୍ଠାରେ ବିରାଜିତା । ତାଙ୍କର ଉର୍ଦ୍ଧ୍ୱଭାଗ ଦକ୍ଷିଣ ହସ୍ତରେ ଖଡ୍‌ଗ, ବାମ ହସ୍ତରେ ଖର୍ପର ଏବଂ ନିମ୍ନଭାଗ ଦକ୍ଷିଣ ହସ୍ତରେ ଜପାମାଳା ଧାରଣ କରିଥିବାର ଭଙ୍ଗୀ ସୂଚିତ ହୁଏ । ଦେବୀଙ୍କ ଦୁଇପାର୍ଶ୍ୱରେ ଦୁଇଟି ନାରୀମୂର୍ତ୍ତି ଶୋଭା ପାଉଛନ୍ତି । ଭଦ୍ରକାଳୀ ମୂର୍ତ୍ତି ଗଠନ ପ୍ରଣାଳୀ ଶିଳ୍ପଶାସ୍ତ୍ରରେ ବର୍ଣ୍ଣିତ ଧ୍ୟାନଠାରୁ ଭିନ୍ନ ଅଟେ । ସେ ସିଂହବାହିନୀ ହୋଇଥିବାରୁ ତାଙ୍କଠାରେ ଦୁର୍ଗାଙ୍କ ସାଦୃଶ୍ୟ ପରିଲକ୍ଷିତ ହୁଏ । ଶିଶୁ କୋଳାଗ୍ରତ କରିଥିବାରୁ ତାହା ସନ୍ତାନବତ୍ସଳା ଜନନୀର ଭୂମିକାକୁ ବୁଝାଏ । ଭଦ୍ରକାଳୀ ହେଉଛନ୍ତି ପ୍ରସନ୍ନା, ଶାନ୍ତି ସ୍ୱରୂପିଣୀ, ରୌଦ୍ରୀ, ପ୍ରଚଣ୍ଡା, ଉଗ୍ରରୂପା ନୁହଁନ୍ତି । 'କାଳିକା ପୁରାଣ'ର ଅଧିଷ୍ଠାତ୍ରୀ ଦେବୀ ମହିଷମର୍ଦ୍ଦିନୀ ଦୁର୍ଗା ବା ଭଦ୍ରକାଳୀଙ୍କ ଆକୃତି ସହ ଭଦ୍ରକ ଭଦ୍ରକାଳୀଙ୍କ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଦୁର୍ଗାଙ୍କ ଚଉଷଠି ଯୋଗିନୀ ରୂପ ମଧ୍ୟରୁ ଭଦ୍ରକାଳୀ ଗୋଟିଏ । ଭଦ୍ରକର ଭଦ୍ରକାଳୀ ଶକ୍ତିଦେବୀଙ୍କ ମୂର୍ତ୍ତିମନ୍ତ ବିଗ୍ରହ ଏବଂ ତାଙ୍କ ପୀଠ ଓଡ଼ିଶାର ଦଶଟି ଶକ୍ତିପୀଠ ମଧ୍ୟରେ ଗଣ୍ୟ ।' (ମହାନ୍ତି, ଶାନ୍ତନୁ କୁମାର – ଭଦ୍ରକ ଇତିହାସ ଓ ସଂସ୍କୃତିର ମୁଖ୍ୟଧାରା, ପୃ.୩୪-୩୫)

ପ୍ରାଚୀନ ୟୁରୋପରେ ଅନାବୃତ୍ତ ଭୀତିପ୍ରଦ ସ୍ତନଯୁକ୍ତ ନାରୀ ମୂର୍ତ୍ତିପୂଜା ପାଉଥିବା ସନ୍ଧାନ ମିଳିଛି । ଦଶ ହଜାର ବର୍ଷ ପୂର୍ବେ

ତୁରସ୍କରେ ମୂର୍ତ୍ତିକାର ସ୍ତନ ପୂଜା ପାଉଥିବାର ପ୍ରମାଣ ମିଳେ । ଦେବୀ ଆଇସିସ୍ ଓ ନୀଳନଦୀର ଦେବତା ହାପିଓ ହେଉଛନ୍ତି ସ୍ତନବତୀ ନାରୀମୂର୍ତ୍ତି । ବାଇବେଲରେ ଦୁଇଟି ମେରି ଅଛନ୍ତି । ଗୋଟିଏ ମେରି ମାତା ବା କୁମାରୀ ମେରି ଈଶ୍ୱରଙ୍କ ପୁତ୍ରଙ୍କ ଜନନୀ । ଭକ୍ତିବାଦର ପ୍ରସାର, ଶାକ୍ତ ଓ ବୈଷ୍ଣବ ଧର୍ମର ମିଳିତ ପ୍ରଭାବରେ ଦେବଦେବୀ ପୂଜା ଲୋକପ୍ରିୟ ଓ ବର୍ଣ୍ଣାଢ଼୍ୟ । ଶବରପାଦ ଚର୍ଯ୍ୟାପାଦରେ ମୟୂର ପୁଚ୍ଛଧାରିଣୀ ନୈରାମ୍ ଦେବୀଙ୍କ କଥା କହିଛନ୍ତି । ଆଦିମ ଅଧିବାସୀ ପ୍ରଥମେ ଦେବୀପୂଜା କରୁଥିଲେ । ସେମାନଙ୍କଠାରୁ ଆର୍ଯ୍ୟମାନେ ଦୁର୍ଗାଙ୍କ ପୂଜା ଗ୍ରହଣ କରିଥିବା ମନେହୁଏ । 'ଉଁଚା ଉଁଚା ପାର୍ବତୀ ତହିଁ ବସଇ ଶବରୀ କାଳୀ' –

ସେହି ଭଦ୍ରକାଳୀଙ୍କଠୁଁ ଆରମ୍ଭ ଭଦ୍ରକର କାଳୀପୂଜା । ଭଦ୍ରକର ବହୁ ସ୍ଥାନରେ କାଳୀପୂଜା କରାଯାଇଥାଏ । ଚରମ୍ପା, ଚାନ୍ଦବାଲି, ଧୁଷୁରୀ, ବ୍ରାହ୍ମଣପାଳ, ତିହିଡ଼ି, ଅନ୍ନପାଳ, ଭଣ୍ଡାରିପଡ଼ା, ବନ୍ତ ଆଦି ବହୁସ୍ଥାନରେ କାଳିପୂଜା କାର୍ତ୍ତିକ ଅମାବାସ୍ୟା ତିଥିରେ ପାଳିତ ହୋଇଥାଏ । ଅଧିକାଂଶ ସ୍ଥାନରେ କାଳୀଙ୍କର ମୃଣ୍ମୟୀ ମୂର୍ତ୍ତି ସ୍ଥାପନ କରାଯାଇ ବିସର୍ଜନ କରାଯାଇଥାଏ । ଖଙ୍ଗରା (ରାମେଶ୍ୱରପୁର)ଠାରେ ରକ୍ଷାକାଳୀ ମନ୍ଦିର ଅଛି । ତାଙ୍କ ପୂଜା ଚୈତ୍ରମାସରେ ହୁଏ । ଏତଦ୍‌ବ୍ୟତୀତ ଅସୁରାଳିରେ ରଟନ୍ତି କାଳୀ ଓ ଭଦ୍ରକ–ଚାନ୍ଦବାଲି ରାସ୍ତା ପାର୍ଶ୍ୱରେ କୁଣ୍ଡିକାଳୀ ମଧ୍ୟ ପୂଜା ପାଆନ୍ତି । ଭଦ୍ରକର ମଠସାହିଠାରେ ଦକ୍ଷିଣକାଳୀଙ୍କ ସୁଉଚ୍ଚ ମନ୍ଦିର ନିର୍ମିତ ହୋଇଛି । ଭଣ୍ଡାରିପଡ଼ା, ବ୍ରାହ୍ମଣପାଳ, ଚାନ୍ଦବାଲି, ଚରମ୍ପାର କାଳୀପୀଠ ଖୁବ୍ ପୁରୁଣା ।

ମହାଶକ୍ତି ମା' କାଳୀଙ୍କ ସମ୍ବନ୍ଧରେ ଶ୍ରୀ ଅରବିନ୍ଦ 'ମା' ବହିରେ ଲେଖିଛନ୍ତି – 'ମହାକାଳୀଙ୍କ ପ୍ରକୃତି ଅନ୍ୟ ପ୍ରକାର । ବିସ୍ତୃତି ନୁହେଁ, ଉଚ୍ଚତା–ଜ୍ଞାନ ନୁହେଁ, ବଳ ଓ ବୀର୍ଯ୍ୟ ତାଙ୍କର ନିଜସ୍ୱ ବିଶେଷତ୍ୱ । ତାଙ୍କ ଭିତରେ ଅଛି ଗୋଟାଏ ଦୁର୍ବାର ତ୍ରୀବତା, ପୂର୍ଣ୍ଣ ସିଦ୍ଧି ଆଡ଼କୁ ଶକ୍ତିର ବିପୁଳ ଆବେଗ, ସକଳ ସୀମା ସକଳ ବାଧାପୂର୍ଣ୍ଣ କରି ଦୌଡ଼ି ଚାଲିପାରେ ଏପରି ଏକ ଦିବ୍ୟ ପ୍ରଚଣ୍ଡତା ତାଙ୍କର ସମଗ୍ର ଭଗବତୀ ପ୍ରକୃତି ଝଞ୍ଜାପରି ରୁଦ୍ର କର୍ମ ଭାବରେ ପ୍ରସ୍ଫୁରିତ, ସେ ଅଛନ୍ତି କ୍ଷିପ୍ରତା ସକାଶେ, ଆଶୁ ଫଳଦାୟୀ ପ୍ରକ୍ରିୟା ସକାଶେ, ସମ୍ମୁଖ ଆକ୍ରମଣ ସକାଶେ ଯାହାକି ସାକ୍ଷାତ୍ ଏବଂ ସଘନ ଆଘାତରେ ସବୁକିଛିକୁ ପରାଭୂତ କରେ । କ୍ଷିପ୍ର, ସରଳ, ଅକପଟ ଯେଉଁ ସକଳ ପ୍ରେରଣା, ଅକୁଣ୍ଠ, ଅବ୍ୟଭିଚାରୀ ଯେଉଁସବୁ ଗତିଧାରା ଅଗ୍ନିଶିଖାପରି ଊର୍ଦ୍ଧ୍ୱଗାମୀ ଯେଉଁ ଅଭୀପ୍ସା, ଏହିସବୁ ହେଲା ମହାକାଳୀଙ୍କ ପଦକ୍ଷେପ । ଅଦମ୍ୟ ତାଙ୍କର ପ୍ରବୃତ୍ତି, ତାଙ୍କ ଦୃଷ୍ଟି, ତାଙ୍କର ସଂକଳ୍ପ ଶ୍ୟେନ ବିହଙ୍ଗରେ ବ୍ୟୋମ ବିହାର ତୁଲ୍ୟ ଉତ୍ତୁଙ୍ଗ ଓ ସୁଦୂର ପ୍ରସାରୀ, ଊର୍ଦ୍ଧ୍ୱାୟିତ ପଥରେ କ୍ଷିପ୍ର ତାଙ୍କର ଗତି, ତାଙ୍କର ହସ୍ତ ଦଣ୍ଡବିଧାନ ଓ ଅଭୟ ସକାଶେ ପ୍ରସାରିତ । କାରଣ ସେ ବି ମା' – ତାଙ୍କ ସ୍ନେହ ତାଙ୍କ କ୍ରୋଧ ପରି ତୀବ୍ର, ତାଙ୍କ କରୁଣା ସୁଗଭୀର ଏବଂ ଆବେଗମୟ, ତାଙ୍କୁ ଯଦି ନିଜ ଶକ୍ତି ସହ ଆସିବାକୁ ଦିଆହୁଏ, ତେବେ ଯେଉଁସବୁ ବାଧା ଆମ୍ଭମାନଙ୍କ ଅଗ୍ରଗତିରେ ଶକ୍ତିକୁ ନଷ୍ଟ କରି ଦିଅନ୍ତି, ଯେଉଁସବୁ ଶତ୍ରୁ ସାଧକକୁ ଆକ୍ରମଣ କରନ୍ତି, ସେ ସବୁକୁ ଅସାମଞ୍ଜସ୍ୟ ବସ୍ତୁତୁଲ୍ୟ ମୁହୂର୍ତ୍ତକରେ ସେ ପୂର୍ଣ୍ଣ କରି ଦିଅନ୍ତି । ମା' କାଳୀଙ୍କଠାରେ ଅଛି ଭଗବାନଙ୍କର ବିଜୟିନୀ ଶକ୍ତି, ଆଉ ତାଙ୍କର ତେଜଃ, ଆବେଗ ଓ କ୍ଷିପ୍ରତାର ପ୍ରସାଦରେ ଆମ୍ଭମାନଙ୍କର ଲାଭ ହୁଏ ପରମ ସିଦ୍ଧି, ପରେ ନୁହେଁ, ଯଦି ସମ୍ଭବ ହୁଏ, ଏଇକ୍ଷଣି ।'

ପରିଶେଷରେ ନିଷ୍କର୍ଷରେ ଏତିକି କୁହାଯାଇପାରେ ଯେ ଯେଉଁ ଦୁର୍ଗା ଆସୁରିକ ଶକ୍ତିର ନିଧନ ପାଇଁ ବିବସନା, ନରମୁଣ୍ଡଳମାଳିନୀ ଖଡ଼୍‌ଗ ଧାରିଣୀ କାଳିକା ରୂପ ଗ୍ରହଣ କରିଥିଲେ, ସେହି କରୁଣାମୟୀ ମା' କାଳୀ ସମସ୍ତ ଦୁର୍ଗତିରୁ ଏ ଜାତିକୁ, ଏ ଦେଶକୁ ରକ୍ଷା କରନ୍ତୁ । କାଳୀ ଉପାସନାର ଐତିହ୍ୟରେ ଶତାବ୍ଦୀ ଶତାବ୍ଦୀର ଆଧ୍ୟାତ୍ମିକ ଐକ୍ୟ, ସାଂସ୍କୃତିକ ଗୌରବ ଓ ସାର୍ବଜନୀନ ଆନନ୍ଦବୋଧ ସମଗ୍ର ବିଶ୍ୱରେ ସଂଚାରିତ ହେବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

**ସହାୟକ ଗ୍ରନ୍ଥସୂଚୀ :**


୧. ବେହେରା, ନରହରି – ଶକ୍ତିମୟୀ – ଭଦ୍ରକ, ବ୍ରାହ୍ମଣ–ପାଳ, ୨୦୦୮, ପୃ.୨୪–୫

୨. ମିଶ୍ର, ଅନ୍ତର୍ଯ୍ୟାମୀ – ଭାରତୀୟ ଧର୍ମ ଓ ସଂସ୍କୃତି– କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ୨୦୦୭, ପୃ.୩୫–୪୨

୩. ମିଶ୍ର, ଦୟାନିଧି – ଶକ୍ତିମୟୀ, ପୃ.୫୬

୪. ମହାନ୍ତି, ଶାନ୍ତନୁ କୁମାର – ଭଦ୍ରକର ଇତିହାସ ଓ ସଂସ୍କୃତିର ମୁଖ୍ୟଧାରା – କଟକ, ସତ୍ୟବ୍ରତ ପ୍ରକାଶନୀ, ୨୦୦୫, ପୃ.୧୬–୭

୫. ରାଉତ, ରମାକାନ୍ତ – ଶକ୍ତିମୟୀ, ପୃ.୧୩

୬. ରାୟ, ପ୍ରଶାନ୍ତ – ଓଡ଼ିଶାର ପର୍ବପର୍ବାଣି, ଓଷାବ୍ରତ, ଯାନିଯାତ୍ରା – କଟକ, ଓଡ଼ିଶା ବୁକ୍ ଷ୍ଟୋର୍, ୧୯୯୪, ପୃ.୧୫୭–୫୮

୭. ସାହୁ, ବାସୁଦେବ – ଶକ୍ତିମୟୀ, ପୃ.୩–୪

୮. କାଳିକା ପୁରାଣ, ୪୧/୪୭

୯. ଝଙ୍କାର, ୪୭ ବର୍ଷ, ସପ୍ତମ ସଂଖ୍ୟା, ପୃ.୮୯୮



ଅବସରପ୍ରାପ୍ତ ଅଧ୍ୟାପକ
ଚାନ୍ଦବାଲି କଲେଜ, ଭଦ୍ରକ–୭୫୬୧୩୩

# ବାଙ୍କୀର ମା' ଚର୍ଚ୍ଚିକା ଦେବୀ

ଶରତ ଚନ୍ଦ୍ର ମହାପାତ୍ର

**ବା**ଙ୍କୀର ଅଧିଷ୍ଠାତ୍ରୀ ଦେବୀ ଲାସ୍ୟମୟୀ, ହାସ୍ୟମୟୀ, ବିଘ୍ନ ବିନାଶିନୀ ମା' ଚର୍ଚ୍ଚିକା ତିନିପୁରର ମା' ରୂପେ ପୂଜିତା । ମା'ଙ୍କୁ ସତ୍ୟଯୁଗର ଦେବୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ମା'ଙ୍କର ଦୈନନ୍ଦିନ ପୂଜା, ବାର୍ଷିକ ପର୍ବପର୍ବାଣି, ମହିମା ଓ ପରାକାଷ୍ଠା ସମ୍ପୂର୍ଣ୍ଣ ଭିନ୍ନ ଓ ସେଥିରେ ସ୍ୱତନ୍ତ୍ରତା ରହିଛି । ଶପ୍ତସତୀ, ଦୁର୍ଗା କବଚ, ମହାଭାରତ, ଚଣ୍ଡୀପୁରାଣ, ଦେବୀ ସତକମ୍ ଶବରୀ ନାରାୟଣ ନୀଳାଦ୍ରି ମହୋଦୟମାନଙ୍କରେ ମା'ଙ୍କ ମହିମା ଓ ପରାକାଷ୍ଠା ବର୍ଣ୍ଣିତ ହୋଇଛି । ରାକ୍ଷସ ରାଜା ରକ୍ତବୀର୍ଯ୍ୟ ସହିତ ମା' ଦୁର୍ଗା ଯୁଦ୍ଧ କଲାବେଳେ ରାକ୍ଷସର ରକ୍ତରୁ ରାକ୍ଷସମାନ ଜାତ ହେଲେ । ମା' ଦୁର୍ଗା ନିଜର ଚନ୍ଦନ ଚର୍ଚ୍ଚିତ କପାଳରୁ ଚାମୁଣ୍ଡା ସୃଷ୍ଟି କରି ଭୂସ୍ପର୍ଶ କରିବା ପୂର୍ବରୁ ରକ୍ତପାନ କରିଦେଲେ । ମା'ଙ୍କର ଚନ୍ଦନ ଚର୍ଚ୍ଚିତ କପାଳରୁ ଜାତ ଚାମୁଣ୍ଡା 'ମା' ଚର୍ଚ୍ଚିକା' ନାମରେ ପୂଜିତା । ପୁରାଣ ବର୍ଣ୍ଣିତ ଆହୁରି ଏକ ତଥ୍ୟ ଦକ୍ଷଯଜ୍ଞରେ ବର୍ଣ୍ଣିତ । ପ୍ରବଳ ପ୍ରତାପୀ ରାଜା ଦକ୍ଷଙ୍କ କନ୍ୟା ସତୀ, ପିତାଙ୍କର ପ୍ରବଳ ବିରୋଧ ସତ୍ତ୍ୱେ ଦେବ ଦେବ ମହାଦେବଙ୍କୁ ବିବାହ କରିବାରୁ ତାଙ୍କୁ ଅପମାନିତ କରିବା ପାଇଁ ଦକ୍ଷ, ଦକ୍ଷ ଯଜ୍ଞ କରି ଶିବଙ୍କୁ ଆମନ୍ତ୍ରଣ କରି ନଥିଲେ କିନ୍ତୁ ସତୀଙ୍କୁ ଯଜ୍ଞସ୍ଥଳକୁ ଡାକିଥିଲେ । କୈଳାସ ପତି ଶିବଙ୍କର ସମ୍ମତି ପାଇ ନନ୍ଦି, ଭୃକୁଟି ପ୍ରଭୃତି ଶିବଲୋକମାନଙ୍କ ସହିତ ସତୀ ସେଠାକୁ ଗଲେ । ପିତାଙ୍କଠାରୁ ନିଜର ସ୍ୱାମୀଙ୍କର ଭର୍ତ୍ସନା ସହି ନପାରି ମା' ସତୀ ଯଜ୍ଞ କୁଣ୍ଡରେ ନିଜକୁ ଝାସ ଦେଲେ । ଶିବଲୋକମାନେ କାନ୍ଦି କାନ୍ଦି ଶିବଙ୍କୁ କହିବାରୁ ତାଙ୍କର ଡମ୍ବରୁ ବାଜି ଉଠିଲା । ସେ ଉଗ୍ରରୂପ ଧରି ସେଠାକୁ ଯାଇ ଅର୍ଦ୍ଧଦଗ୍ଧ ଶରୀରକୁ ଧରି ତାଣ୍ଡବ ନୃତ୍ୟ କରି ପାଗଳ ପରି ବୁଲିବାକୁ ଲାଗିବାରୁ ଦେବତାମାନେ ସୃଷ୍ଟି ଧ୍ୱଂସ ହେବା ଆଶଙ୍କାରେ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ପ୍ରଭୁ ସୁଦର୍ଶନ ଚକ୍ର ପେଶି ଶିବଙ୍କ ହାତରେ ଥିବା ଅର୍ଦ୍ଧଦଗ୍ଧ ଶରୀରକୁ ଚାରିଆଡ଼େ ନିକ୍ଷିପ୍ତ କଲେ । ମା'ଙ୍କର ଦକ୍ଷିଣ ହସ୍ତାବଶେଷ ଏହି ପୀଠରେ ପଡ଼ି ଏକ ଶକ୍ତିରୂପେ ପୂଜିତା ଓ ଉତ୍କଳ ଅଷ୍ଟକିଳା ମଧ୍ୟରେ ଅନ୍ୟତମ । ମା'ଙ୍କର ଆବିର୍ଭାବ ବିଷୟରେ ଆଉ ଏକ ତଥ୍ୟ ଲୋକମୁଖରୁ ଶୁଣାଯାଏ । ମହାନଦୀର ଅପରପାର୍ଶ୍ୱରେ ଡିଗିରିଆ ଗଡ଼ର ଅଧୀଷ୍ଠାତ୍ରୀ ଦେବୀ ଦୁର୍ଗା ତାଙ୍କର ଭଉଣୀ ମା' ଚର୍ଚ୍ଚିକା । ରାଜାରାଜୁଡ଼ା ସମୟରେ ମା'ଙ୍କ ପୂଜା ଉପଚାର ବିଧିବିଧାନ ଅନୁସାରେ ନ ହେବାରୁ ମା' ଏହି ପୀଠକୁ ଜୁଇ ଫୁଲହାର ରୂପରେ ମହାନଦୀରେ ନୌକା ସହିତ ଭାସି ଆସି ଗିରିର ପଶ୍ଚିମପାର୍ଶ୍ୱ ଏକ ଗୁମ୍ଫାର ଦ୍ୱାରଦେଶରେ ଧଳା ଆଙ୍କୁ ଗଛରେ ଝୁଲିଥିବାର ଲୋକେ ଦେଖିଲେ । ନାଉରୀଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ସେହିଠାରେ ମା'ଙ୍କୁ ପୂଜାର୍ଚ୍ଚନା କଲେ । ଏହାର ମୂକସାକ୍ଷୀ ରୂପେ ଆଜିବି ଦୁଇଟି ପଥର ପୂଜା ପାଉଛନ୍ତି । ପଣ୍ଡିତ ନୀଳକଣ୍ଠ ରଥ ଶର୍ମାଙ୍କ ପୌରାଣିକ ଚରିତ 'ଚିନ୍ତାମଣି' ପ୍ରଭୃତି ପୁସ୍ତକରେ ଏହା ବର୍ଣ୍ଣିତ ।



ରାଜାରାଜୁଡ଼ା ସମୟରେ ମା' ଘଟରୂପରେ ଚାଚେରୀ ଭୋଗ ପାଉଥିବାରୁ ତାଙ୍କ ନାମ ଚର୍ଚ୍ଚିକା ହୋଇଛି । ଆଉ ଏକ ତଥ୍ୟ ଅନୁଯାୟୀ ପ୍ରତିବର୍ଷ ମା' ବିମଳାଙ୍କ ପାର୍ଶ୍ୱରେ ଯୋଗିନୀମାନଙ୍କର ଶରତକାଳୀନ ପୂଜା ସମୟରେ ଏକ ସମାରୋହ ହୁଏ । ସେଥିରେ ମା'ଙ୍କୁ ଅଧକ୍ଷା ରୂପରେ ସମସ୍ତ ଯୋଗିନୀମାନେ ନାନୀ ବୋଲି ସମ୍ବର୍ଦ୍ଧନା କରନ୍ତି । ସମସ୍ତଙ୍କ ଅନୁରୋଧ ମା' ନିଜ ପୀଠରେ ନିଜ ହାତରେ ସମସ୍ତଙ୍କୁ ଚର୍ଚ୍ଚା କରିଥିବାରୁ ମା' ଚର୍ଚ୍ଚିକା

ନାମରେ ପୂଜିତା ଓ ସମ୍ବୋଦ୍ଧିତା । ନାଉରୀ ଏପାରିକୁ ଦିନର ଅବସାନ ପରେ ନୌକା ବାହି ଘରକୁ ଫେରୁଥିବାବେଳେ ନୌକା ସହିତ ଭାସି ଆସିଥିବା ଯୁଇ ଫୁଲର ହାର ଉଭେଇ ଯିବା ଓ ତାଙ୍କୁ ଶୂନ୍ୟ ବାଣୀରୁ ମା' ଚର୍ଚ୍ଚିକା ନାମରେ ପୂଜିତା ।

ମା' ଚର୍ଚ୍ଚିକାଙ୍କ ପୀଠରେ ମହାମୂନୀ ରଚିକ ନିଜର ଆଶ୍ରମ ସ୍ଥାପନ କରିଥିଲେ । ମା'ଙ୍କୁ ଆରାଧନା କରି ସେ ମା'ଙ୍କ ଆଶିଷ ଲାଭ କରିଥିଲେ । ତାଙ୍କର ନାମରେ ଆଜି ଚର୍ଚ୍ଚିକା ଗିରି ରଚିକ ଗିରି ନାମରେ ନାମିତ । ତାଙ୍କର ପୁତ୍ର ଜମଦଗ୍ନୀ, ବୋହୂ ରେଣୁକା ଓ ନାତି ପର୍ଶୁରାମଙ୍କ ନାମ ଅନୁସାରେ ପୀଠର ନାମ ପର୍ଶୁରାମ ପୀଠ ।

କେତେ ମୁନି, ଋଷି ଓ ଗୁଣୀ ମା'ଙ୍କ ଆଶୀର୍ବାଦ ଲାଭ କରି ଧନ୍ୟ ହୋଇଛନ୍ତି । ପର୍ଶୁରାମ ପିଲାବେଳୁ ଅତି ଦୁର୍ଦ୍ଦାନ୍ତ ଥିଲେ ମଧ୍ୟ ଜଣେ ମହାନ୍ ଶକ୍ତି ଉପାସକ ଥିଲେ । ସେ ପୃଥିବୀକୁ ନିକ୍ଷତ୍ରୀୟ କରିବାକୁ ପଣ କରି ସମସ୍ତ ଦେବୀପୀଠ ଦର୍ଶନ କରି ମା'ଙ୍କର ଦର୍ଶନାଭିଳାଷୀ ହେଲେ । ସେ ବୀର ଦର୍ପରେ ରଚିକ ଗିରି ଚଢ଼ି ଅଗ୍ରଗତି କରିବା ସମୟରେ ଗୋଟିଏ ପାହୁଣ୍ଡ ପରେ ମା'ଙ୍କୁ ଦର୍ଶନ କରିଥାନ୍ତେ, କିନ୍ତୁ ସେହିଠାରେ ଶକ୍ତିହୀନ ହୋଇ ଆଉ ଅଗ୍ରଗତି କରିନପାରି ମା'ଙ୍କ ପାଖରେ ଶରଣ ପଶିଲେ । ଗୋଟିଏ ଗୋଡ଼ରେ ଛିଡ଼ା ହୋଇ ତପସ୍ୟା କଲେ । ମା' ସନ୍ତୁଷ୍ଟ ହୋଇ ବୁଢ଼ୀବେଶରେ ଦର୍ଶନ ଦେଇ ବରଦାନ କଲେ ଓ ୨୧ ଥର ପୃଥିବୀ ନିକ୍ଷେତ୍ରୀ କରି ଫେରିବା ପରେ ପିତୃସତ୍ୟ ପାଳି ମା'ଙ୍କୁ ବଧ କରିଦେଲେ ଓ ରେଣୁକାଙ୍କ ରକ୍ତଧାର ବହିଗଲା । ଏହି କ୍ଷେତ୍ରରେ ମା'ଙ୍କ ଆଶୀର୍ବାଦରୁ ରେଣୁକା ଜୀବନ୍ୟାଶ ପାଇଥିଲେ । ଏହି ପୀଠ ପର୍ଶୁରାମ ପୀଠ ଓ ଗିରି ପାଦ ଦେଶରେ ବହି ଯାଉଥିବା ନଦୀ ରେଣୁକା ନଦୀ ନାମରେ ପୂଜିତା ।

ବାଙ୍କୀର ରାଜା ପାର୍ଥ ଶ୍ରୀଚନ୍ଦନ ଏକ ଦୁର୍ଦ୍ଦାନ୍ତ ରୋଗରୁ ମୁକ୍ତ ହୋଇ ୧୬୫୩ରେ ୨୨ ବାଟି, ୨୨ ମାଣ, ୨୨ ଗୁଣ୍ଠ, ୨୨ ବିଶ୍ୱା ଜମି ଓ ସେବା ଖଞ୍ଜି ଦେଲେ । କିମ୍ବଦନ୍ତୀ ଅଛି, ରଣାସୁରର ଅତ୍ୟାଚାର ଅସହ୍ୟ ହେଲା । ସମସ୍ତେ ମା' ମା' ବୋଲି ଡାକ ଛାଡ଼ିଲେ ଭୟ ଓ ଅତ୍ୟାଚାରରେ । ମା' ତା ସହିତ ଯୁଦ୍ଧ କରି ତାକୁ ବନ୍ଧ କରି ତା' ଉପରେ ଆସ୍ଥାନ ରଖିଲେ । ମା'ଙ୍କ ଯଶଗାନରେ ତ୍ରିପୁର ପ୍ରକମ୍ପିତ ହେଲା । ଦୂରିତ ଖଣ୍ଡିନୀ, ବିଘ୍ନବିନାଶିନୀ ମା' ଜଣେ ଚୁନୁରୀ ସେବକ ଶ୍ରୀମନ୍ଦିରରୁ ଖସି ପଡ଼ିବା ବେଳେ ଜୀବନ୍ତ ସିଂହରୂପରେ ତାଙ୍କୁ ଆସନ୍ନ ମୃତ୍ୟୁ ମୁଖରୁ ରକ୍ଷା କରିଥିଲେ । ସ୍ନେହମୟୀ, ମମତାମୟୀ, ଭକ୍ତବତ୍ସଳା ମା' ଭୟଙ୍କର ଝଡ଼ି, ବର୍ଷାରେ ଭକ୍ତ ବଡ଼ ପୂଜାପଣ୍ଡା ଘରେ ବୁଢ଼ୀ ବେଶରେ ନିଜର ପଣତ ତଳେ ଜ୍ୱଳନ୍ତ ଦୀପଟିଏ ଲଗେଇ ତାଙ୍କର ସନ୍ଧ୍ୟା ଆଳତୀ କରିବାକୁ କହି ନିଜର ପ୍ରକୃତ ଦର୍ଶନ ଦେଇ ତାଙ୍କର ମାନରକ୍ଷା କରିଥିଲେ । ସେହି ଦିନଠାରୁ ଶ୍ରୀମନ୍ଦିରର ଦକ୍ଷିଣ ଗାତ୍ରରେ ଓ ବଡ଼ପୂଜା ପଣ୍ଡାଘରେ ପୂଜା ପାଇ ଆସୁଛନ୍ତି ସେ । ପଶ୍ଚିମ ଓଡ଼ିଶାର ଜଣେ ପୁଟୁଳି ବଣିଆ ଥୋଡ଼ିଆ ବଳଦ ଉପରେ ଧନରତ୍ନ ଆଣି କଟକ ଆଡ଼କୁ ବାଣିଜ୍ୟ କରିବାକୁ ମହାନଦୀରେ ଯାଉଥିବା ସମୟରେ ବଢ଼ିରେ ତା'ର ସମସ୍ତ ଧନରତ୍ନ ଭାସି ଯିବାରୁ ସେ ମା' ରକ୍ଷାକର ବୋଲି ବିକଳ ପ୍ରାର୍ଥନା କରିବାରୁ ପରଦିନ ଅନତି ଦୂରରେ ଗାଈ ସହିତ ସମ୍ପତ୍ତି ଫେରିପାଇଥିଲା ତେଣୁ ଉତ୍ତରପାର୍ଶ୍ୱ ପାହାଚ ସହିତ ସିଦ୍ଧେଶ୍ୱର ମହାଦେବ ମନ୍ଦିର ତୋଳି ଦେଇ ସେବା ପାଇଁ ଜମି ଖଞ୍ଜି ଦେଲା । ବିହାରର ଧଳଭୂମିରୁ ବଳଭଦ୍ର ଧଳ ମା'ଙ୍କ ଆଶୀର୍ବାଦର ସ୍ୱରୂପ ୨ଟି ସୁନା ତାଟଙ୍କ ପାଇ ବାଙ୍କୀ ରାଜା ହେବାର ମାନ୍ୟତା ପାଇଥିଲେ । ପଦ୍ମନାଭ ଶ୍ରୀଚନ୍ଦନ ମା'ଙ୍କ ଆଶୀର୍ବାଦରୁ ବାଙ୍କୀର ତଥା ଓଡ଼ିଶାର ଜଣେ ସୁପ୍ରସିଦ୍ଧ କବି ହୋଇପାରିଥିଲେ ।

୧୭୧୧ରେ ବାଙ୍କୀ ରାଜା ଖୋର୍ଦ୍ଧା ରାଜାଙ୍କଦ୍ୱାରା ବଧ ହେବା ପରେ ବିଧବା ରାଣୀ ଶୁକଦେଇ ମା'ଙ୍କୁ ଆରାଧନା କରି ମା'ଙ୍କ ଆଶୀର୍ବାଦ ଓ ସହାୟତାରୁ ସ୍ୱାମୀହନ୍ତାଙ୍କ ପ୍ରତିଶୋଧ ନେଇ ବାଙ୍କୀର ମାନ ରଖିଥିଲେ । 'ଶବରୀ ନାରାୟଣ ନୀଳାଦ୍ରି ମହୋଦୟ'ରୁ ଜଣାଯାଏ ଯେ ପୁରୀ ଗଜପତି ଇନ୍ଦ୍ରଦ୍ୟୁମ୍ନ ମନ୍ତ୍ରୀ ବିଦ୍ୟାପତିଙ୍କୁ ପଠାଇ ମା' ଚର୍ଚ୍ଚିକାଙ୍କୁ ହୋମ ଯଜ୍ଞାଦି କରି ତୃଷ୍ଟ କରି ବିଶ୍ୱାବସୁଙ୍କ ଇଷ୍ଟଦେବ 'ନୀଳମାଧବଙ୍କୁ ନେଇଯିବା ପାଇଁ କ୍ଷମ ହୋଇଥିଲେ । ମହାତ୍ମ୍ୟ ବର୍ଣ୍ଣନା କରିବାକୁ ଗଲେ ମା'ଙ୍କର ଅଲୌକିକତା ବହୁ ପୂର୍ବରୁ ପରିଲକ୍ଷିତ । ବାଙ୍କୀ ସହରର ଅନେକ ବାସିନ୍ଦା ବଳି ବନ୍ଦ କରିବା ପାଇଁ ଏକତ୍ର ପୀଠକୁ ଆସିଥିଲେ । କିନ୍ତୁ କ'ଣ ହେଲା କେଜାଣି ସମସ୍ତେ କାଳନିଦ୍ରା ଗଲାଭଳି ଏପରି ଭାବରେ ବେଢ଼ାରେ ଶୋଇ ପଡ଼ିଲେ ଯେ ଢୋଲ, ଘଣ୍ଟ ବାଦ୍ୟରେ ମଧ୍ୟ ନିଦ୍ରା ଭଙ୍ଗ ହେଲା ନାହିଁ । ଆଉ ଏକ ଘଟଣାପ୍ରବଳ ମହାନଦୀ ବଢ଼ି ଯୋଗୁଁ ସେବକମାନେ ମହାପଶୁ ପାଇ ପାରିଲେ ନାହିଁ । ମହାଷ୍ଟମୀ ପର୍ବ କିପରି ହେବ ସମସ୍ତେ ଚିନ୍ତିତ । ସର୍ବ ଶେଷରେ ଜଣେ ବ୍ୟକ୍ତିଙ୍କୁ ତାଙ୍କ ସ୍ୱଇଚ୍ଛାରେ ଲଣ୍ଡା କରି ଉତ୍ସର୍ଗ କରି ହତ୍ୟା କରିବାକୁ ଗଲାବେଳେ ବଢ଼ି ପାଣିରେ ପଶ୍ଚିମ ପାହାଚରେ ଏକ ଗଁ ଗଁ ଶବ୍ଦ ଶୁଣାଗଲା । ଦେଖନ୍ତିତ ନିଖୁଣ ପଶୁଟିଏ । ତାକୁ ଆଣି ବଧ କରାଗଲା । କିନ୍ତୁ ଲୋକଟି କିଛି ଦିନ ପରେ ପ୍ରାଣତ୍ୟାଗ କଲା । ହୋଇପାରେ ମା' ନରବଳି ଅପବାଦରୁ ମୁକ୍ତ ପାଇବା

ପାଇଁ ଏପରି ଚମତ୍କାରିତା ସୃଷ୍ଟି କରିଥିଲେ । ପର୍ଶୁରାମ ପୀଠାଧିଶ୍ୱରୀ ମା' ଚର୍ଚ୍ଚିକା ଚାମୁଣ୍ଡା ଶ୍ରେଣୀର । ଅଷ୍ଟଭୁଜା, ଉଲଗ୍ନା, ରଣାସୁର ଶବାରୂଢ଼ା, ବକ୍ଷ ଦେଶରେ ନର ମୁଣ୍ଡାମାଳା ବିଲମ୍ବିତା । ଦକ୍ଷିଣ ହସ୍ତରେ ୪ ଗୋଟି ଖଡ୍ଗ, ତ୍ରିଶୂଳ, ସର୍ପ, ଅଙ୍କୁଶ, ବରାଭୟ ପ୍ରଦାନକାରୀ ଅକ୍ଷମାଳା ଓ ବାମହସ୍ତରେ ଚାରି ଗୋଟି ଖର୍ପର, କଟାମୁଣ୍ଡ, ଡମ୍ବରୁ କନିଷ୍ଠା ଅଙ୍ଗୁଷ୍ଠି ଦନ୍ତଶକ୍ତା । ମା'ଙ୍କ ଡମ୍ବରୁ ମଧ୍ୟମା କଟିଦେଶ ଈଷତ୍ ବକ୍ର ହୋଇଥିବାରୁ ମା'ଙ୍କୁ ବକ୍ରେଶ୍ୱରୀ ଓ ତାଙ୍କ ସ୍ଥାନର ନାମ ବାଙ୍କୀ ବୋଲାଯାଏ ।

ମା'ଙ୍କ ପହୁଡ଼ ପ୍ରାତଃ ୪ଟାରୁ ହୋଇଥାଏ । ଦନ୍ତଶୋଧନ, ସ୍ନାନ ମାଜଣା, ମଙ୍ଗଳ ଆଳତୀ, ବଲ୍ଲଭ ପୂଜା, ସୂର୍ଯ୍ୟ ପୂଜା ପ୍ରଭୃତି ପାଞ୍ଚ ଅବକାଶ, ସକାଳ, ଦ୍ୱିପ୍ରହର, ରାତ୍ର ଏହି ପ୍ରକାର ୩ ଧୂପ ଓ ସନ୍ଧ୍ୟା ସମୟରେ ସାନ୍ଧ୍ୟ ଆଳତୀ ଅନୁଷ୍ଠିତ ହୁଏ । ମାଜଣା ପରେ ମା'ଙ୍କୁ ଚନ୍ଦନ ଲାଗିକରି ଶାଢ଼ୀ, ବାହୁଟି, କଟିମେଖଳା, ହସ୍ତ, ପଦ ଖଚିତ ଅଳଙ୍କାରରେ ନାଶା, ଚକ୍ଷୁ, ମଥାରେ ଚାନ୍ଦ ଇତ୍ୟାଦିରେ ଆଭୂଷିତ କରାଯାଏ । ସକାଳ ଧୂପରେ ଖେଚୁଡ଼ି, ଶାଗ, ତରକାରୀ, ଦ୍ୱିପ୍ରହର ଧୂପରେ ଖେଚୁଡ଼ି, ଶାଗ, ତରକାରୀ, କ୍ଷୀରି, କାକରା, ରାତ୍ର ଧୂପରେ ଦହିପଖାଳ, ତରକାରୀ, ଅଧରପଣା, ବଡ଼ସିଂହାର ସାନ୍ଧ୍ୟ ଆଳତୀରେ ଟେରା ଅର୍ଣ୍ଣ ଏ ସବୁ ନିତ୍ୟ ନୈମିତ୍ତିକ ପୂଜା ବିଧି ମା'ଙ୍କ ସେବାପାଇଁ ନିୟୋଜିତ ସେବକର ପାଳିଆମାନେ ଆୟୋଜନ କରିଥାନ୍ତି । ବର୍ଷର କାର୍ତ୍ତିକ, ମାଘ ଓ ବୈଶାଖ ମାସରେ ଆମିଷ ଭୋଗ ହୁଏ ନାହିଁ । କୌଣସି ଭକ୍ତ ପ୍ରସାଦ ସେବନ ପାଇଁ ଇଚ୍ଛା ପ୍ରକାଶ କଲେ ପାଳିଆ ତାହାର ସୁବନ୍ଦୋବସ୍ତ କରନ୍ତି । ମା'ଙ୍କର ଭୋଗ ଦୋକାନ ବ୍ୟତୀତ ବାହାର ଶୁଖିଲା ଭୋଗ (ମହାପ୍ରସାଦକୁ ଛାଡ଼ି ଦେଲେ) ପୂଜା କରାଯାଏ ନାହିଁ ।

ମା'ଙ୍କ ପୀଠରେ ବାର ମାସରେ ତେର ପର୍ବ ପାଳିତ ହୁଏ । ଚୈତ୍ରରେ ମହାବିଷୁବ ସଂକ୍ରାନ୍ତି, ନବବିନାୟକ ପର୍ବ ବା ବାସନ୍ତିକ ପୂଜା, ବୈଶାଖ ପୂର୍ଣ୍ଣିମା, ଚନ୍ଦନ ପୂର୍ଣ୍ଣିମା, ଜ୍ୟେଷ୍ଠ ମାସରେ ଚନ୍ଦନ ଯାତ୍ରା, ସାବିତ୍ରୀ ଅମାବାସ୍ୟା, ଶ୍ରାବଣରେ ଗହ୍ମାପର୍ବ ରାକ୍ଷୀ, ଭାଦ୍ରବ ମାସରେ ଜନ୍ମାଷ୍ଟମୀ, ସାତପୁରୀ ଅମାବାସ୍ୟା ଓ ଭାଦ୍ରବ ପୂର୍ଣ୍ଣିମାରେ ଭାଗବତ ପଢ଼ାଯାଏ । ଆଶ୍ୱିନ ମାସରେ ଦ୍ୱିତୀ–ବାହାନ ପୂଜା ଓ ଷୋଳପୂଜା ହେବା ସହିତ ମହାସମାରୋହରେ ମହାଷ୍ଟମୀ ତାନ୍ତ୍ରିକ ବିଧାନ ଅନୁଯାୟୀ ପଶୁବଳି ଅନୁଷ୍ଠିତ ହୁଏ । ଏହି ମାସରେ ଦଶହରା, କୁମାର ପୂର୍ଣ୍ଣମୀ ପର୍ବ ପାଳନ କରାଯାଏ । କାର୍ତ୍ତିକ ମାସରେ ରାସପୂର୍ଣ୍ଣିମା ଦିନ ବିଶ୍ୱଶାନ୍ତି ମହାଯଜ୍ଞ, ମାର୍ଗଶୀରରେ ପ୍ରଥମାଷ୍ଟମୀ, ପୌଷରେ ବଉଳ ଅମାବାସ୍ୟା, ମାଘରେ ମକର ସଂକ୍ରାନ୍ତି ଫାଲଗୁନ ଦୋଳଯାତ ଓ ଘଟ ପର୍ବ ଏହିପରି ୧୨ ମାସରେ ୧୩ ପର୍ବ ମା'ଙ୍କ ପୀଠରେ ପାଳନ କରାଯାଏ । ପଣା, ମାଣ୍ଡୁଅ, ବ୍ରତ, ଗହ୍ମପିଠା, ସାତପୁରୀ ମଣ୍ଡା, ବଉଳ ଗଇଁଠା, ରାଶିକୋରା, ମକର ଚାଉଳ ପ୍ରଭୃତି ଭୋଗରେ ଏହି ପର୍ବମାନଙ୍କରେ ମହତ୍ୱ ରହିଛି । ପର୍ବମାନଙ୍କ ମଧ୍ୟରେ ମହାଅଷ୍ଟମୀ, ପଣାସଂକ୍ରାନ୍ତି, ଦୋଳପୂର୍ଣ୍ଣିମା, ବାସନ୍ତିକ ପୂଜା, କୁମାର ପୂର୍ଣ୍ଣିମା, ରାସପୂର୍ଣ୍ଣିମା ପ୍ରଧାନ ପର୍ବ । ମା'ଙ୍କର ଉପରତଳ ଏହିପରି ଦୁଇଟି ମଣ୍ଡପ ରହିଛି । ଉପର ମଣ୍ଡପରେ ୧୬ଟି ପ୍ରସ୍ତର ନିର୍ମିତ ସ୍ତମ୍ଭ ଓ ତଳ ମଣ୍ଡପରେ ୨୦ଟି ସ୍ତମ୍ଭ ରହିଛି । ୧୮୨୮ରେ ପୀତାମ୍ବର ଶ୍ରୀ ଚନ୍ଦନକାଷ୍ଠ କଳାକୃତିରେ ଭରପୂର ଶୂନ୍ୟ ମଣ୍ଡପ ଦୁଇଟି ନିର୍ମାଣ କରିଥିଲେ । ଉପର ମଣ୍ଡପ ବାଙ୍କୀ ରାଜାଙ୍କ ଆସନ, ତଳ ମଣ୍ଡପ ଦେବତାଙ୍କ ଆସନ । ବର୍ଷକରେ ୩ ଥର ନେତ ବନ୍ଧାଯାଏ ଯଥା– ମହାଷ୍ଟମୀ, ମୂଳାଷ୍ଟମୀ ଓ ପଣାସଂକ୍ରାନ୍ତି । ଯେ ବାନା ବାନ୍ଧନ୍ତି ତାଙ୍କୁ ବିଷୋଇ ବୋଲାଯାଏ । ମା'ଙ୍କର ନିଜସ୍ୱ ଯଜ୍ଞ ତିନି ଥର ଉପର ମଣ୍ଡପରେ ହୁଏ ଯଥା– ମହାଷ୍ଟମୀ, ମହାନବମୀ ଓ ନବପତ୍ରିକାରେ । ଅନ୍ୟାନ୍ୟ ଯଜ୍ଞ ମନ୍ଦିର ତଳେ ହୁଏ । ଉତ୍ତର ପଟ ପାହାଚ ୩୨ଟି ଭକ୍ତମାନଙ୍କ ପାଇଁ, ପଶ୍ଚିମ ପଟ ପାହାଚ ୫୧ଟି ମୁନିଋଷିଙ୍କ ପାଇଁ ଓ ଦକ୍ଷିଣ ପଟ ୮୧ଟି ରାଜାଙ୍କ ଯାତାୟାତ ପାଇଁ ଉଦ୍ଦିଷ୍ଟ । ମା'ଙ୍କ ସାମ୍ନାରେ ଗଣେଶ, ଲକ୍ଷ୍ମୀ, ସରସ୍ୱତୀ, ବ୍ୟାଘ୍ରମୁଖୀ, ସିଂହମୁଖୀ ଦୁର୍ଗା, ଗଙ୍ଗାଯମୁନା, ମା'ଙ୍କ ସାମ୍ନା ଉପରକୁ ଦଶ ମହାବିଦ୍ୟା, ପଚ୍ଛପାର୍ଶ୍ୱରେ ଦକ୍ଷିଣ ଚଣ୍ଡୀ, ଚାମୁଣ୍ଡା, ଘୁଘୁରା ବତୀ ପୂଜା ପାଉଛନ୍ତି । ପୀଠରେ କୁସୁମେଶ୍ୱର, ସପନେଶ୍ୱର, ଶିଦ୍ଧେଶ୍ୱର, ନୀଳକଣ୍ଠେଶ୍ୱର, ଗତିଶ୍ୱର ମହାଦେବ ପୂଜା ପାଉଛନ୍ତି । ରଘୁନାଥ, ସନ୍ତୋଷୀ ମା', ତ୍ରିନାଥ ଠାକୁର, ମଙ୍ଗଳା ଓ ପର୍ଶୁରାମଙ୍କ ପାଦ ଚିହ୍ନ ପୂଜା ପାଉଛନ୍ତି । ଗ୍ରାମ ମଝିରେ ଦ୍ୱାରପାଳ, ଗ୍ରାମଦେବତୀ ରହିଛନ୍ତି । ଭୌମ ରାଜବଂଶର ଲୋକେ ଭକ୍ତ ବିଧାନରେ ବଳଭଦ୍ର ଧଳ ସିଂ, ମା'ଙ୍କ ମନ୍ଦିର ନିର୍ମାଣ କରିଥିଲେ । ସର୍ବଶକ୍ତିମୟୀ ମା' ଚର୍ଚ୍ଚିକା କରୁଣା ବାରି ବରଷି ସମସ୍ତଙ୍କ ପାଶେ ପାଶେ ଛାଇ ପରି ଥା'ନ୍ତୁ ।

ମନ୍ଦିର ସାହି
ବାଙ୍କୀ

# ଢେଙ୍କାନାଳର ଲକ୍ଷ୍ମୀପୂଜା

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

**ପ୍ରା**କୃତିକ ରୂପ ଲାବଣ୍ୟଭରା ଢେଙ୍କାନାଳ ବାର ଶହ ବର୍ଷର ଐତିହ୍ୟ ଓ ସଂସ୍କୃତି ବିମଣ୍ଡିତ ନଗର । ଓଡ଼ିଶାର ମଧ୍ୟାଞ୍ଚଳରେ ଅବସ୍ଥିତ ଏହି ବୀରଭୂମି ଏକ ପ୍ରାଚୀନ ସାଂସ୍କୃତିକ ପୀଠ ରୂପେ ମର୍ଯ୍ୟାଦାବନ୍ତ । ଓଡ଼ିଶାର ସଂସ୍କୃତି ଓ ପରମ୍ପରାର ପ୍ରବହମାନ ଧାରାରେ ଉଦ୍‌ବୁଦ୍ଧ ହୋଇ ଢେଙ୍କାନାଳବାସୀ କୁମାର ପୂର୍ଣ୍ଣମୀ ଅବସରରେ ମହାଲକ୍ଷ୍ମୀଙ୍କର ମୃଣ୍ମୟୀ ମୂର୍ତ୍ତିପୂଜା ଆରମ୍ଭ କରି ଏକ ସ୍ୱତନ୍ତ୍ର ମର୍ଯ୍ୟାଦାରେ ଅଧିଷ୍ଠିତ କରାଇ ପାରିଛନ୍ତି । ଗୌରବର ବିଷୟ, ଏହା ଭାରତର ଅନ୍ୟାନ୍ୟ ସ୍ଥାନରେ ଅନୁଷ୍ଠିତ ମୂର୍ତ୍ତିପୂଜାର ଅନୁକରଣସର୍ବସ୍ୱ ପୂଜାନୁଷ୍ଠାନ ନହୋଇ ଉତ୍କଳୀୟ ସଂସ୍କୃତିର ସ୍ୱାଭିମାନରେ ଆତ୍ମିକ ସନନ୍ଦ ଭାବରେ ପ୍ରତିଭାତ ତଥା ଉନ୍ନତ ରୁଚି ଓ ସଂସ୍କାରବୋଧଦ୍ୱାରା ଉଦାର ଏବଂ ମହାନ୍ ଅନ୍ତଃପ୍ରେରଣାରେ ଦୀପ୍ତିମନ୍ତ । ଅଧିକନ୍ତୁ, ଏହି ସାର୍ବଜନୀନ ସାଂସ୍କୃତିକ ମହୋତ୍ସବ ସୃଜନଶୀଳ ପରମ୍ପରା ସୃଷ୍ଟିପୂର୍ବକ ଜୀବନଚର୍ଯ୍ୟାକୁ ସରସ, ସୁନ୍ଦର, ସମୃଦ୍ଧ ଓ ପରିପୂର୍ଣ୍ଣ କରିପାରିଛି ।



ଭାରତୀୟ ସଂସ୍କୃତି ଓ ଦର୍ଶନରେ ମହାଲକ୍ଷ୍ମୀ ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟର ଦେବୀ ତଥା ପରମାତ୍ମାଙ୍କ ଶକ୍ତି ରୂପରେ ମହିମାମୟୀ । ପରମାତ୍ମାଙ୍କ ସଦୃଶ ମହାଲକ୍ଷ୍ମୀ ନିତ୍ୟମୁକ୍ତା, ନାନାରୂପଧାରିଣୀ, ଅନ୍ନଦାତ୍ରୀ ତଥା ଭଗବାନଙ୍କର ଅଙ୍କଶାୟିନୀ । ଭାରତୀୟ ପୁରାଣ ଓ ଶାସ୍ତ୍ର ସମୂହରେ ମହାଲକ୍ଷ୍ମୀଙ୍କର ମହାତ୍ମ୍ୟ ପର୍ଯ୍ୟାପ୍ତ ରୂପେ ଚିତ୍ରିତ । ଉତ୍ତର ବୈଦିକ କାଳରେ ମହାଲକ୍ଷ୍ମୀ ଉପାସନା ଭାରତୀୟ ଜନଜୀବନରେ ବିଶେଷ ପ୍ରଭାବ ବିସ୍ତାର କରିଥିଲା । ଗୁପ୍ତଯୁଗରେ ମହାଲକ୍ଷ୍ମୀ ପୂଜା ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ମହୋତ୍ସବର ମାନ୍ୟତା ଲାଭ କରିଥିଲା । ମହାନ୍ ଭାରତୀୟ ସଂସ୍କୃତିରେ ଉଦ୍‌ବୁଦ୍ଧ ହୋଇ ଓଡ଼ିଶାବାସୀ ଖ୍ରୀଷ୍ଟପୂର୍ବ କାଳରୁ ମହାଲକ୍ଷ୍ମୀଙ୍କର ଆରାଧନା କରି ଆସୁଛନ୍ତି । ଉଦୟଗିରି ଗୁମ୍ଫାସ୍ଥିତ ଗଜଲକ୍ଷ୍ମୀ ଚିତ୍ର ହିଁ ଓଡ଼ିଶାରେ ଲକ୍ଷ୍ମୀପୂଜାର ପ୍ରାଚୀନତମ ନିଦର୍ଶନ । ପରବର୍ତ୍ତୀ କାଳରେ ପର୍ଶୁରାମେଶ୍ୱର ମନ୍ଦିର, ସିଂହନାଥ ମନ୍ଦିର ଓ କୋଣାର୍କ ମନ୍ଦିର ଗାତ୍ରରେ ଅଙ୍କିତ ଲକ୍ଷ୍ମୀ ଚିତ୍ରରୁ ଓଡ଼ିଶାରେ ଲକ୍ଷ୍ମୀପୂଜାର ମହତ୍ୱ ଓ ତାତ୍ପର୍ଯ୍ୟ ପ୍ରତିପାଦିତ ହୋଇଥାଏ । ଶ୍ରୀମନ୍ଦିର ପରିସରରେ ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ମହାଲକ୍ଷ୍ମୀଙ୍କର ଭବ୍ୟମନ୍ଦିର ଉତ୍କଳୀୟ ସାଂସ୍କୃତିକ ଓ ଆଧ୍ୟାତ୍ମିକ ବିଚାରବୋଧରେ ଲକ୍ଷ୍ମୀପୂଜାର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟର ସୂଚନା ପ୍ରଦାନ କରିଥାଏ । ଓଡ଼ିଆ ଜାତିର ସମନ୍ୱୟ ଚେତନାରେ ମହାଲକ୍ଷ୍ମୀ ଜାତିବର୍ଣ୍ଣର ପ୍ରାଚୀର ଉପରଦେଇ ପ୍ରାଚୁର୍ଯ୍ୟ ପରିବେଷ୍ଟିତ ଶ୍ରୀମନ୍ଦିରରୁ ଦୀନହୀନ ଅକିଞ୍ଚନ ଶ୍ରୀୟା ଚାଣ୍ଡାଳୁଣୀର ପୂଜା ଆସ୍ଥାନକୁ ଓହ୍ଲାଇ ଆସି ପବିତ୍ର ପୂଜା ଗ୍ରହଣ ପୂର୍ବକ ଶ୍ରୀୟା ନାମରେ ବିଶ୍ୱବନ୍ଦନୀୟା ହୋଇଯାଇଛନ୍ତି । ଜାତି, ବର୍ଣ୍ଣ ନିର୍ବିଶେଷରେ ଅଗଣିତ ଓଡ଼ିଆ ମାଣବସା, ସୁଦଶା, କୋଜାଗର, ଲକ୍ଷ୍ମୀନାରାୟଣ ଓ ଗୁରୁପୂର୍ଣ୍ଣିମା ପ୍ରଭୃତି ଓଷାବ୍ରତ ପାଳନ କରି ମହାଲକ୍ଷ୍ମୀଙ୍କୁ ଏକାନ୍ତ ଆପଣାର କରିପାରିଛନ୍ତି । ଓଡ଼ିଶାର ଜନମାନସରେ ଜଗଜ୍ଜନନୀ ମହାଲକ୍ଷ୍ମୀ ବିଷ୍ଣୁବଲ୍ଲଭ କରୁଣାମୟୀ ଅନ୍ନଦାତ୍ରୀ ରୂପେ ନିତ୍ୟ ବନ୍ଦନୀୟା ।

ଢେଙ୍କାନାଳ ଜିଲ୍ଲାସ୍ଥିତ ଅନନ୍ତଶୟନ ବିଷ୍ଣୁମୂର୍ତ୍ତିରୁ ଉପଲବ୍ଧ ହୁଏ ଭୌମକର ଯୁଗରୁ ଏହି ଭୂଖଣ୍ଡରେ ବୈଷ୍ଣବ ସଂସ୍କୃତିର ଅଭ୍ୟୁଦୟ ଘଟିଥିଲା । ଚତୁର୍ଦ୍ଦଶ ଶତାବ୍ଦୀରେ ଜଗଦ୍‌ଗୁରୁ ଶ୍ରୀଧରସ୍ୱାମୀ ରମଣୀୟ ଶୈଳଶୈବପୀଠ କପିଳାସରେ ସୁପ୍ରସିଦ୍ଧ ଭାଷ୍ୟସମୂହ ରଚନା କରିଥିଲେ । ସେ ଥିଲେ ଲକ୍ଷ୍ମୀ ନୃସିଂହ ଉପାସକ ।

ପରିଣାମ ସ୍ୱରୂପ ଢେଙ୍କାନାଳରେ ଲକ୍ଷ୍ମୀ ନୃସିଂହ ଉପାସନାର ପ୍ରଚାର ଓ ପ୍ରସାର ଘଟିଥିଲା । ପରବର୍ତ୍ତୀ କାଳରେ ଢେଙ୍କାନାଳ ସହରରେ ଶ୍ରୀବସ୍ତ ଖଣ୍ଡଶାଳ ରୀତିରେ ଶ୍ରୀବଳଦେବ ଜୀଉଙ୍କର ମନ୍ଦିର ତଥା ସନ୍ନିକଟରେ ଲକ୍ଷ୍ମୀନୃସିଂହ ମଠ ସ୍ଥାପନା ହୋଇ ଲକ୍ଷ୍ମୀ ନୃସିଂହ ଉପାସନାର ବ୍ୟାପକ ପ୍ରସାର ଘଟିଲା । ସୂଚନାଯୋଗ୍ୟ ଯେ, ଢେଙ୍କାନାଳର ରାଜଗୁରୁ କନ୍ତିଓ ବ୍ରହ୍ମଚାରୀଙ୍କର ଆରାଧ୍ୟ ଥିଲେ ଲକ୍ଷ୍ମୀନୃସିଂହ । ଶ୍ରୀଜଗନ୍ନାଥ ସଂସ୍କୃତି ଓ ବୈଷ୍ଣବୀୟ ଚେତନାର ସ୍ପର୍ଶରେ ମହାଲକ୍ଷ୍ମୀ ଅଗଣିତ ଢେଙ୍କାନାଳବାସୀଙ୍କର ଆରାଧ୍ୟା ହୋଇଗଲେ । ସମୟକ୍ରମେ ସୁବର୍ଣ୍ଣ ଲକ୍ଷ୍ମୀ ପ୍ରତିମା ଢେଙ୍କାନାଳ ରାଜପ୍ରାସାଦରେ ପୂଜିତା ହେଲେ । ଢେଙ୍କାନାଳ ରାଜ୍ୟର ପୂର୍ବପାର୍ଶ୍ୱ ବିଷ ବା ପ୍ରଗଣା ଲକ୍ଷ୍ମୀ ପ୍ରାସାଦ ବିଷ ନାମରେ ତଥା ବିଭିନ୍ନ ସ୍ଥାନ ଲକ୍ଷ୍ମୀଙ୍କ ନାମରେ ନାମିତ ହୋଇ ଢେଙ୍କାନାଳରେ ଲକ୍ଷ୍ମୀପୂଜା ଏକ ମହନୀୟ ପରମ୍ପରା ସୃଷ୍ଟି କଲା ।

ମଧ୍ୟଯୁଗରୁ ଢେଙ୍କାନାଳ ନୃତ୍ୟ, ସଂଗୀତ, ଅଭିନୟ ଓ କଳାକ୍ଷେତ୍ରରେ ସୁନାମ ଅର୍ଜନ କରିଥିଲା । ବିଶେଷତଃ ଊନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଢେଙ୍କାନାଳର ରାସଦଳ ସମଗ୍ର ଓଡ଼ିଶାରେ ପ୍ରସିଦ୍ଧିଲାଭ କରିଥିଲେ । ଓଡ଼ିଶୀ ନୃତ୍ୟ, ସଂଗୀତ ଓ ବୈଷ୍ଣବୀୟ ଭାବଧାରାରେ ଗଠିତ ଏହି ରାସଦଳର ପ୍ରତିଷ୍ଠାତା ଥିଲେ ତତ୍କାଳୀନ ଓଡ଼ିଶାର ପ୍ରଖ୍ୟାତ ନୃତ୍ୟ, ସଂଗୀତ ଓ କଳା ନିର୍ଦ୍ଦେଶକ ବ୍ରଜ କିଶୋର ପଟ୍ଟନାୟକ । ତାଙ୍କରି ନିର୍ଦ୍ଦେଶନାରେ ଢେଙ୍କାନାଳର କଳାକାରବୃନ୍ଦ ଦୁର୍ଗେଶନନ୍ଦିନୀ, ନରମେଧ ଯଜ୍ଞ, ବୀର ତ୍ରିଲୋଚନ, କଳିକୁଳ ଚନ୍ଦ୍ରମା ପ୍ରଭୃତି ନାଟକ ଓ ରାସ ପରିବେଷଣ କରି ଓଡ଼ିଶା ତଥା ଓଡ଼ିଶା ବାହାରେ ଉଚ୍ଚ ପ୍ରଶଂସିତ ହୋଇଥିଲେ । ପ୍ରତିବର୍ଷ କୁମାର ପୂର୍ଣ୍ଣିମାର ଜ୍ୟୋତ୍ସ୍ନାବିଧୌତ ରଜନୀରେ ବ୍ରଜବାବୁଙ୍କ ରାସଦଳ ଢେଙ୍କାନାଳ ସହର ଉପରଗଡ଼ର ହନୁମାନ ମନ୍ଦିର ପ୍ରାଙ୍ଗଣରେ ଶରଦରାସ ପରିବେଷଣ ପୂର୍ବକ ବାର୍ଷିକ ଅଭିନୟର ଶୁଭାରମ୍ଭ କରିଥାନ୍ତି । ଏହି ଅବସରରେ ୧୯୨୩ ମସିହା କୁମାର ପୂର୍ଣ୍ଣମୀରେ ବ୍ରଜବାବୁ ହନୁମାନ ମନ୍ଦିରରେ ମହାଲକ୍ଷ୍ମୀଙ୍କ ମୃଣ୍ମୟୀ ପୂଜାର ଆୟୋଜନ କରିଥିଲେ । ପୁରାଣ ବର୍ଣ୍ଣନାନୁସାରେ ପବିତ୍ର କୁମାର ପୂର୍ଣ୍ଣମୀରେ ମହାଲକ୍ଷ୍ମୀ ସମୁଦ୍ର ମନ୍ଥନରୁ ଗଜଲକ୍ଷ୍ମୀ ରୂପରେ ଆବିର୍ଭାବ ହୋଇଥିବାରୁ ହନୁମାନ ମନ୍ଦିର ପ୍ରାଙ୍ଗଣରେ ମୃଣ୍ମୟୀ ଗଜଲକ୍ଷ୍ମୀଙ୍କର ପୂଜା ଓ ରାସାଭିନୟ ଏହି କୁମାର ପୂର୍ଣ୍ଣିମାଠାରୁ ଆରମ୍ଭ କରାଯାଇଥିଲା । ଏଥିରେ ବ୍ରଜବାବୁଙ୍କର ଘନିଷ୍ଠ ସହଯୋଗୀ ଥିଲେ ବେବର୍ତ୍ତା ସାହିର ଗତିକୃଷ୍ଣ ପଟ୍ଟନାୟକ । ଉଭୟେ ମିଶି ମୂର୍ତ୍ତି ଗଢ଼ିଥିଲେ ଏବଂ ରାସଦଳର କଳାକାରବୃନ୍ଦଙ୍କଦ୍ୱାରା ସାଜସଜ୍ଜା ପ୍ରଭୃତି କରାଇଥିଲେ । କୁମାରପୂର୍ଣ୍ଣମୀଠାରୁ ସାତଦିନବ୍ୟାପୀ ବୈଦିକ ରୀତିରେ ପୂଜା ଅନୁଷ୍ଠିତ ହେବା ସହ ପ୍ରତି ସନ୍ଧ୍ୟାରେ ରାସଲୀଳା ପରିବେଷିତ ହୋଇଥିଲା । ସୌଭାଗ୍ୟର ବିଷୟ, ଏହି ମହୋତ୍ସବ ବିଶେଷ ଜନାଦୃତ ଲାଭ କରି ସାର୍ବଜନୀନ ମହୋତ୍ସବର ଗୌରବ ଲାଭ କରିଥିଲା । ଏହାର ଦୁଇବର୍ଷ ପରେ ତଳଗଡ଼ର ବେବର୍ତ୍ତା ସାହିରେ ଗଢ଼ିବାକୁ ମୃଣ୍ମୟୀ ଗଜଲକ୍ଷ୍ମୀ ପୂଜାର ଦ୍ୱିତୀୟ ଆସ୍ଥାନ ପ୍ରତିଷ୍ଠା କରିଥିଲେ । ମୃଦଙ୍ଗର ଦୁଇ ପାର୍ଶ୍ୱ ନିନାଦିତ ହେବା ସଦୃଶ ଉପରଗଡ଼ ଓ ତଳଗଡ଼ରେ ମହାସମାରୋହରେ ଗଜଲକ୍ଷ୍ମୀ ପୂଜା ଅନୁଷ୍ଠିତ ହୋଇ ଅଗଣିତ ଭକ୍ତ ଓ ଦର୍ଶକଙ୍କୁ ଆକର୍ଷଣ କଲା । ମହାସମାରୋହରେ ଦୁଇଟିଯାକ ଆସ୍ଥାନରେ ୧୯୩୭ ପର୍ଯ୍ୟନ୍ତ ପୂଜା ଅନୁଷ୍ଠିତ ହେବା ପରେ ୧୯୩୮ ମସିହାରେ ପ୍ରଜା ଆନ୍ଦୋଳନ ଯୋଗୁଁ ପୂଜା ବନ୍ଦ ହୋଇଗଲା । ୧୯୩୮ ମସିହା ସେପ୍ଟେମ୍ବର ମାସରୁ ପ୍ରଜା ଆନ୍ଦୋଳନ ଉଗ୍ରରୂପ ଧାରଣ କଲା ତଥା ଭୟରେ ଲୋକମାନେ ଲକ୍ଷ୍ମୀପୂଜା ବନ୍ଦ କରିବାକୁ ବାଧ୍ୟ ହେଲେ । କେତେକ ମହାନୁଭବ କଳସ ପୂଜା କରି ବିଧି ରକ୍ଷା କଲେ । ପୁନଶ୍ଚ ୧୯୪୦ ମସିହାରେ ସ୍ୱର୍ଗୀୟ ସଚ୍ଚିଦାନନ୍ଦ ସିଂହ ସାଆନ୍ତ ସାହି ବା ଜବାହରର ଚୌକସ୍ଥିତ ସୂଚଉପାଢ଼ୀରେ ଲକ୍ଷ୍ମୀପୂଜା ଆରମ୍ଭ କରିଥିଲେ । ତତ୍‌ପରବର୍ଷ ଅର୍ଥାତ୍ ୧୯୪୧ରେ ସ୍ୱର୍ଗୀୟ ନଟବର ଦେବତା ବ୍ୟକ୍ତିଗତ ପ୍ରଚେଷ୍ଟାରେ ମୀନାବଜାରଠାରେ ଲକ୍ଷ୍ମୀପୂଜା ଆରମ୍ଭ କଲେ, ଯାହାକି ୧୯୪୩ରେ ସାର୍ବଜନୀନ ପୂଜାର ମାନ୍ୟତା ଲାଭ କଲା । ୧୯୪୬ ମସିହା ବେଳକୁ ମୀନାବଜାର ଓ ଜବାହର ଚୌକ ଏହି ଦୁଇଟି ଅନୁଷ୍ଠାନରେ ଆଡ଼ମ୍ବର ସହକାରେ ମୃଣ୍ମୟୀ ଲକ୍ଷ୍ମୀପୂଜା ଓ ମିଳିତ ଭସାଣୀ ଉତ୍ସବ ଅନୁଷ୍ଠିତ ହୋଇଥିଲା । କ୍ରମେ ସର୍ବସାଧାରଣଙ୍କର ସାର୍ବଜନୀନ ଲକ୍ଷ୍ମୀପୂଜା ପ୍ରତି ଶ୍ରଦ୍ଧା ଓ ସହଯୋଗ ବୃଦ୍ଧି ପାଇଲା ।

ସ୍ୱାଧୀନତା ପରେ ସଂସ୍କୃତିର ଉତ୍ତରଣରେ ଲକ୍ଷ୍ମୀବଜାର, ଗଣେଶ ବଜାର, ମହାବୀର ବଜାର, କାଞ୍ଚନ ବଜାର, ଆନନ୍ଦବଜାର, କାରିଗର ସାହି, ବାଜିଚୌକ, ଗୁଡ଼ିଆନାଳୀ, ରାଧାକୃଷ୍ଣ ବଜାର, ପଦ୍ମବଜାର, ଜୁବୁଲିଟାଉନ୍-୧, କୁଞ୍ଜକାନ୍ତ, କୈବଲ୍ୟ ବଜାର, ଜୁବୁଲିଟାଉନ-୨, ସିମିଳିଆ, ଷ୍ଟେସନ ବଜାର, ରତ୍ନବଜାର, ଚନ୍ଦନବଜାର, କଲେଜ ରୋଡ଼, ବସଷ୍ଟାଣ୍ଡ, ଗାନ୍ଧୀ ବଜାର, ସ୍ୱପ୍ନେଶ୍ୱର ବଜାର (କୋରିଆଁ), ଦୁର୍ଗାବଜାର, କାଳିକାନଗର, ନେହେରୁବଜାର, ରାମେଶ୍ୱରପୁର, ଜୁବୁଲି ଟାଉନ, ଭଗବାନପୁର, ସରଜଙ୍ଗସାହି, ମହିଷିଆପାଟ ଓ ବୋରାପଦା ପ୍ରଭୃତି ବଜାର ତଥା ସାହିମାନଙ୍କରେ ଲକ୍ଷ୍ମୀପୂଜା ଅନୁଷ୍ଠିତ ହୋଇ ଏହା ସାର୍ବଜନୀନ ବାର୍ଷିକ ମହୋତ୍ସବର ଭବ୍ୟରୂପ ଗ୍ରହଣ କଲା । ଏଥିରେ ଅନ୍ୟ ଧର୍ମାବଲମ୍ବୀ ଭ୍ରାତୃବୃନ୍ଦ ସହଯୋଗ ଓ ସହାନୁଭୂତି ପ୍ରଦାନ କରି ଏହାକୁ ଏକ ଜାତୀୟ ସଂହତି ପ୍ରଦାୟକ ଗଣମହୋତ୍ସବ ରୂପେ

ଗୌରବାନ୍ୱିତ କଲେ । ସଂପ୍ରତି ଢେଙ୍କାନାଳ ଗଜଲକ୍ଷ୍ମୀ ପୂଜା ଓଡ଼ିଶାର ଏକ ମହାନ୍ ଧାର୍ମିକ ଓ ସାଂସ୍କୃତିକ ମହୋତ୍ସବର ମର୍ଯ୍ୟାଦା ଲାଭ କରିଛି । ଓଡ଼ିଶାର ସାଂସ୍କୃତିକ ଐତିହ୍ୟରେ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଥିବା ଏହି ମହୋତ୍ସବ ପ୍ରତିବର୍ଷ ଲକ୍ଷ ଲକ୍ଷ ଭକ୍ତ ଓ ଦର୍ଶକଙ୍କର ଆକର୍ଷଣ ହୋଇ ସେମାନଙ୍କ ମଧ୍ୟରେ କଲ୍ୟାଣମୟ ଚେତନା ସଂଚାର କରିଆସୁଛି । ଏପରିକି ଏହି ମହୋତ୍ସବ ଦେଖିବାକୁ ପଡ଼ୋଶୀରାଜ୍ୟ ଓ ଭାରତର ଅନ୍ୟାନ୍ୟ ଅଞ୍ଚଳରୁ ହଜାର ହଜାର ଯାତ୍ରୀ ଲକ୍ଷ୍ମୀପୂଜା ଅବସରରେ ଢେଙ୍କାନାଳ ଆଗମନ କରୁଛନ୍ତି ।

ଗଜଲକ୍ଷ୍ମୀ ପୂଜା ଆରମ୍ଭ ହେଲେ ହେମନ୍ତର ବିମଳ ପୂର୍ଣ୍ଣପ୍ରଭା ଓ ଗଜଲକ୍ଷ୍ମୀ ନିରାଜନାର ବିଚିତ୍ର ବର୍ଣ୍ଣବିଭାରେ ଢେଙ୍କାନାଳ ସହର ବିଭୋରିତ, ମୁଖରିତ ଓ ପ୍ରକମ୍ପିତ ହୋଇଉଠେ । ଜାତୀୟ ରାଜପଥ ଉପରେ ପୂର୍ବରେ କାଠଗଡ଼ାଠାରୁ ପଶ୍ଚିମରେ କୋରିଆ ପର୍ଯ୍ୟନ୍ତ ଦଶକିଲୋମିଟର ପରିବ୍ୟାପ୍ତ ଢେଙ୍କାନାଳ ଲକ୍ଷ୍ମୀପୂଜା ଅବସରରେ ଆକର୍ଷଣୀୟ ଆଲୋକମାଳା, ନଭଶ୍ଚୁମ୍ବୀତୋରଣ, ମନୋହାରିଣୀ ବିପଣୀବିନ୍ୟାସରେ ସୁଶୋଭିତ ହୋଇଯାଏ । ଦୋଳି, ପ୍ରଦର୍ଶନୀ, ମ୍ୟାଜିକ୍, ଚିଡ଼ିଆଖାନା, ସର୍କସ, କଣ୍ଢେଇନାଚ, ଯାତ୍ରାପାର୍ଟି ଓ ମେଳା ସମଗ୍ର ସହରାଞ୍ଚଳକୁ କୋଳାହଳମୟ କରିଦିଅନ୍ତି । ପ୍ରତ୍ୟେକଟି ପୂଜା ଆସ୍ଥାନ ଗଜଲକ୍ଷ୍ମୀଙ୍କର ପୂଜନ, ଅର୍ଚ୍ଚନ, ବନ୍ଦନ, ମନ୍ତ୍ରପାଠ, କୀର୍ତ୍ତନ ଓ ଭଜନରେ ଭକ୍ତିପ୍ଳାବିତ ହୋଇଉଠେ । ସହରର ପ୍ରତିଟି ପରିବାର ବନ୍ଧୁମିଳନ, ପ୍ରୀତି ସମ୍ଭାଷଣ, ଆତିଥ୍ୟ, ଉତ୍ସାହ, ଉଦ୍ଦୀପନା ଓ ଶୁଭେଚ୍ଛାରେ ଉତ୍ଫୁଲ୍ଲିତ ହୋଇଉଠେ । ସର୍ବତ୍ର ସଂସ୍କୃତିର ଆବେଗମୟ ଉଚ୍ଛ୍ୱାସ ସଂଚାରିତ ହୋଇଥାଏ । **ମହନୀୟତା ହେଉଛି, ଜାତି, ବର୍ଣ୍ଣ, ଧର୍ମ ଓ ସଂପ୍ରଦାୟର ଊର୍ଦ୍ଧ୍ୱରେ ରହି ଢେଙ୍କାନାଳବାସୀ ଏହି ମହୋତ୍ସବଟିକୁ ସରସ, ସୁନ୍ଦର, ସଂସ୍କୃତି ବିମଣ୍ଡିତ, ସଂହତି ସୁଶୋଭିତ ଏବଂ ସଂପ୍ରୀତି ସଂକୀର୍ତ୍ତିତ ଗଣମହୋତ୍ସବରେ ଭବ୍ୟ ରୂପ ପ୍ରଦାନ କରିବାକୁ ତତ୍ପର ହୋଇଉଠନ୍ତି ।**

ପ୍ରତ୍ୟେକ ପୂଜା ଆସ୍ଥାନରେ ପୂଜିତ ମୃଣ୍ମୟୀ ମହାଲକ୍ଷ୍ମୀ ମୂର୍ତ୍ତିରେ ଉତ୍କଳୀୟ କଳା ଓ ଭାସ୍କର୍ଯ୍ୟର ଚାତୁର୍ଯ୍ୟ ତଥା ବିଜ୍ଞାନର ବିସ୍ମୟ ପ୍ରକଟିତ ହୋଇଥାଏ । ବୈଦିକ ନୀତି, ଶାସ୍ତ୍ରୀୟ ଭକ୍ତି, ଲୌକିକରୀତି ଓ ବିମଳଭକ୍ତିରେ ପ୍ରତ୍ୟେକ ଆସ୍ଥାନରେ ପୂଜା ସଂପନ୍ନ ହୋଇଥାଏ । ପାରମ୍ପରିକ ବିଧିରେ ପୂଜା, ହୋମ, ସ୍ତବପାଠ, ପଦ୍ମାଭିଷେକ ପ୍ରଭୃତି ସହିତ ଦରିଦ୍ର ନରନାରାୟଣଙ୍କର ସେବା ପୂଜାର୍ଚ୍ଚନାର ମହତ୍ତ୍ୱ ବୃଦ୍ଧି କରିଥାଏ । ଭିନ୍ନ ଭିନ୍ନ ପୂଜାମଣ୍ଡପରେ ଲୋକମାତା ଭିନ୍ନ ଭିନ୍ନ ଭାବଭଙ୍ଗୀରେ ପୂଜା ପାଉଥାନ୍ତି । କେଉଁଠାରେ ମହାଲକ୍ଷ୍ମୀ ସାଗରସମ୍ଭୂତା ତ କେଉଁଠାରେ ପଦ୍ମହସ୍ତା, ପଦ୍ମାସୀନା, ଗଜାସୀନା, ଗଜବେଷ୍ଟିତା, ଦେବଗଣବନ୍ଦିତା, ସିଂହାସନାରୂଢ଼ା ଅଥବା ଶାମୁକା ମଧ୍ୟସ୍ଥା ରୂପରେ ପୂଜା ପାଉଥାନ୍ତି । ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ଲୋକସଂଗୀତ, ଲୋକନୃତ୍ୟ, ଓଡ଼ିଶୀ ନୃତ୍ୟ, ଗୋଷ୍ଠୀ ସଂଗୀତ, ନବରଙ୍ଗ ତଥା ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ଭକ୍ତ ଓ ଦର୍ଶକଙ୍କର ଆକର୍ଷଣ ହୋଇଥାଏ । ସନ୍ଧ୍ୟାଠାରୁ ମଧ୍ୟରାତ୍ରି ପର୍ଯ୍ୟନ୍ତ ଭକ୍ତ ଓ ଦର୍ଶକଙ୍କ ସଂଖ୍ୟା ଆଶାତୀତ ଭାବରେ ବୃଦ୍ଧି ପାଇଥାଏ । ମନେହୁଏ, ସତେ ଯେପରି ଜଗଜ୍ଜନନୀ ମହାଲକ୍ଷ୍ମୀ ଆପଣାର ଅଗଣିତ ସନ୍ତାନ ସନ୍ତତିଙ୍କ ସହ ଢେଙ୍କାନାଳରେ ପଦାର୍ପଣ କରି ଏହାକୁ ମର୍ତ୍ତ୍ୟବୈକୁଣ୍ଠ ଭାବରେ ମହିମାମଣ୍ଡିତ କରିଛନ୍ତି ।

୧୯୪୬ ମସିହାରୁ ଅଦ୍ୟାବଧି ଅନୁଷ୍ଠିତ ମିଳିତ ଭସାଣୀ ଉତ୍ସବ ଢେଙ୍କାନାଳ ଲକ୍ଷ୍ମୀପୂଜାକୁ ସାର୍ଥକ କରିଛି । **ଏକାଦଶ ଦିବସବ୍ୟାପୀ ଅନୁଷ୍ଠିତ ଏହି ଲକ୍ଷ୍ମୀପୂଜାର ଅନ୍ତିମ ଦିବସରେ ମିଳିତ ଭସାଣୀ ଉତ୍ସବ ଅନୁଷ୍ଠିତ ହୋଇଥାଏ । ଏହିଦିନ ସମସ୍ତ ମେଢ଼ ଢେଙ୍କାନାଳର ଇଷ୍ଟ ଶ୍ରୀବଳଦେବ ଜୀଉଙ୍କ ମନ୍ଦିର ପ୍ରାଙ୍ଗଣରେ ଏକତ୍ର ସେହି ସ୍ଥାନରୁ ମିଳିତ ଶୋଭାଯାତ୍ରା ଆରମ୍ଭ କରିଥାନ୍ତି ।** ଶୋଭାଯାତ୍ରା ରାଜପ୍ରାସାଦ, କୋର୍ଟଛକ, ଷ୍ଟାଡ଼ିୟମ, ହନୁମାନ ଛକ ଓ ପୂର୍ତ୍ତବିଭାଗ କାର୍ଯ୍ୟାଳୟ ସମ୍ମୁଖ ଦେଇ ମହାବୀର ବଜାର ଛକଠାରେ ମୁଖ୍ୟ ବଜାରରେ ପ୍ରବେଶ ପୂର୍ବକ ଦୀର୍ଘ ଛଅ କିଲୋମିଟର ବ୍ୟାପୀ ନଗରପଥ ଅତିକ୍ରମ କରି ସହର ଉପକଣ୍ଠ ନଦୀରେ ମୂର୍ତ୍ତି ବିସର୍ଜନ କରାଯାଏ । ମିଳିତ ଶୋଭାଯାତ୍ରାରେ ନାମ ସଂକୀର୍ତ୍ତନର ମଧୁର ମୂର୍ଚ୍ଛନା, ଚଳଚ୍ଚିତ୍ର ତଥା ଆଧୁନିକ ସଂଗୀତର ବେସୁରା ରାଗିଣୀ, ଆଧୁନିକ ବାଦ୍ୟର ସୁମଧୁର ଧ୍ୱନି, ଶାସ୍ତ୍ରୀୟ ରୀତିରେ ଉଚ୍ଚାଙ୍ଗ ଘଣ୍ଟବାଦ୍ୟ, ମାଙ୍ଗଳିକ ଶଙ୍ଖଧ୍ୱନି ତଥା ପାରମ୍ପରିକ ଲୋକନୃତ୍ୟ ଅତୀବ ଆକର୍ଷଣୀୟ ଓ ଉପଭୋଗ୍ୟ ହୋଇଥାଏ । ଓଡ଼ିଶାର ଗୌରବୋଜ୍ଜ୍ୱଳ ସାଂସ୍କୃତିକ ମହୋତ୍ସବର ଏହି ଶେଷ ଦୃଶ୍ୟ ଦର୍ଶନ କରିବାକୁ ପ୍ରାୟ ପାଞ୍ଚଲକ୍ଷ ଦର୍ଶକ ଏକତ୍ରିତ ହୋଇଥାନ୍ତି ।

ଓଡ଼ିଶାର ସାଂସ୍କୃତିକ ଐତିହ୍ୟରେ ଢେଙ୍କାନାଳ ଲକ୍ଷ୍ମୀପୂଜା ଏକ ସଂସ୍କୃତି, ସଂହତି, ସଂପ୍ରୀତି ସଂକୀର୍ତ୍ତିତ ମହୋତ୍ସବ । ଏହା ଅନ୍ୟାନ୍ୟ ସ୍ଥାନରେ ଅନୁଷ୍ଠିତ ମୃଣ୍ମୟୀ ପୂଜାର ଅନୁକରଣରେ ଅନୁଷ୍ଠିତ ନହୋଇ ଓଡ଼ିଶାର ସାଂସ୍କୃତିକ ଓ ସାମାଜିକ ପରମ୍ପରାରେ ଆତ୍ମିକ ସନନ୍ଦ ଭାବେ ପ୍ରତିଭାତ । ଏହି ସାର୍ବଜନୀନ ସାଂସ୍କୃତିକ ମହୋତ୍ସବରେ ଓଡ଼ିଶାର ଲୋକଧର୍ମ ତଥା ସାମାଜିକ ଜୀବନର ବୈଚିତ୍ର୍ୟ ପ୍ରତିଫଳିତ । ମହନୀୟତା ହେଉଛି, ସାଂପ୍ରଦାୟିକ ବିଭେଦତାଠାରୁ ଊର୍ଦ୍ଧ୍ୱରେ ସ୍ଥିତ ଏହି ମହୋତ୍ସବରେ ଉତ୍କଳୀୟ ସଂସ୍କୃତିର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ପ୍ରତିଫଳିତ ।

ଓରିଏଣ୍ଟାଲ ଇନ୍ସୁରାନ୍ସ ବିଲଡ଼ିଂ
ଦକ୍ଷିଣକାଳୀ ରୋଡ଼, ଢେଙ୍କାନାଳ

# ମୁକ୍ତାକାଶ କାରାଗାର ଓ ଓଡ଼ିଶା

ହେମନ୍ତ କୁମାର କର




**ରୁ**ଦ୍ଧ କାରାଗାର ଚାରିକାନ୍ଥ ଭିତରେ ବନ୍ଦୀ ଜୀବନ ବିତାଉଥିବା ମଣିଷର ବ୍ୟକ୍ତିତ୍ୱ ସହଜରେ ପ୍ରସ୍ଫୁଟିତ ହୋଇପାରେ ନାହିଁ । ଏଣୁ ମୁକ୍ତ ପରିବେଶ ମଧ୍ୟରେ ସଂଶୋଧିତ କାର୍ଯ୍ୟକ୍ରମ ମାଧ୍ୟମରେ ସେମାନଙ୍କୁ ସମାଜର ମୁଖ୍ୟଧାରାରେ ସାମିଲ କରାଇବା ଉପରେ ଆଧୁନିକ ଯୁଗରେ ବିଶେଷ ଗୁରୁତ୍ୱାରୋପ କରାଯାଉଛି ଏବଂ ଏପ୍ରକାର ଚିନ୍ତାଧାରାରୁ ହିଁ ମୁକ୍ତାକାଶ କାରାଗାରର ସୃଷ୍ଟି । ବିଗତ ଶତାବ୍ଦୀର ପ୍ରଥମ ଭାଗରେ ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ, ଅଷ୍ଟ୍ରେଲିଆ ଆଦି କେତୋଟି ରାଷ୍ଟ୍ରରେ ମୁକ୍ତାକାଶ କାରାଗାରର କିଛିଟା ଛାପ ପରିଲକ୍ଷିତ ହୋଇଥିଲେ ହେଁ ୧୯୫୨ ମସିହାରେ ନେଦରଲ୍ୟାଣ୍ଡର ହେଗ୍‌ଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ସମ୍ମିଳନୀରେ ଏ ସଂକ୍ରାନ୍ତୀୟ ଏକ ପ୍ରସ୍ତାବ ଗୃହୀତ ହେବା ଉତ୍ତାରେ ଉକ୍ତ ପରୀକ୍ଷାର ନୂତନ ରୂପରେଖ ଦୃଷ୍ଟିଗୋଚର ହୁଏ ଅନ୍ୟାନ୍ୟ ଦେଶରେ ।

ମୁକ୍ତାକାଶ କାରାଗାରର ସଂଜ୍ଞା ନିରୂପଣ କରିବାକୁ ଯାଇ ଦଣ୍ଡ-ବିଜ୍ଞାନୀଗଣ ଭିନ୍ନ ଭିନ୍ନ ମତବ୍ୟକ୍ତ କରିଅଛନ୍ତି । କେତେକଙ୍କ ଭାଷାରେ ଏହା ମୁକ୍ତାକାଶ କାରାଗାର ତ' ଆଉ କାହାରି ମତରେ ମୁକ୍ତାକାଶ ଶିବିର ଅଟେ । ପୁଣି ଅନ୍ୟ କେତେକ ବୁଦ୍ଧିଜୀବୀ ଏହାକୁ ପ୍ୟାରୋଲ ଶିବିର ବୋଲି ଅଭିହିତ କରିଛନ୍ତି । ତେବେ ସାଧାରଣ ଅର୍ଥରେ କଡ଼ା ସୁରକ୍ଷାବିହୀନ ଏହା ଏଭଳି ଏକ ସଂଶୋଧନଗୃହ ଯେଉଁଠି ଦୀର୍ଘ ସମୟ ଜେଲ ସଜା କାଟିବା ପରେ ବନ୍ଦୀଟି ଭର୍ତ୍ତି ହେବା ସାଙ୍ଗକୁ ବିଭିନ୍ନ ଧନ୍ଦାମୂଳକ କାର୍ଯ୍ୟକ୍ରମରେ ନିଜକୁ ସାମିଲ କରାଏ, ଯାହାକି ପରବର୍ତ୍ତୀ ପର୍ଯ୍ୟାୟରେ ଆତ୍ମନିର୍ଭରଶୀଳ ହେବା ଦିଗରେ ସହାୟକ ହୁଏ ।

ମୁକ୍ତାକାଶ କାରାଗାର ପ୍ରତିଷ୍ଠା ପଛରେ ଯେଉଁସବୁ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ରହିଛି, ତାହାହେଲା :

୧. ନିମ୍ନତମ ନିରାପତ୍ତା ବ୍ୟବସ୍ଥା ମଧ୍ୟରେ ଅନ୍ତେବାସୀଙ୍କ ତତ୍ତ୍ୱାବଧାନ

୨. ଅନ୍ତେବାସୀଙ୍କ ଶାରୀରିକ ଓ ମାନସିକ ବିକାଶ ଉପରେ ଅଧିକ ଗୁରୁତ୍ୱ ଆରୋପ

୩. ଅନ୍ତେବାସୀଙ୍କୁ ସେମାନଙ୍କ ସାମାଜିକ ଦାୟିତ୍ୱ ସଂପର୍କରେ ସଚେତନ କରାଇବା

୪. ଅନ୍ତେବାସୀଙ୍କୁ ବିଭିନ୍ନ ଧନ୍ଦାମୂଳକ ଶିକ୍ଷା / ତାଲିମ ପ୍ରଦାନ କରିବା

୫. ଆର୍ଥିକ ସହାୟତାପୂର୍ବକ ସେମାନଙ୍କ ସକାଶେ ବ୍ୟାଙ୍କ ଋଣର ସୁବନ୍ଦୋବସ୍ତ କରିବା

୬. ମଜୁରୀଭିତ୍ତିକ କାର୍ଯ୍ୟରେ ଅନ୍ତବାସୀଙ୍କୁ ନିୟୋଜିତ କରିବା

୭. ସେମାନଙ୍କୁ ସେମାନଙ୍କ ପରିବାର ସଦସ୍ୟ / ଜ୍ଞାତିକୁଟୁମ୍ବଙ୍କ ସହ ସାକ୍ଷାତ ଆଲୋଚନାର ସୁଯୋଗ ଦେବା

୮. ସାଧାରଣ ଜନତାଙ୍କ ମେଳରେ ବିଭିନ୍ନ ଧାର୍ମିକ, ନୈତିକ ତଥା ସାମାଜିକ କାର୍ଯ୍ୟକ୍ରମରେ ଯୋଗଦେବା ସକାଶେ ସୁଯୋଗ ପ୍ରଦାନ କରିବା ଇତ୍ୟାଦି ।

ଉଲ୍ଲେଖନୀୟ ବିଷୟ ଏହି କି' ସାଧାରଣ କାରାଗାର ଭଳି ମୁକ୍ତାକାଶ କାରାଗାରରେ କୌଣସି ସୁରକ୍ଷା ପାଚେରୀ ନଥାଏ । ଏପରିକି କେତେକ କ୍ଷେତ୍ରରେ ଲୁହା ତାରବାଡ଼ ମଧ୍ୟ ଦେଖିବାକୁ ମିଳେ ନାହିଁ । ରୁଦ୍ଧ କାରାଗାରରେ ସଜା କାଟୁଥିବା

କଏଦୀଙ୍କ ମଧ୍ୟରୁ ଯେଉଁମାନେ ସଦ୍‌ଗୁଣ, ସଚ୍ଚରିତ୍ର ତଥା ଉତ୍ତମ ବ୍ୟବହାରର ଅଧିକାରୀ, କେବଳ ସେମାନଙ୍କୁ ହିଁ ମୁକ୍ତାକାଶ କାରାଗାରରେ ଭର୍ତ୍ତି କରି ରଚନାତ୍ମକ କାର୍ଯ୍ୟରେ ନିୟୋଜିତ କରାଯାଏ । ଏଭଳି ଅନୁଷ୍ଠାନରେ ଅବସ୍ଥାପିତ ଅଧିକାରୀ / କର୍ମଚାରୀଙ୍କ ପଦବୀର ଭିନ୍ନ ଭିନ୍ନ ନାମକରଣ ସ୍ଥଳବିଶେଷରେ ଦେଖିବାକୁ ମିଳେ । ୱାର୍ଡ଼ର, ହେଡ଼ୱାର୍ଡ଼ର, ଜେଲ୍‌ର ତଥା ସୁପରିଟେଣ୍ଡେଣ୍ଟ ଆଦିଙ୍କୁ ଯଥାକ୍ରମେ ସୁପରିଭାଇଜର, ହେଡ଼ସୁପରିଭାଇଜର, ୱେଲଫେୟାର ଅଫିସର୍ ଓ ଚିଫ୍ ୱେଲଫେୟାର ଅଫିସର ଭାବେ ସମ୍ବୋଧିତ କରାଯାଇଥାଏ । ସେହିଭଳି କଏଦୀଙ୍କୁ ଅଭିହିତ କରାଯାଏ 'ମଜଦୁର' ରୂପେ । ଅତୀତର ଜେଲ୍-ଅଭିଜ୍ଞତାକୁ ପାଶୋରି ମୁକ୍ତାକାଶ ଅନୁଷ୍ଠାନରୁ ଖଲାସ ହେବା ଉତ୍ତାରେ କୌଣସି କଳଙ୍କର ଛାପ ବହନ ନକରି କିଭଳି ସମାଜର ମୁଖ୍ୟସ୍ରୋତରେ ଏହି ଅନ୍ତେବାସୀଗଣ ସାମିଲ ହୋଇପାରିବେ, ତାହା ହିଁ ହେଉଛି ଉକ୍ତ ନାମାଙ୍କନର ମୂଳ ଉଦ୍ଦେଶ୍ୟ ।

ଦଣ୍ଡ-ବିଜ୍ଞାନର ସଂଶୋଧନାତ୍ମକ ଆଭିମୁଖ୍ୟ ନେଇ ପାଶ୍ଚାତ୍ୟ ରାଷ୍ଟ୍ରରେ ଯେଉଁ ପରୀକ୍ଷା-ନିରୀକ୍ଷା ଆରମ୍ଭ ହୋଇଥିଲା, ସମୟକ୍ରମେ ତାର ପ୍ରଭାବ ପଡ଼ିବାକୁ ଲାଗିଲା ଭାରତବର୍ଷରେ । ଅପରାଧୀଙ୍କ କେବଳ କାରା-କୋଠରୀ ମଧ୍ୟକୁ ଠେଲି ଦେଲେ ଅପରାଧ-ସମସ୍ୟାର ସମାଧାନ ହୋଇପାରିବ ନାହିଁ – ଏକଥା ବୁଦ୍ଧିଜୀବୀଗଣ ହୃଦୟଙ୍ଗମ କରିବାକୁ ଲାଗିଲେ । ସମାଜକୁ ଅପରାଧୀଙ୍କ କବଳରୁ ରକ୍ଷା କରିବା ହେଉଛି ଆଇନର ମୂଳଲକ୍ଷ୍ୟ ଏବଂ ଏହା ହାସଲ କରିବାକୁ ହେଲେ ସହ-ନାଗରିକଙ୍କପ୍ରତି ଅପରାଧୀର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆବଶ୍ୟକ । ଏଇଠି ଉଲ୍ଲେଖ କରାଯାଇପାରେ କି' ଭାରତରେ କାରାପ୍ରଶାସନରେ ସଂସ୍କାର ଆଣିବା ସକାଶେ ବ୍ରିଟିଶ ଶାସନ କାଳରେ ଗଠିତ ଅଲ୍‌ଇଣ୍ଡିଆ ଜେଲ୍ କମିଟି ତା'ର ରିପୋର୍ଟରେ କେତୋଟି ପ୍ରସ୍ତାବ ଉପସ୍ଥାପନ କରିଥିଲେ ହେଁ ତାହା କାର୍ଯ୍ୟକାରୀ ହୋଇ ପାରିନଥିଲା ତତ୍କାଳୀନ ସରକାରଙ୍କ ଦମନ ନୀତି ଯୋଗୁଁ । ତେବେ ଦେଶ ସ୍ୱାଧୀନ ହେବାପରେ ବନ୍ଦୀ-ସମସ୍ୟାର ମୁକାବିଲା କରିବା ଦିଗରେ ସରକାରଙ୍କ ନୀତିରେ ମୌଳିକ ପରିବର୍ତ୍ତନ ଲକ୍ଷ୍ୟ କରାଗଲା । ୧୯୫୨ ମସିହାରେ ମିଳିତ ଜାତିସଂଘର ଜଣେ ଉଦ୍ୟୋଗ ବିଶାରଦ ୱାଲଟର ରେକ୍‌ଲେସ୍ ଭାରତଗସ୍ତ ଉତ୍ତାରେ କାରାପ୍ରଶାସନ ଉପରେ ଏକ ଉଚ୍ଚକୋଟୀର ରିପୋର୍ଟ ସରକାରଙ୍କଠାରେ ଦାଖଲ କରିଥିଲେ । ଫଳସ୍ୱରୂପ ଅଲ୍‌ଇଣ୍ଡିଆ ଜେଲ୍ କମିଟି ଗଠିତ ହେଲା ଏବଂ ଏହି କମିଟି ତିନିବର୍ଷ କାର୍ଯ୍ୟକାଳ ଶେଷରେ କାରାସଂସ୍କାର ସମ୍ବନ୍ଧୀୟ ବହୁ ସୁଚିନ୍ତିତ ମତ ପ୍ରଦାନ କରିଥିଲା । ତାହାରି ମଧ୍ୟରୁ ଗୋଟିଏ ହେଲା ମୁକ୍ତାକାଶ କାରାଗାର ପ୍ରତିଷ୍ଠା । ଭାରତ ସରକାରଙ୍କ ସାହାଯ୍ୟ ଓ ପ୍ରୋତ୍ସାହନ ଯୋଗୁଁ ପରବର୍ତ୍ତୀ କାଳରେ ଏ ପ୍ରକାର ଅନୁଷ୍ଠାନ ମୁଣ୍ଡଟେକି ଉଠିଲା ବିଭିନ୍ନ ରାଜ୍ୟରେ ।

ମୁକ୍ତାକାଶ କାରାଗାରର ଅନ୍ୟ ଏକ ବୈଶିଷ୍ଟ୍ୟ ଏହି କି' ଏହାର ପରିମିତ ଇଲାକା ମଧ୍ୟରେ ଛୋଟ ଛୋଟ କୁଟୀର ନିର୍ମାଣ କରାଯାଇଥାଏ, ଯେଉଁଠି ଅନ୍ତେବାସୀ ଓ ତାର ପରିବାର ସଦସ୍ୟଙ୍କୁ ଅଳ୍ପଦିନ ସକାଶେ ଏକତ୍ର ରହିବାର ସୁଯୋଗ ଉପଲବ୍ଧ ହୁଏ । ପୁନଶ୍ଚ, ରୁଦ୍ଧ କାରାଗାର କୋଠରୀ ମଧ୍ୟରେ ଦିନ କାଟୁଥିବା ବ୍ୟକ୍ତିକୁ ଉତ୍ତମକାର୍ଯ୍ୟ ଓ ବ୍ୟବହାର ସକାଶେ ମୋଟ ଦଣ୍ଡାଦେଶରୁ ଯେଉଁ ରିହାତି ମିଳେ, ତାହାର ମାତ୍ରା ମୁକ୍ତାକାଶ କାରାଗାର ଅନ୍ତେବାସୀଙ୍କ କ୍ଷେତ୍ରରେ ଅଧିକ ଅଟେ । ତୃତୀୟରେ, ଏହି ଅନୁଷ୍ଠାନରେ ରହୁଥିବା ବ୍ୟକ୍ତିଙ୍କ ଦୈନିକ ମଜୁରୀହାର ବାହାର ଲୋକଙ୍କ ମଜୁରୀ ସହ ପ୍ରାୟତଃ ସମାନ ଅଟେ ।

**ଆମ ରାଜ୍ୟରେ ଥିବା ଏକମାତ୍ର ମୁକ୍ତାକାଶ କାରାଗାର ପ୍ରତିଷ୍ଠିତ ହୁଏ ବିଗତ ଶତାବ୍ଦୀର ଅଶୀଦଶକର ଶେଷ ଭାଗରେ ।** ଭୁବନେଶ୍ୱରଠାରୁ ୨୨ କି.ମି. ଦୂର ଛତାବର ନିକଟସ୍ଥ ଜାମୁଝରୀଠାରେ ବିସ୍ତୀର୍ଣ୍ଣ ୧୦୭ ଏକର ଜମି ଉପରେ ଗଢ଼ି ଉଠିଥିବା ଏହି ଅନୁଷ୍ଠାନ ବିଭିନ୍ନ ଆନୁଷଙ୍ଗିକ ଅସୁବିଧା ଯୋଗୁଁ କାର୍ଯ୍ୟକ୍ଷମ ହୋଇପାରିନଥିଲା । **ଅବଶ୍ୟ ୧୯୯୧ ମସିହାରେ ଗଞ୍ଜାମ, ଫୁଲବାଣୀ ଓ ନୟାଗଡ଼ ଜିଲ୍ଲାର ଏଗାର ଜଣ ଦୁର୍ଦ୍ଧର୍ଷ ଡକାୟତ ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ବିଜୁ ପଟ୍ଟନାୟକଙ୍କ ସମ୍ମୁଖରେ ଆତ୍ମସମର୍ପଣ କରିବା ପରେ ସେମାନଙ୍କୁ ଉକ୍ତ ଅନୁଷ୍ଠାନରେ ରଖାଯାଇଥିଲା କିଛିଦିନ ସକାଶେ ।** ତେବେ ଜଳ, ବିଦ୍ୟୁତ୍ ଆଦିର ସୁବିଧା ନଥିବା କାରଣରୁ ପରବର୍ତ୍ତୀ କାଳରେ ସେମାନଙ୍କୁ ସ୍ଥାନାନ୍ତରିତ କରାଯାଇଥିଲା ଅନ୍ୟାନ୍ୟ ଜେଲକୁ । ଦୀର୍ଘ ଏକଦଶନ୍ଧିରୁ ଅଧିକ କାଳ ପରିତ୍ୟକ୍ତ ଅବସ୍ଥାରେ ପଡ଼ି ରହିବା ପରେ ଉକ୍ତ ଅନୁଷ୍ଠାନ ଗତ ୨୦୦୩ ମସିହାରୁ ଚଳଚଞ୍ଚଳ ହୋଇଉଠିଛି । ଆଜୀବନ ଜେଲ ଦଣ୍ଡ ଭୋଗ କରୁଥିବା କଏଦୀଙ୍କ ମଧ୍ୟରୁ ଯେଉଁମାନେ ଅନ୍ୟୁନ ୧୦ ବର୍ଷ ସଜା କଟେଇ ସାରିଲେଣି ତଥା ଜେଲ ରହଣି କାଳ ମଧ୍ୟରେ ଉତ୍ତମ ବ୍ୟବହାର କରିଛନ୍ତି, ସେମାନଙ୍କୁ ଉକ୍ତ ମୁକ୍ତାକାଶ କାରାଗାରରେ ଅବସ୍ଥାପିତ କରାଯାଉଛି, ତାହାପୁଣି ସଂପୃକ୍ତ ଜେଲ୍ ଅଧୀକ୍ଷକଙ୍କ ସୁପାରିଶକ୍ରମେ । ସ୍ୱଗୃହ ବାହୁଡ଼ିବା ଉତ୍ତାରେ ସ୍ୱାବଲମ୍ବୀ ହେବାପୂର୍ବକ

ଆପଣା ପରିବାରର ଭରଣପୋଷଣ କିପରି ସୂଚାରୁରୂପେ ସଂପାଦନ କରିବେ – ତାହାକୁ ଦୃଷ୍ଟିରେ ରଖି ସେମାନଙ୍କୁ ବିଭିନ୍ନ ଧନ୍ଦାମୂଳକ କାର୍ଯ୍ୟରେ ନିୟୋଜିତ କରାଯାଉଛି । ଅନୁଷ୍ଠାନ ମଧ୍ୟରେ ଗଢ଼ି ଉଠିଥିବା ବିଭିନ୍ନ କୁଟୀରଶିଳ୍ପ ମଧ୍ୟରେ ସିଲାଇ, ହସ୍ତତନ୍ତ ଗୋପାଳନ, ପନିପରିବା ଚାଷ, ଚାରା ଉଦ୍ୟାନ, ମହମବତୀ, ଅଗରବତୀ, ଫିନାଇଲ, ଖଲିପତ୍ର ତିଆରି ଅନ୍ୟତମ । ତାଲିମପ୍ରାପ୍ତ ଅନ୍ତେବାସୀଙ୍କ ଶ୍ରମ ବିନିମୟରେ ଉତ୍ପାଦିତ ସାମଗ୍ରୀ ବାହାର ବଜାରକୁ ଛଡ଼ା ଯାଇ ସରକାରଙ୍କ ରାଜସ୍ୱ ଆୟକୁ ବୃଦ୍ଧି କରାଯାଇପାରିଛି ।

ଜାମୁଝରୀସ୍ଥିତ ବିଜୁ ପଟ୍ଟନାୟକ ମୁକ୍ତାକାଶ କାରାଗାରର ପ୍ରାୟ ତିରିଶ ଏକର ଜମି ଉପରେ ଉତ୍କଳ କୃଷି ଓ ପଶୁପାଳନ ବିଶ୍ୱବିଦ୍ୟାଳୟ, ଓଡ଼ିଶା ଔଷଧୀୟ ବୃକ୍ଷ ଗବେଷଣା ବୋର୍ଡ଼ ତଥା ଭାରତ ସରକାରଙ୍କ ପରିତ୍ୟକ୍ତ ଜମିର ଉନ୍ନତିକରଣ ନିମନ୍ତେ ଗଠିତ ବୋର୍ଡ଼ର ପରାମର୍ଶ ଅନୁଯାୟୀ ବିରଳ ଔଷଧୀୟ ଗୁଣଯୁକ୍ତ ବୃକ୍ଷଲତାଗୁଳ୍ମର ଏକ ବଡ଼ ଉଦ୍ୟାନ ପ୍ରତିଷ୍ଠା କରାଯାଇଛି । ଏଥିସକାଶେ ଭାରତର ମହାମହୀମ ରାଷ୍ଟ୍ରପତି ତିରିଶ ଲକ୍ଷ ଟଙ୍କା ମଂଜୁର କରିଛନ୍ତି, ଯାହାକି ପର୍ଯ୍ୟାୟକ୍ରମେ ରାଜ୍ୟ ସରକାରଙ୍କ ହସ୍ତଗତ ହୋଇଛି ।

ଇତିମଧ୍ୟରେ ଉକ୍ତ ଅନୁଷ୍ଠାନ ପରିସର ମଧ୍ୟରେ ଦୀର୍ଘବର୍ଷ ଧରି ଲାଗି ରହିଥିବା ଜଳ ସମସ୍ୟା କିଛିମାତ୍ରାରେ ଦୂରୀଭୂତ ହେବାସାଙ୍ଗକୁ ଅନୁଷ୍ଠାନକୁ ବିଦ୍ୟୁତ୍ ସଂଯୋଗୀକରଣ କରାଯାଇ ପାରିଛି । ଅପରାଧ ଦୁନିଆଠାରୁ ଦୂରରେ ରଖି ଅନ୍ତେବାସୀଙ୍କ ମନରେ ଧାର୍ମିକ ତଥା ଆଧ୍ୟାତ୍ମିକ ଭାବନା ଜାଗ୍ରତ କରାଇବା ଉଦ୍ଦେଶ୍ୟରେ ଅନୁଷ୍ଠାନ ପରିସର ମଧ୍ୟରେ ନିର୍ମାଣ କରାଯାଇଛି ଏକ ଦେବାଳୟ । ଆଗାମୀ ଦିନରେ ମହୁ ତଥା ଛତୁଚାଷ, ଫଳବଗିଚା ଭଳି ବ୍ୟବସାୟିକ ପ୍ରତିଷ୍ଠାନ, ଆୟୁର୍ବେଦୀୟ ଔଷଧ ପ୍ରସ୍ତୁତ କାରଖାନା ତଥା ଚିକିତ୍ସାଳୟ, ଜୈବସାର ଉତ୍ପାଦନ କେନ୍ଦ୍ର ଆଦି ଗଢ଼ି ଉଠିବାର ଯୋଜନା ରହିଛି ।

ଜାମୁଝରୀସ୍ଥିତ ମୁକ୍ତାକାଶ କାରାଗାର କୌଣସି ପାଚେରୀ ଦ୍ୱାରା ଆବଦ୍ଧ ନୁହେଁ । ଅନ୍ତେବାସୀଙ୍କ ଶୟନ ପ୍ରକୋଷ୍ଠ ଚାରିପଟେ ନାହିଁ କଡ଼ା ସୁରକ୍ଷା–ବ୍ୟବସ୍ଥା । ଓଡ଼ିଶାର ବିଭିନ୍ନ ଜେଲରୁ ବଛାବଛା ପ୍ରାୟ ଶହେ ଜଣ ବନ୍ଦୀ ଏବେ ସେଠାରେ ବସବାସ କରୁଛନ୍ତି । ସ୍ଥାନୀୟ ନାଗରିକଙ୍କ ସହ ମିଳାମିଶାରେ କୌଣସି ପ୍ରତିବନ୍ଧକ ନାହିଁ । ତେବେ ଅନୁଷ୍ଠାନ ଛାଡ଼ି ବାହାରକୁ ଯିବାକୁ ହେଲେ କର୍ତ୍ତୃପକ୍ଷଙ୍କ ଅନୁମତି ଆବଶ୍ୟକ । ଅନୁଷ୍ଠାନରୁ ଅନ୍ତେବାସୀଙ୍କ ପଳାୟନ ଘଟଣା ଅତ୍ୟନ୍ତ ନଗଣ୍ୟ ଅଟେ । ପ୍ରକାଶ ଥାଉ କି' ଏ ପ୍ରକାର ଅନୁଷ୍ଠାନରେ ଭର୍ତ୍ତି ହୋଇଥିବା ବନ୍ଦୀମାନଙ୍କ ଆଚରଣରେ ବ୍ୟତିକ୍ରମ ପରିଲକ୍ଷିତ ହେଲେ ସେମାନଙ୍କୁ ପୁନର୍ବାର ରୁଦ୍ଧ କାରାଗାରକୁ ଫେରାଇ ନେବା ବିଷୟ ନିୟମରେ ଉଲ୍ଲେଖ ରହିଛି । ଜାମୁଝରୀସ୍ଥିତ ମୁକ୍ତାକାଶ କାରାଗାରର ଅନ୍ତେବାସୀଙ୍କ ଉନ୍ନତି ନିମନ୍ତେ ଏକ 'ବନ୍ଦୀ କଲ୍ୟାଣ ପାଣ୍ଠି' ଗଠନ କରାଯାଇଛି । ଯେକୌଣସି ବ୍ୟକ୍ତି ବା ଅନୁଷ୍ଠାନ ଚାହିଁଲେ ଉକ୍ତପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରିପାରିବେ ।

ଯେତେବେଳେ ରାଜ୍ୟ ତଥା ଦେଶର ଅଧିକାଂଶ ଜେଲ ନିର୍ଦ୍ଧାରିତ ସାମର୍ଥ୍ୟଠାରୁ ଯଥେଷ୍ଟ ଅଧିକ ସଂଖ୍ୟକ ବନ୍ଦୀଙ୍କଦ୍ୱାରା ଭରପୂର, ଯେତେବେଳେ ସେମାନଙ୍କ ରକ୍ଷଣାବେକ୍ଷଣ ବାବଦ ଖର୍ଚ୍ଚ ସରକାରଙ୍କ ଉପରେ ଏକ ବିରାଟ ବୋଝ ସଦୃଶ, ସେତେବେଳେ ମୁକ୍ତାକାଶ କାରାଗାରର ପ୍ରାସଙ୍ଗିକତା ବିଚାରସାପେକ୍ଷ । ରୁଦ୍ଧ କାରାଗାରରେ ସଜ୍ଜା କଟାଇ ସ୍ୱଗୃହ ବାହୁଡ଼ିବା ସମୟ ଭିତରେ ଏହା ଏକ ମଧ୍ୟବର୍ତ୍ତୀ ସ୍ତର, ଯେଉଁଠି ବନ୍ଦୀଟି ବୈଷୟିକ ଜ୍ଞାନକୌଶଳ ଆହରଣ କରି ଭବିଷ୍ୟତରେ ଆତ୍ମନିର୍ଭରଶୀଳ ହେବା ଦିଗରେ ନିଜକୁ ପ୍ରସ୍ତୁତ କରେ । ସେତେବେଳେ ତା' ମଥାରେ ନଥାଏ କଳଙ୍କର ଛାପ । ସମାଜର ମୂଳ–ପ୍ରବାହରେ ନିଜକୁ ସାମିଲ କରି ଜୀବନ ବିତାଏ ଅନ୍ୟ ସାଧାରଣ ନାଗରିକ ଭଳି । ଏସବୁ ଦୃଷ୍ଟିରୁ ଜେଲ ସଂସ୍କାର କ୍ଷେତ୍ରରେ ମୁକ୍ତାକାଶ କାରାଗାର ବା ଶିବିରର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଅସ୍ୱୀକାର କରାଯାଇନପାରେ ।

ଭାରତର ବିଭିନ୍ନ ପ୍ରାନ୍ତରେ ମୁକ୍ତାକାଶ କାରାଗାରର କାର୍ଯ୍ୟକାରିତା ହିଁ ଏଭଳି ଅନୁଷ୍ଠାନର ଉପାଦେୟତାକୁ ପ୍ରମାଣସିଦ୍ଧ କରିଅଛି । ଅତଏବ, ଦେଶର ସମସ୍ତ ପ୍ରଦେଶରେ ଏ ପ୍ରକାର ସଂଶୋଧନାଗାର ଅଧିକ ସଂଖ୍ୟାରେ ଗଢ଼ି ଉଠିବା ଉଚିତ । ଆନନ୍ଦର ବିଷୟ ଏହି କି ଜାମୁଝରୀସ୍ଥିତ ବିଜୁ ପଟ୍ଟନାୟକ ମୁକ୍ତାକାଶ କାରାଗାରର ସଫଳତା ପରେ ଆମ ରାଜ୍ୟ ସରକାର ଯଥାକ୍ରମେ ବ୍ରହ୍ମପୁର ଓ ସମ୍ବଲପୁରଠାରେ ଆଉ ଦୁଇଟି ଏଭଳି ଅନୁଷ୍ଠାନ ସ୍ଥାପନ କରିବାକୁ ଯାଉଛନ୍ତି । ତେବେ ମହିଳାବନ୍ଦୀଙ୍କ ଆବଶ୍ୟକତାକୁ ଦେଖି ଖାସ୍ ସେମାନଙ୍କ ସକାଶେ ସ୍ୱତନ୍ତ୍ର ମୁକ୍ତାକାଶ କାରାଗାର ପ୍ରତିଷ୍ଠା ହେବା ବାଞ୍ଛନୀୟ । ଦୁର୍ଭାଗ୍ୟବଶତଃ ଏ ପ୍ରକାର ପରିକଳ୍ପନା କୌଣସି ରାଜ୍ୟ ସରକାରଙ୍କ ଧ୍ୟାନ ଆକର୍ଷଣ କରିପାରିନାହିଁ ଏଯାବତ୍ ।

ଅଧୀକ୍ଷକ
ପର୍ଯ୍ୟବେକ୍ଷଣ ଆବାସ ଓ ସ୍ୱତନ୍ତ୍ର ଆବାସ
ବ୍ରହ୍ମପୁର–୮

# ଖାରବେଳୀୟ ପିଥୁଣ୍ଡ ନଗରୀ

ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ

**ମ**ହାମେଘବାହାନ ଐର ଖାରବେଳଙ୍କ ହାତୀଗୁମ୍ଫା (ଉଦୟଗିରି-କୁମାରୀଗିରି) ଅଭିଲେଖ ହିଁ ତାଙ୍କ ରାଜତ୍ୱର (ଖ୍ରୀ:ପୂ: ପ୍ରଥମ ଶତକ) ବିସ୍ତୃତ ବିବରଣୀ ପ୍ରଦାନ କରିଥାଏ । ଏହି ଲେଖାର ଦଶମ ତଥା ଏକାଦଶ ଧାଡ଼ିରେ ଲିପିବଦ୍ଧ ହୋଇଅଛି, ସମ୍ରାଟ ଖାରବେଳଙ୍କ ଏକାଦଶ ବର୍ଷର କୀର୍ତ୍ତିକଳାପ । ତାହା ଏହିପରି-




> ଏକାଦସମେ ଚ ବସେ ପାୟାତାନଂ ଚ ମଣିରତନାନି
> ଉପଲଭତେ । କଳିଙ୍ଗ ଯୁବରାଜ ନିବେସିତଂ ପିଥୁଡ଼ଂ
> ଗଦଭନଙ୍ଗଲେନ କାସୟତି-ଜନପଦ... ଭାବନଂ ଚ
> ତେରସ ବସ ସତ କତଂ ଭିଦିତି ତମିର ଦହ ସଂଘାତଂ ।୧

ଏହାକୁ ବିଶିଷ୍ଟ ଐତିହାସିକଗଣ ଯଥା- କାଶୀପ୍ରସାଦ ଜୟସ୍ୱାଲ, ରାଜେନ୍ଦ୍ରଲାଲ ମିତ୍ର, ବେଣୀ ମାଧବ ବଡୁଆ, ରାଖାଲଚନ୍ଦ୍ର ବାନାର୍ଜୀ, ଦିନେଶ ସର୍କାର, ଏ. ଷ୍ଟର୍ଲିଂ, ଜେ. ପ୍ରିନ୍‌ସେପ୍, ସିଲ୍‌ଭାଲେଭି, ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡ. ହରେକୃଷ୍ଣ ମହତାବ ଓ ବିନାୟକ ମିଶ୍ର ପାଠ କରି ଭିନ୍ନ ଭିନ୍ନ ଅର୍ଥ କରିଛନ୍ତି । ତଥାପି ଅଧିକାଂଶ ଐତିହାସିକ ନିମ୍ନୋକ୍ତ ଅନୁଶୀଳନରେ ଏକମତ ହୋଇଅଛନ୍ତି । ଯଥା-

ସମ୍ରାଟ୍ ଖାରବେଳ ନିଜ ରାଜତ୍ୱର ଏକାଦଶ ବର୍ଷରେ ମଣିରତ୍ନ ସହ ଶୋଭାଯାତ୍ରାରେ ବାହାରି, ପୂର୍ବବର୍ତ୍ତୀ ରାଜାମାନଙ୍କଦ୍ୱାରା ୧୧୩ ବର୍ଷ ପୂର୍ବେ, ନିର୍ମିତ ଗ୍ରାମବାସୀଙ୍କ ଆଶ୍ରୟସ୍ଥଳୀ ରୂପେ, ବ୍ୟବହୃତ ପୃଥୁଡ଼ (ପିହୁଣ୍ଡ-ପିଥୁଣ୍ଡ) ନାମକ ସ୍ଥାନର ଚତୁଃପାର୍ଶ୍ୱରେ ଥିବା ପାଚେରୀକୁ ଭାଙ୍ଗି ଦେଇଥିଲେ । ଆଉ ସେହି ସ୍ଥାନକୁ ଗଧଯୋଚା ଲଙ୍ଗଳରେ ଚାଷ କଲେ । ମତାନ୍ତରେ ସନ୍ତସନ୍ତିଆ ଅନାବନା ଘାସବୁଦାରେ ପରିଣତ ୧୧୩ ବର୍ଷ ପୂର୍ବେ ସୃଷ୍ଟ ଦହ (ତମିର) ବା ବନ୍ଧକୁ କାଟି (ଭେଦ) ଦେଲେ ।

ଐତିହାସିକ ରାଖାଲଚନ୍ଦ୍ର ବାନାର୍ଜୀଙ୍କ ମତରେ 'ପିଥୁଣ୍ଡ' ଥିଲା ପ୍ରାଚୀନ ମୂଷକ ରାଜ୍ୟ (ଆଧୁନିକ ଆନ୍ଧ୍ରପ୍ରଦେଶ)ର ରାଜଧାନୀ । ମୂଷକ ଏକ ଦ୍ରାବିଡ଼ ରାଜ୍ୟ । ଖାରବେଳ ଏହି ପିଥୁଣ୍ଡକୁ ଆକ୍ରମଣ କରି ଧ୍ୱଂସ କଲେ । ତାଙ୍କ ମତରେ ଅଭିଲେଖରେ ଥିବା 'ତମିର' ହେଉଛି 'ଦ୍ରାବିଡ଼' ବା 'ଦ୍ରାମିଳ' ଶବ୍ଦର ଅପଭ୍ରଂଶ । ଐତିହାସିକ ବେଣୀମାଧବ ବଡୁଆ 'କଳିଙ୍ଗ ଯୁବରାଜ ନିବେସିତ ପିଥୁଡ଼ଗଦ ଭନଙ୍ଗଲେନଂ କସୟତି' ଧାଡ଼ିକୁ ପଢ଼ି ଏହାକୁ ସେ - 'କଳିଙ୍ଗର ପୂର୍ବରାଜାମାନଙ୍କଦ୍ୱାରା ପ୍ରତିଷ୍ଠିତ ପୃଥୁଦକ ବନ ମଧ୍ୟକୁ ଲାଙ୍ଗୁଳିଆ ନଦୀକୁ ଆଣିଥିଲେ' ବୋଲି ଅର୍ଥ କରିଥିଲେ ।

**ଅବସ୍ଥିତି ଓ ପ୍ରସିଦ୍ଧି :**

ତେବେ ସମ୍ରାଟ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରେ (ଏକାଦଶ ଧାଡ଼ି) ବର୍ଣ୍ଣିତ ପିହୁଣ୍ଡ, ପିଥୁଣ୍ଡ ବା ପିଥୁଡ଼ ନଗରୀଟି ବାସ୍ତବରେ କେଉଁଠାରେ ଅବସ୍ଥିତ ? ସିଲ୍‌ଭା ଲେଭି, ଜୈନଗ୍ରନ୍ଥ ଉତ୍ତରାଧ୍ୟୟନ ସୂତ୍ରରୁ ଉଦ୍ଧାର କରି କହନ୍ତି ଯେ ଏଇ ପିଥୁଡ଼ଗ ବା ପିଥୁଣ୍ଡ ଥିଲା - ସମୁଦ୍ର ତୀରବର୍ତ୍ତୀ ଏକ ପ୍ରସିଦ୍ଧ ବାଣିଜ୍ୟ ନଗରୀ । ଜୈନ ତୀର୍ଥଙ୍କର ପାର୍ଶ୍ୱନାଥଙ୍କ ଅମଳରୁ ହିଁ ପିଥୁଣ୍ଡ ଥିଲା- ଏକ ପ୍ରସିଦ୍ଧ ଜୈନତୀର୍ଥ । ମହାବୀର ୫୭୬ ଖ୍ରୀ:ପୂ:ରେ ଦିବ୍ୟ ଜ୍ଞାନଲାଭ କଲେ । ଏହାପରେ ସେ ଧର୍ମପ୍ରଚାର ପାଇଁ ତୋଷାଳୀର ମୋଷଳୀକୁ

ଆସି କୁମାରୀ ପର୍ବତ (ଉଦୟଗିରି) ଅବସ୍ଥାନ କରିଥିଲେ । ଭୌଗୋଳିକ ଟଲେମି, କଳିଙ୍ଗ ସମୁଦ୍ର ଉପକୂଳରେ ଥିବା ପ୍ରସିଦ୍ଧ ପୋତନଗରୀ ଏବଂ ଦକ୍ଷିଣପୂର୍ବ ଏସିଆର ପ୍ରବେଶ ପଥ ଭାବରେ ବିଦିତ ପଲୌରା (ଦନ୍ତପୁର)କୁ ଭିତ୍ତିକରି ଦକ୍ଷିଣ-ପୂର୍ବ ଏସିଆର ଯେଉଁ ମାନଚିତ୍ର ପ୍ରସ୍ତୁତ କରିଥିଲେ । ସେଥିରେ ପୂର୍ବ ସମୁଦ୍ର ଉପକୂଳରେ ଥିବା ବିଶିଷ୍ଟ ବନ୍ଦରଗୁଡ଼ିକ ଯଥା- ପଲୁର, ନନିଗେନ୍, କତିକର୍ଦ୍ଦମ, ଏକାନଗର ଓ ତାମ୍ରଲିପି ଚେଲିତାଲୋ ମଧ୍ୟରେ 'ପିଥୁଣ୍ଡ'ର ନାମ ରହିଛି । ତାଙ୍କ ମତରେ (Ptolemy VII-I-15 & 93) ପିହୁଣ୍ଡ ନଗର, ମହାନଦୀ ଓ ଗୋଦାବରୀ ନଦୀଦ୍ୱୟର ମୁହାଣଠାରୁ ସମାନ ଦୂରରେ ଓ ସମୁଦ୍ରତଟରେ ଅବସ୍ଥିତ । ସୂଚନା ଯୋଗ୍ୟ ଯେ ପ୍ଲିନୀଙ୍କ ଅନୁସାରେ କଳିଙ୍ଗର ଦକ୍ଷିଣ ସୀମା ଥିଲା – କଳିଙ୍ଗ ଅନ୍ତରୀଣ (Cape Calingoe) ଯାହା ଗୋଦାବରୀ ମୁହାଣସ୍ଥିତ Cape Godavariକୁ ବୁଝାଏ ।

ସେହି ପିଥୁଣ୍ଡ ବା ପିହୁଣ୍ଡ ପ୍ରସିଦ୍ଧ ପୋତନଗରୀ, ପାଲୁର ବା ପ୍ରାଚୀନ ଦନ୍ତପୁରର, ଦକ୍ଷିଣରେ ଅବସ୍ଥିତ । ତାହା କେବଳ ଜୈନ କ୍ଷେତ୍ର, ପ୍ରସିଦ୍ଧ ମଧ୍ୟଯୁଗୀୟ ବନ୍ଦର କିମ୍ବା ବିପଣନ କେନ୍ଦ୍ର ନୁହେଁ, ଏକଦା କଳିଙ୍ଗର ରାଜଧାନୀ ମଧ୍ୟ ଥିଲା ।

ପିହୁଣ୍ଡ ବା ପିଥୁଣ୍ଡକୁ ମଧ୍ୟ ଆଜିର ପୁଣ୍ଡି ବନ୍ଦର ସହିତ ଚିହ୍ନିତ କରାଯାଏ । ପୁଣ୍ଡି ବନ୍ଦର ମହେନ୍ଦ୍ରତନୟା ନଦୀର ମୁହାଣରେ ୧୮°-୪୦°ରୁ ୮୪°-୭୬° ମଧ୍ୟରେ କଳିଙ୍ଗ ପତନମ୍ ନିକଟରେ ଅବସ୍ଥିତ ।

**'ଓଡ଼ିଶା ଜାତିର ଇତିହାସ'** – ପ୍ରାଚୀନ ଐତିହ୍ୟ ଅଧ୍ୟାୟରେ ଡଃ ନବୀନ କୁମାର ସାହୁଙ୍କ, ପିଥୁଣ୍ଡ ସଂପର୍କିତ ମତାମତ, ଏଠାରେ ଉଲ୍ଲେଖଯୋଗ୍ୟ ଅଟେ । ତାଙ୍କର ବକ୍ତବ୍ୟ ହେଲା-

'ମହାବୀରଙ୍କ କାଳରେ 'କଳିଙ୍ଗ'ର ଅନ୍ୟ ଏକ ଜୈନକ୍ଷେତ୍ର ହେଲା- ପିଥୁଣ୍ଡ ନଗର । ଜୈନ ଉତ୍ତରାଧ୍ୟୟନ ସୂତ୍ରରେ ଏହି ନଗର ପିହୁଣ୍ଡ ନାମରେ ବର୍ଣ୍ଣିତ ହୋଇଛି । ସେଠାରେ ପ୍ରତିଷ୍ଠିତ ଜୈନ ପ୍ରତିମା ଆଦି ଋଷଭନାଥ- ଭାରତର ଐତିହାସିକ ଯୁଗରେ ପ୍ରତିମା ପୂଜାର ଆଦି ନିଦର୍ଶନ । ପିହୁଣ୍ଡ ଏକ ଧର୍ମପୀଠ ନୁହେଁ, ଉନ୍ନତ ପୋତାଶ୍ରୟ ଭାବରେ ସେତେବେଳେ ଖ୍ୟାତିଲାଭ କରିଥିଲା । ଦୂର ଦେଶର ଲୋକେ କେହି ବଣିଜ ଉଦ୍ଦେଶ୍ୟରେ ବା କେହି କାଳିଙ୍ଗଜିନ ଦର୍ଶନରେ ଉଭୟ ସ୍ଥଳ ଓ ଜଳପଥରେ ପିଥୁଣ୍ଡକୁ ଆସୁଥିଲେ । ଦନ୍ତପୁର ଥିଲା- କଳିଙ୍ଗର ରାଜଧାନୀ । ତା' ପଛକୁ ପିଥୁଣ୍ଡ ଥିଲା- ରାଜ୍ୟର ପ୍ରଧାନ ନଗର । ପିଥୁଣ୍ଡ ମଧ୍ୟ କଳିଙ୍ଗର ରାଜଧାନୀ ଭାବରେ କିଛି କାଳ ଗୌରବ ଲାଭ କରିଥିଲା । ଉଭୟ ଜୈନ ଓ ବୌଦ୍ଧ ଯୁଗରେ 'ତାମ୍ରଲିପି, ପିଥୁଣ୍ଡ ଓ ଦନ୍ତପୁର ପୂର୍ବ ଉପକୂଳରେ ବିଖ୍ୟାତ ପୋତାଶ୍ରୟ ଥିଲା ଏବଂ ସେହି ବନ୍ଦରରୁ ତାମ୍ରପର୍ଣ୍ଣୀ (ସିଂହଳ), ସୁବର୍ଣ୍ଣଭୂମି (ବ୍ରହ୍ମଦେଶ), ଚମ୍ପା (ଶ୍ୟାମ) ଆଦି ରାଜ୍ୟ ସହ କଳିଙ୍ଗର ସାମୁଦ୍ରିକ ବାଣିଜ୍ୟର ପ୍ରସାର ଘଟିଥିଲା ।

ମହାପଦ୍ମନନ୍ଦ ଖ୍ରୀଷ୍ଟପୂର୍ବ ୩୫୦ରେ ଦାକ୍ଷିଣାତ୍ୟ ଅଭିଯାନରେ ବାହାରି କଳିଙ୍ଗର କ୍ଷତ୍ରୀୟ ରାଜବଂଶ ନିପାତ କରି, ସେ ସମୟର କଳିଙ୍ଗର ପ୍ରଧାନ ନଗର ପିଥୁଣ୍ଡ (ସମ୍ଭବତଃ ରାଜଧାନୀ)ର ଧ୍ୱଂସ ସାଧନ କରିଥିଲେ । ନିଜର ବିଜୟ ସ୍ୱରୂପ ସେଠାରେ ଅବସ୍ଥାପିତ କଳିଙ୍ଗ ଜିନାସନ (ଆଦିନାଥ: ଋଷଭଦେବ) ପ୍ରତିମାକୁ ନିଜ ରାଜଧାନୀ ପାଟଳୀପୁତ୍ରକୁ ଘେନିଗଲେ । କଳିଙ୍ଗର ରାଜବଂଶ ଲୋପ ସହିତ କଳିଙ୍ଗ ଜିନାସନ ଅପସାରିତ ହେବା ପରେ ଯୁଦ୍ଧ ବିଧ୍ୱସ୍ତ ପିଥୁଣ୍ଡନଗରୀ, ପରିତ୍ୟକ୍ତ ଓ ଅରମାମୟ ହୋଇ ଯାଇଥିଲା । ଏଣୁ ମହାପଦ୍ମନନ୍ଦଙ୍କ ଆକ୍ରମଣର ୩୦୦ ବର୍ଷ ପରେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ସେହି ପିଥୁଣ୍ଡ ନଗରକୁ ଐର ସମ୍ରାଟ ଖାରବେଳ ସଂସ୍କାର ବା ପୁନରୁଦ୍ଧାର କରିଥିବାର ଜଣାଯାଏ ।

ସମ୍ରାଟ ଖାରବେଳ ଥିଲେ ଜୈନ ଧର୍ମାଶ୍ରୟୀ । ବୃଷଭ ହେଉଛି, ଜୈନଧର୍ମର ଶୁଭ ସଂକେତ । ସମ୍ଭବତଃ ସେହି କାରଣରୁ ସେ 'ବଳଦ' ପରିବର୍ତ୍ତନରେ ଗଧଯୋଚା ଲଙ୍ଗଳରେ ପିଥୁଣ୍ଡ ଜମିର କର୍ଷଣ କରିଥିଲେ ।

ପ୍ରଖ୍ୟାତ ଗବେଷକ ସ୍ୱର୍ଗୀୟ ବିନାୟକ ମିଶ୍ର, ମହାଭାରତର ବନପର୍ବରେ ବର୍ଣ୍ଣିତ ପୃଥୁଦକ ତୀର୍ଥ ସହିତ 'ପିଥୁଣ୍ଡ'ର ସାମଞ୍ଜସ୍ୟ ଲକ୍ଷ୍ୟ କରିଛନ୍ତି । ବନପର୍ବ (ମହାଭାରତ)ରେ ଯଥାର୍ଥରେ କୁହାଯାଇଛି –

ପୁଣ୍ୟମାତ୍ର କୁରୁକ୍ଷେତ୍ର, କୁରୁକ୍ଷେତ୍ରାଦ୍ ସରସ୍ୱତୀମ୍
ସରସ୍ୱତ୍ୟାଷ୍ଟ ତୀର୍ଥାନି, ତୀର୍ଥଭ୍ୟଷ୍ଟ-ପୃଥୁତକମ୍ ।'

ଅର୍ଥାତ୍- କୁରୁକ୍ଷେତ୍ର ପବିତ୍ର ଅଟେ । ତା'ଠାରୁ ପବିତ୍ର ସରସ୍ୱତୀ । ସରସ୍ୱତୀଠାରୁ ପବିତ୍ର, ନଦୀ ସମୂହ ଏବଂ ତା'ଠାରୁ ପବିତ୍ର ପୃଥଦକ ତୀର୍ଥ ଅଟେ ।

ତେବେ ପୃଥୁଦକ ତୀର୍ଥର ଅବସ୍ଥିତି ସଂପର୍କରେ ସେ ସୂଚନା ଦେଇ ନାହାନ୍ତି । ଅଶୋକଙ୍କ ଶାସନ କାଳରେ କଳିଙ୍ଗ, ମୌର୍ଯ୍ୟ ଶାସନର ଅନ୍ତର୍ଭୁକ୍ତ ହେବା ପରେ କଳିଙ୍ଗର ଦନ୍ତପୁର କିମ୍ବା ପିଥୁଣ୍ଡ ପରିବର୍ତ୍ତନର 'ତୋଷାଳୀ' (ଧଉଳି) ଏବଂ ଦକ୍ଷିଣ କଳିଙ୍ଗର ସମୀପରେ (ଜଉଗଡ଼) ରାଜଧାନୀ ହେଲା । ଫଳତଃ ଦନ୍ତପୁର

ଏବଂ ପିଥୁଣ୍ଡ ପରି ପ୍ରାଚୀନ ବନ୍ଦର, ବିପଣନ କେନ୍ଦ୍ର ଏବଂ ଧାର୍ମିକସ୍ଥଳୀ ଲୋକଙ୍କ ଦୃଷ୍ଟିରେ ପ୍ରାଧାନ୍ୟ ହରାଇଥିଲା । ସୁରମ୍ୟ ଚୈତ୍ୟରେ ପୂଜିତ ବୁଦ୍ଧଙ୍କ ଦନ୍ତଧାତୁ ପରବର୍ତ୍ତୀ କାଳରେ ଗୁହଶିବଙ୍କ ଅମଳରେ ସିଂହଳକୁ ସ୍ଥାନାନ୍ତରିତ ହେବା ଫଳରେ ହିନଯାନୀ ବୌଦ୍ଧପୀଠ ଦନ୍ତପୁର (ପାଲୁର) ଶ୍ରୀହୀନ ହୋଇ ପଡ଼ିଥିଲା । ସେହିପରି ମହାପଦ୍ମନନ୍ଦଙ୍କ ଆକ୍ରମଣ ଏବଂ କାଳିଙ୍ଗ ଜିନ ପ୍ରତିମାର ଅପସାରଣ ଫଳରେ ପିଥୁଣ୍ଡନଗରୀ ନିଜର ଗୁରୁତ୍ୱ ହରାଇ ବସିଥିଲା । ସମ୍ରାଟ ଖାରବେଳଙ୍କ ରାଜତ୍ୱର ଦ୍ୱାଦଶ ବର୍ଷରେ ମଗଧ ଆକ୍ରମଣ କରି ସେହି କଳିଙ୍ଗ ଜିନ ପ୍ରତିମାଙ୍କୁ ସସମ୍ମାନେ କଳିଙ୍ଗକୁ ଫେରାଇ ଆଣିଥିଲେ ସୁଦ୍ଧା ସମ୍ଭବତଃ ତାହା, ପିଥୁଣ୍ଡକୁ ନୁହେଁ 'କଳିଙ୍ଗନଗର' (ଶିଶୁପାଳଗଡ଼)କୁ ଅଣାଯାଇଥିଲା ।

ଏଣୁ ପିଥୁଣ୍ଡ ଥିଲା ପ୍ରାଚୀନ କଳିଙ୍ଗର ଜୈନତୀର୍ଥସ୍ଥଳୀ, ଏକ ପ୍ରଧାନ ନଗର, ବାଣିଜ୍ୟ କେନ୍ଦ୍ର ତଥା ଦକ୍ଷିଣ-ପୂର୍ବ ଦ୍ୱୀପପୁଞ୍ଜକୁ ଯାତାୟାତ କରୁଥିବା ବୋଇତଗୁଡ଼ିକର ଆଶ୍ରୟସ୍ଥଳୀ ।

**ପାଦଟୀକା :**

୧. ଓଡ଼ିଆ ଜାତିର ଇତିହାସ : ମହାମେଘବାହନ ଖାରବେଳ, ପୃ.୧୬୨-୬୩, ସାହୁ ଡଃ ନବୀନ କୁମାର

୨. Urban centres in Early medieval Orissa (pp.102-103), By Dr. D.N. Bhoi (OHRJ-Vol-XLVIII-2)

୩. ଓଡ଼ିଆ ଜାତିର ଇତିହାସ (ପୃ.୫୪), ସାହୁ ଡଃ ନବୀନ କୁମାର

୪. ତତ୍ରୈବ (୩)

୫. ତତ୍ରୈବ, ପୃ.୫୬

୬. ଧଉଳିର ଇତିହାସ : ମହାପାତ୍ର କେଦାରନାଥ

**ଖ) ସହାୟକ ଗ୍ରନ୍ଥ ସୂଚୀ**


୧. ଓଡ଼ିଆ ଜାତିର ଇତିହାସ : ସାହୁ ଡଃ ନବୀନ କୁମାର

୨. ଧଉଳିର ଇତିହାସ : ମହାପାତ୍ର କେଦାରନାଥ

୩. ପ୍ରାଚୀନ ଭାରତର ଇତିହାସ : ସାମଲ ଡଃ ଜୟକୃଷ୍ଣ

୪. ସାରଳା ମହାଭାରତ : ବନପର୍ବ

୫. Orissa Historical Research Journal, vol-XLVII-2

୬. Inscription of Orissa, vol-II, Dr. S.N. Rajguru

୭. Orissa HIstorical Research Journal, Special vol-1982



ଅଭିନନ୍ଦନ
୩୫, ବସନ୍ତ ବିହାର
ବ୍ରହ୍ମେଶ୍ୱର ମନ୍ଦିରମାର୍ଗ, ଭୁବନେଶ୍ୱର-୧୮




ସୂଚନା ଓ ଲୋକ ସଂପର୍କ ବିଭାଗର ଶାସନ ସଚିବ ଶ୍ରୀ ରବିନ୍ଦ୍ର ନାଥ ଦାଶଙ୍କୁ ଉତ୍କଳ ସାମ୍ବାଦିକ ସଂଘର ସାଧାରଣ ସଂପାଦକ ଶ୍ରୀ ହାରାଧନ ବାନାର୍ଜୀ, ଉପସଭାପତି ଶ୍ରୀ ରଶ୍ମିରଂଜନ ମିଶ୍ର ଓ ସଂପାଦକ ଶ୍ରୀ ମଦନ ପାଣି ସୌଜନ୍ୟମୂଳକ ଭାବେ ସାକ୍ଷାତ କରୁଛନ୍ତି । ନିକଟରେ ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି ଉପସ୍ଥିତ ଅଛନ୍ତି । ୧୪.୧୦.୦୯

# ସଂଗ୍ରାମୀ କନ୍ୟାଙ୍କ ସଂଗ୍ରାମ ସରି ନାହିଁ

ପ୍ରଭାକର ସାହୁ

**'ସା**ବାସ୍ ବେଟୀ, ସାବାସ୍ !' ପିଠିରେ ହାତ ଥାପୁଡ଼ାଇ ଯେଉଁ ଦିନ ଜାତିର ଜନକ ମହାତ୍ମା ଗାନ୍ଧୀ ଏହି କଥା ପଦକ କହିଥିଲେ, ସେଦିନ ସେମିତି ଚମକ ଖେଳି ଯାଇଥିଲା ସେହି ୧୨ ବର୍ଷର ବାଳିକା ଶରୀରରେ । ପିଲାଦିନୁ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଓ ମା' ରମାଦେବୀଙ୍କ ପାଖରେ ବଢ଼ି ଆସିଥିବା ଆଶ୍ରମକନ୍ୟା ସେହିଦିନୁ ହୋଇଯାଇଥିଲା ସଂଗ୍ରାମୀ କନ୍ୟା । ଗାନ୍ଧିଜୀଙ୍କ ସେହି ପଦକ କଥା ଓ ପିଠି ଥାପୁଡ଼ା ଯେମିତି ସେହି ବାଳିକାର ଜୀବନର ଗତିପଥ ବଦଳାଇ ଦେଇଥିଲା । ସେହିଦିନୁ ଦେଶପାଇଁ, ସମାଜ ପାଇଁ ଓ ସାଧାରଣ ଗରିବ ଲୋକଙ୍କ ସେବାରେ ଜୀବନକୁ ଉତ୍ସର୍ଗ କରିଥିବା ସେହି ସଂଗ୍ରାମୀ କନ୍ୟା ହେଲେ ସରସ୍ୱତୀ ତ୍ରିପାଠୀ ।



ସାତ ବର୍ଷ ବୟସରୁ ଘରୁ ଗୋଡ଼ କାଢ଼ିଥିଲେ ସରସ୍ୱତୀ । ଦେଶଲାଗି ସ୍ୱାଧୀନତା ଆନ୍ଦୋଳନର ସଚ୍ଚା ସୈନିକଟିଏ କରିବାକୁ ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋ ସରସ୍ୱତୀଙ୍କୁ ଘରୁ ଆଣି ବସାଇ ଦେଇଥିଲେ ଗୋପବାବୁ ଓ ରମାଦେବୀ ବରୀ ଆଶ୍ରମରେ । ସେହିଦିନୁ ସରସ୍ୱତୀ ହୋଇଥିଲେ ବରୀ ଆଶ୍ରମର କନ୍ୟା । ଗୋପବନ୍ଧୁ ଚୌଧୁରୀଙ୍କୁ ଡାକିଥିଲେ ବାପା ଓ ରମାଦେବୀଙ୍କୁ ମା' । ପାଠପଢ଼ା, ବଗିଚା କାମ, ସୂତା କଟା ଓ ସମାଜସେବା ସବୁର ମୂଳଦୁଆ ପଡ଼ିଥିଲା ସେହି ଆଶ୍ରମରେ । ଚୁନି ଅପା (ସଂଗ୍ରାମୀ ଅନ୍ନପୂର୍ଣ୍ଣା ମହାରଣା), ମଙ୍ଗଳ ଅପା (ମଙ୍ଗଳା ସେନଗୁପ୍ତ), ବୁଲୁ ବାବୁ (ସଂଗ୍ରାମୀ ମନମୋହନ ଚୌଧୁରୀ) ପ୍ରଭୃତିଙ୍କ ହାତଧରି ସଂଗ୍ରାମର ପଥକୁ ଓହ୍ଲାଇ ଆସିଥିଲେ ସରସ୍ୱତୀ ।

୮୦ ବର୍ଷ ବୟସରେ ସଂଗ୍ରାମୀ ମନ ନେଇ କର୍ମଚଞ୍ଚଳ ଥିବା ସରସ୍ୱତୀ ଦେବୀ ସେଦିନର ସ୍ମୃତିକୁ ମନେପକାଇ କୁହନ୍ତି ଗୋପବାବୁ ଓ ମା' ରମାଦେବୀଙ୍କ ବରୀ ସେବାଶ୍ରମ ଏକ ସାଧନାର ମନ୍ଦିର ଥିଲା । ନିଜେ ଗୋପବାବୁ ସବୁକାମ କରୁଥିଲେ । ରାତି ୪ଟାରୁ ଉଠି ଗାଧୁଆ ପାଧୁଆ ସାରି ଚୂଡ଼ା, ଦହି, ଗୁଡ଼, ପାଚିଲା ବିଲାତି ବାଇଗଣ ଖାଇ ଜଳଖିଆ କରନ୍ତି ଓ ତା'ପରେ ବଗିଚାକୁ ଚାଲି ଯାଆନ୍ତି । ନିଜେ ମାଟି ହାଣନ୍ତି, ଗଛ ଲଗାନ୍ତି ଓ ପାଣି ଦିଅନ୍ତି । ଆଶ୍ରମ ଗାଈଙ୍କ ସେବା ମଧ୍ୟ ନିଜେ ଗୋପବାବୁ କରନ୍ତି । ଗୋପବାବୁ ତାଙ୍କୁ 'ସର' ବୋଲି ଡାକନ୍ତି । ଆଶ୍ରମରେ ସେ ସମସ୍ତଙ୍କଠାରୁ ଛୋଟ ହୋଇଥିବାରୁ ସଭିଏଁ ତାଙ୍କୁ ଶ୍ରଦ୍ଧା କରନ୍ତି । ଗୋପବାବୁ କୁହନ୍ତି – ତୁ ସର ମନ ଦେଇ ପାଠପଢ଼ିବୁ, ସୂତାକାଟିବୁ, ସମସ୍ତଙ୍କୁ ଶିଖାଇବୁ । ମା' ରମାଦେବୀ ତାଙ୍କୁ ପାଖରେ ବସାଇ ବହୁସମୟରେ ଖୁଆଇ ଦିଅନ୍ତି । ଆଶ୍ରମରେ ଶ୍ରଦ୍ଧାରେ ସମସ୍ତେ ତାଙ୍କୁ ସର ବୋଲି ଡାକିବା ବେଳେ ବିନୋଦ କାନୁନ୍‌ଗୋ ଡାକନ୍ତି 'ବନବୀରା' ବୋଲି । ସଂଗ୍ରାମୀ ପାର୍ବତୀ ଗିରି 'ଯମୁନା ଜଳେ ଜଳେ' କହି ଚିଡ଼ାନ୍ତି ।

ଆଶ୍ରମରେ ଶିକ୍ଷା-ଦୀକ୍ଷା ସାଙ୍ଗକୁ ସରସ୍ୱତୀ ଦେବୀଙ୍କର ପ୍ରଥମ କାମ ଆରମ୍ଭ ହୋଇଥିଲା ପାଖ ଚନ୍ଦନପୁର ଗାଁରେ ଶିକ୍ଷାଦାନ । ପିଲାଙ୍କୁ ପାଠ ପଢ଼ାଇବା ସାଙ୍ଗକୁ ସୂତାକଟା ଶିଖାଇବା, ଗାଁ ସଫେଇ କରିବା ଆଦି କରିଥିଲେ ସେ । ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ କାଳରେ ବାଳିକା ସରସ୍ୱତୀଙ୍କୁ ଗାନ୍ଧିଜୀଙ୍କ କାର୍ଯ୍ୟକ୍ରମରେ ରହିବାର ଗୌରବ ମିଳିଥିଲା । ଯେତେବେଳେ ପୁରୀ ଜିଲ୍ଲା ବେରବୋଇଠାରେ ଗାନ୍ଧିଜୀ ପଦଯାତ୍ରାରେ ଆସି ରହିଲେ, ସେତେବେଳେ ମହାତ୍ମାଙ୍କ ଟହଲିବା ବା ସକାଳ ଓ ସନ୍ଧ୍ୟାରେ ଚଲାବୁଲା କରିବା ରାସ୍ତା ସଫା କରିବାର ଦାୟିତ୍ୱ ଥିଲା ସରସ୍ୱତୀଙ୍କ ଉପରେ । ଅନ୍ୟମାନଙ୍କ ସହ ସେ ରାସ୍ତା ପହଁରୁଥାନ୍ତି, ସେହି ସମୟରେ ମହାତ୍ମା ଆସିଲେ ଓ ପିଠିରେ ହାତ ପକାଇ ପଚାରିଲେ ବେଟୀ ତୁମାରା ନାମ କ୍ୟା ହୈ (ଝିଅ ତୁମର ନାମ କ'ଣ) ସେ

ଉତ୍ତର ଦେଲେ ସରସ୍ୱତୀ । ମହାତ୍ମା କହିଲେ ଆଚ୍ଛା କାମ କର ରହେ ହୋ ସାବାସ୍, ବେଟୀ ସାବାସ୍ (ଭଲ କାମ କରୁଛ, ସାବାସ) । ସରସ୍ୱତୀ ଦେବୀ କୁହନ୍ତି – ମହାତ୍ମାଙ୍କ ସେଦିନର ସେହି ସ୍ପର୍ଶ ହିଁ ତାଙ୍କର ଜୀବନର ଅବିସ୍ମରଣୀୟ ମୁହୂର୍ତ୍ତ ଓ ଶ୍ରେଷ୍ଠ ଆଶୀର୍ବାଦ ।

ସଂଗ୍ରାମୀ କନ୍ୟା ସରସ୍ୱତୀ ମା' ରମାଦେବୀଙ୍କ ନିର୍ଦ୍ଦେଶରେ ହରପ୍ରିୟା ଦେବୀ, ପ୍ରିୟମ୍ବଦା ଦେବୀ, କିରଣ ଅପା, ମାଳଅପା, ମଙ୍ଗଳା ଅପା, ଗୋଦାବରୀ ଅପା ପ୍ରମୁଖଙ୍କ ସହ ବୁଲି ବୁଲି ଇଂରେଜ ବିରୋଧରେ ସେହି ଛୋଟବେଳୁ ପ୍ରଚାର ଆରମ୍ଭ କରିଥିଲେ । ସରସ୍ୱତୀ ଦେବୀ କୁହନ୍ତି, ଥରେ ବରୀର ବାଲିଆପାଳଠାରେ ମିଟିଂ ହେଉଥିବାବେଳେ ପୋଲିସ୍ ସେହି ମହିଳା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଗିରଫ କରିନେଲା । ସେମାନଙ୍କୁ ଆଣି ବରୀ ଡାକବଙ୍ଗଳାରେ ରଖାଗଲା । ସେଦିନ କିନ୍ତୁ ସେ ଅନ୍ୟ ଏକ ଗାଁରେ ଥିଲେ, ତେଣୁ ଗିରଫ ହୋଇନଥିଲେ । ପରଦିନ ଡାକବଙ୍ଗଳାରେ ଅନ୍ୟମାନଙ୍କୁ ଭେଟି କାହିଁକି ତାଙ୍କୁ ଗିରଫ କରାଗଲାନି ବୋଲି କାନ୍ଦି ଥିଲେ । ବଡ଼ ଭଉଣୀ ପରି ଗିରଫ ମହିଳା ସଂଗ୍ରାମୀମାନେ ବୁଝାଇ ଶୁଝାଇ ତାଙ୍କୁ ସେବାଶ୍ରମକୁ ବିଦା କରିଥିଲେ । ସେହି ଗିରଫଦାରୀ ପରେ ମା' ରମାଦେବୀ କଟକ ଚାଲିଗଲେ । ପୋଲିସ୍ ଆସି ସେବାଶ୍ରମ ଭାଙ୍ଗି ଦେଲା । ସେହି ଭଙ୍ଗା ଘର ଜଗିବା ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା । ସେ ଚନ୍ଦନପୁର ଗ୍ରାମର ସୁଶୀଳା ଅପା ଆଶ୍ରମରେ ଜଗି ରହିଲେ । କିଛି ଦିନ ପରେ ପୋଲିସ୍ ସୁଶୀଳା ଅପାଙ୍କୁ ଗିରଫ କଲା ଓ ଅଳ୍ପ ବୟସ ହୋଇଥିବାରୁ ତାଙ୍କୁ ଛାଡ଼ି ଦେଲା ।

ବରୀ କାଇପଡ଼ା ଗୁଳିକାଣ୍ଡର ସାକ୍ଷୀ ହେଉଛନ୍ତି ସଂଗ୍ରାମୀ ସରସ୍ୱତୀ । ଶୋଭା ଅପାଙ୍କ ସହ ସେ ସେଦିନ ରାମଚନ୍ଦ୍ରପୁରରେ ସରକାର ବିରୋଧରେ ପ୍ରଚାର କରୁଥିଲେ । ପୋଲିସ କାଇପଡ଼ାରେ ଗୁଳିକାଣ୍ଡ କଲା । ସଂଗ୍ରାମୀ ହାଡ଼ିବନ୍ଧୁ, ମାୟାଧର, ସାଉଁଟୀ ଓ ସାନନ୍ଦ ଟଳି ପଡ଼ିଲେ । ଖବର ପାଇ ଚୁନି ଅପା (ଅନ୍ନପୂର୍ଣ୍ଣା ମହାରଣା), ଶରତ ମହାରଣା, ଶୋଭା ଅପା ଓ ସେ ସେଠାକୁ ଗଲେ । ଶୋକର ହୃଦୟଫଟା ପରିବେଶ ଥିଲା । ଶହୀଦଙ୍କ ପରିବାର ଲୋକେ ଚୁନି ଅପାଙ୍କ ପାଦ ଧରି ଗଡ଼ିଗଲେ । ସମସ୍ତଙ୍କୁ ବୁଝାବୁଝି କରି ସେମାନେ ଫେରିଲେ । ତା'ପରେ ଗାଁ ଗାଁରେ ସେହି ଶହୀଦଙ୍କ ନାଁରେ ଗୀତବାନ୍ଧି ବୋଲାଗଲା । ଏବେ ବି ସଂଗ୍ରାମୀ ସରସ୍ୱତୀଙ୍କ ମନରେ ସେହି ଗୀତ ପୂର୍ଣ୍ଣ ସ୍ମରଣ ହୋଇ ରହିଛି । ବେଳେ ବେଳେ ଗାଇ ଉଠନ୍ତି ସେ ସେହି ଶହୀଦଙ୍କ ସ୍ମୃତିରେ । ଗୀତଟି ହେଲା –

ମାଦଳ ବାଜିଲାରେ ମାଦଳ ବାଜିଲା
ଆମେ ସବୁ ଅଟୁ ଭାଇ ବାଜି ରାଉତ ଚେଲାରେ,
ଗୁଳି ଚୋଟେ ପ୍ରାଣ ଯେହୁ ଦେଲା ।
ମାଦଳ ବାଜିଲାରେ ମାଦଳ ବାଜିଲା
ସଂଗିନୀର ମୁନ ତାଙ୍କ ବୁକୁ ବରୀ ନେଲାରେ
ଗୁଳି ଚୋଟେ ପ୍ରାଣ ତାଙ୍କ ଗଲା ।
ଇତିହାସ ପୃଷ୍ଠାରେ ଲେଖା ହେଲାରେ
ଯୁଗେ ଯୁଗେ କୀର୍ତ୍ତି ରହିଗଲା ।
ସାଉଁଟୀ ସାନନ୍ଦ ସଙ୍ଗେ ହାଡ଼ିବନ୍ଧୁ ଡାକେରେ
ମାୟାଧର ଆକାଶରୁ ଦେଖେ
ଏବେ ଜଣାଗଲା ତୁମ କଥା ବିଲାତି ବାଲା
ବେଳ ଆସିଲାଣି ବାନ୍ଧ ତୁମ ପେଡ଼ି ପୁଟୁଳା ।
ମାଦଳ ବାଜିଲାରେ ମାଦଳ ବାଜିଲା ।

ସଂଗ୍ରାମୀ ସରସ୍ୱତୀ ଦେବୀ କୁହନ୍ତି ଯେତେବେଳେ ସେହି ଗୀତ ବୋଲି ବୋଲି ସେମାନେ ଗାଁ ଦାଣ୍ଡରେ ପହଞ୍ଚନ୍ତି ସେତେବେଳେ ପିଲା–ବୁଢ଼ା ସମସ୍ତେ ରୁଣ୍ଡ ହୋଇଯାଆନ୍ତି । ମହିଳାମାନେ କବାଟ ପାଖକୁ ଆସି ଦେଖନ୍ତି । ସଂଗ୍ରାମୀ ସାଥୀମାନେ ଗାଁ ଗାଁରେ ଉତ୍ସାହିତ କରନ୍ତି । ଶହୀଦଙ୍କ ଜୟ ଜୟକାର ପଡ଼େ । ଇଂରେଜ ସରକାରଙ୍କ ବିରୋଧରେ ଲୋକେ ଗଗନ ପବନ କମ୍ପାଇ ଦିଅନ୍ତି ।

୧୯୪୮ ମସିହାରେ ଗୋପବାବୁ ଓ ମା' ରମାଦେବୀ ଆଶ୍ରମ କନ୍ୟା ସରସ୍ୱତୀଙ୍କ ବିବାହ ଠିକ୍ କଲେ । ଅବିଭକ୍ତ କଟକ ଜିଲ୍ଲାର ସେତେବେଳର ଅଗ୍ରଣୀ ଯୁବ ସଂଗ୍ରାମୀ, ବଡ଼ଚଣା ମରଣସେନା ବାହିନୀର ପ୍ରଶାସନିକ ମୁଖ୍ୟ ବୃନ୍ଦାବନ ତ୍ରିପାଠୀଙ୍କ ବାହାଘର ହେଲା । ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ ମଧ୍ୟ ବାହାଘରର ଅନ୍ୟ ଦୁଇ ମୁଖ୍ୟ ପୁରୋଧା ଥିଲେ । ଓଡ଼ିଶାର ସବୁ ତୁଙ୍ଗ ନେତୃବୃନ୍ଦ ଉପସ୍ଥିତ ଥିଲେ । ତତ୍କାଳୀନ ରାଜ୍ୟପାଳ କୈଳାସ ନାଥ କାଟ୍‌ଜୁ ଶିକ୍ଷାମନ୍ତ୍ରୀଙ୍କୁ ପଠାଇଥିଲେ ନିଜର ଶୁଭେଚ୍ଛା ବାର୍ତ୍ତାସହ । ବରଯାତ୍ରୀ ଓ ବରକନ୍ୟା ପଦଯାତ୍ରାରେ ବରୀ ଆଶ୍ରମରୁ ଯାଇଥିଲେ ବୃନ୍ଦାବନଙ୍କ ସଂଗ୍ରାମୀ ପୀଠ ଯାଜପୁର ଜିଲ୍ଲା ବଡ଼ଚଣା ଅନ୍ତର୍ଗତ ବାଲିପଡ଼ିଆ ଠକ୍କରବାପା ଆଶ୍ରମକୁ ।

ବିବାହ ପରେ ଦାୟିତ୍ୱ ଓ କାମ ବଢ଼ିଗଲା ସରସ୍ୱତୀଙ୍କର । ସ୍ୱାମୀଙ୍କର ସମାଜ ସଂସ୍କାର, ଭୂଦାନ ଆନ୍ଦୋଳନ ଓ ରଚନାତ୍ମକ

କାର୍ଯ୍ୟରେ ସେ ସାଥୀ ହେଲେ । କୋରାପୁଟର ଦୁର୍ଗମ ଆଦିବାସୀ ଅଞ୍ଚଳରେ ବୃନ୍ଦାବନ ବାବୁଙ୍କ ସହ ସରସ୍ୱତୀ ଦେବୀ ଆଶ୍ରମ ପ୍ରତିଷ୍ଠା କରି ଦୀର୍ଘ ଦୁଇ ବର୍ଷ କାର୍ଯ୍ୟ କଲେ । ପରେ ପୁଣି ଗାଁକୁ ଫେରି ତତ୍କାଳୀନ ମନ୍ତ୍ରୀ ଶାନ୍ତନୁ ଦାସଙ୍କଦ୍ୱାରା ପ୍ରତିଷ୍ଠିତ ଦଳିତ ମହାସଂଘରେ ସକ୍ରିୟ ଭାବେ କାର୍ଯ୍ୟକଲେ । ଠକ୍କର ବାପା ଆଶ୍ରମରେ ପିଲାଙ୍କୁ ପାଠପଢ଼ା, ଗ୍ରାମ ସଫେଇ, ଗାଁ ଗାଁରେ ମହିଳା ସମିତି ଗଠନ ଆଦି କାର୍ଯ୍ୟରେ ନିଜକୁ ନିୟୋଜିତ କରି ଦେଲେ ସଂଗ୍ରାମୀ ସରସ୍ୱତୀ । ଏହାରି ଭିତରେ ବଡ଼ଚଣାରୁ ନବକୃଷ୍ଣ ଚୌଧୁରୀ ନିର୍ବାଚନ ଲଢ଼ିଲେ । ନିର୍ବାଚନରେ ପ୍ରଚାର ଅଭିଯାନରେ ସରସ୍ୱତୀ ଥିଲେ ଆଗରେ । ସରକାରଙ୍କ 'ଜନତା ଡାକ୍ତର' ଯୋଜନାରେ ସରସ୍ୱତୀ ଦେବୀ ଜନତା ଡାକ୍ତର ଭାବେ ମଧ୍ୟ ନିୟୋଜିତ ହୋଇ କାର୍ଯ୍ୟ କରିଥିଲେ । ସଂଗ୍ରାମୀ ସ୍ୱାମୀଙ୍କ ସହ କେବଳ ଓଡ଼ିଶା ନୁହେଁ ଦେଶର ବିଭିନ୍ନ ଭାଗକୁ ଯାଇ ଜାତୀୟ କାର୍ଯ୍ୟକ୍ରମରେ ସେ ଭାଗ ନେଇଛନ୍ତି । ସଂଗ୍ରାମୀ ପଦଯାତ୍ରାରେ ଓଡ଼ିଶାର ବହୁ ଗାଁ ବୁଲି ଗାନ୍ଧିଜୀଙ୍କର ବାର୍ତ୍ତା ପ୍ରଚାର କରିଛନ୍ତି ।

ଅଶୀତି ବର୍ଷରେ କର୍ମଚଞ୍ଚଳ ଥିବା ଏହି ସଂଗ୍ରାମୀ ସ୍ୱାମୀଙ୍କ ଦେହାନ୍ତ ପରେ ସଂଗ୍ରାମ ପଥରେ ଏକାକିନୀ ହୋଇପଡ଼ିଥିଲେ ହେଁ ସରସ୍ୱତୀ ସମାଜ ସେବାରୁ ବିଚ୍ୟୁତ ହୋଇନାହାନ୍ତି । ବୃନ୍ଦାବନ ବାବୁଙ୍କ ପ୍ରତିଷ୍ଠିତ ଠକ୍କରବାପା ଆଶ୍ରମର ପରିଚାଳିକା ଭାବେ ସମାଜ ସଂସ୍କାର ଓ ରଚନାତ୍ମକ କାର୍ଯ୍ୟରେ ସେ ନିଜକୁ ନିୟୋଜିତ ରଖିଛନ୍ତି । ବିଭିନ୍ନ ସରକାରୀ ସଂସ୍ଥା, ବହୁ ଅନୁଷ୍ଠାନ ଓ ବ୍ୟକ୍ତି ବିଶେଷଙ୍କଦ୍ୱାରା ସରସ୍ୱତୀ ଦେବୀ ସମ୍ବର୍ଦ୍ଧିତ ଏବଂ ସମ୍ମାନିତା । ଦେହରୁ ବଳ କମିଯାଇଛି ସିନା କିନ୍ତୁ ଦେଶ କାମ ଲାଗି ଆଜି ବି ଏହି ସଂଗ୍ରାମୀ କନ୍ୟାଙ୍କର ମନୋବଳ ବେଶ ଦୃଢ଼ ରହିଛି ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

## ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ବେତନ ଅସଂଗତି ଦୂର ହେବା ନିମନ୍ତେ ଉଦ୍ୟମ ହେବ : ମନ୍ତ୍ରୀ

ଗତ ଅକ୍ଟୋବର ୭ ତାରିଖରେ ସୂଚନା ଓ ଲୋକ ସଂପର୍କ ବିଭାଗର ଚତୁର୍ଥ ଶ୍ରେଣୀ ଷ୍ଟାଫ୍ କମିଟିର ୨୩ତମ ବାର୍ଷିକ ଅଧିବେଶନ ସୂଚନା ଓ ଲୋକ ସଂପର୍କ ବିଭାଗର ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ହୋଇଯାଇଛି । ଏଥିରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ସୂଚନା ଓ ଲୋକ ସଂପର୍କ ଏବଂ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ ବିଭାଗର ସୁନାମ ପାଇଁ ନିଷ୍ଠାପର ସହିତ କାର୍ଯ୍ୟ କରିବାକୁ ବିଭାଗୀୟ କର୍ମଚାରୀଙ୍କୁ ପରାମର୍ଶ ଦେଇଛନ୍ତି । ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ବେତନରେ ଥିବା ଅସଂଗତିକୁ ହୃଦୟଙ୍ଗମ କରି ସେ କହିଛନ୍ତି ଯେ, ଏ ବିଷୟରେ ଅର୍ଥ ବିଭାଗ ସହିତ ଆଲୋଚନା ହେବାର ଆବଶ୍ୟକତା ରହିଛି । ସୂଚନା ଓ ଲୋକ ସଂପର୍କ ବିଭାଗ କମିଶନର ତଥା ଶାସନ ସଚିବ ଶ୍ରୀ ରବୀନ୍ଦ୍ରନାଥ ଦାଶ ଓ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି ଏହି ଅଧିବେଶନରେ ସମ୍ମାନିତ ଅତିଥିଭାବେ ଯୋଗ ଦେଇଥିଲେ । କମିଟି ତରଫରୁ ପ୍ରଦାନ କରାଯାଇଥିବା ଦାବିଗୁଡ଼ିକ ମଧ୍ୟରୁ କେତେକ ପୂରଣ ହୋଇଛି ଏବଂ ଆଉ କେତେକ ଦାବିଗୁଡ଼ିକ ଖୁବ୍‌ଶୀଘ୍ର ସହୃଦୟର ସହ ବିଚାର କରାଯିବ ବୋଲି କମିଶନର ଶ୍ରୀ ଦାଶ ପ୍ରକାଶ କରିଥିଲେ । ଯୋଗ୍ୟତା ଭିତ୍ତିରେ ଅନୁକମ୍ପାମୂଳକ ନିଯୁକ୍ତିଗୁଡ଼ିକୁ ପ୍ରଦାନ କରାଯିବା ବିଷୟରେ ପଦକ୍ଷେପ ନିଆଯାଉଛି ବୋଲି ନିର୍ଦ୍ଦେଶକ ଶ୍ରୀ ମହାନ୍ତି କହିଥିଲେ ।

ଏହି ଅଧିବେଶନରେ ସଚିବାଳୟର ସ୍ୱଳ୍ପ ବେତନଭୋଗୀ ସରକାରୀ କର୍ମଚାରୀ ସଂଘର ସଭାପତି ଶ୍ରୀ ଆଶୁତୋଷ ମହାନ୍ତି ଅଧ୍ୟକ୍ଷତା କରି କମିଟିର ଦାବିଗୁଡ଼ିକ ପୂରଣ କରିବା ପାଇଁ ସରକାରଙ୍କୁ ନିବେଦନ କରିଥିଲେ । କମିଟିର ସଂପାଦକ ଶ୍ରୀ ମକରଧ୍ୱଜ ନାୟକ ବାର୍ଷିକ ବିବରଣୀ ଉପସ୍ଥାପନ କରିବା ସହିତ ସଭାପତି ଶ୍ରୀ ଅର୍ଜୁନ ଗୌଡ଼ ସାତ ଦଫା ସମ୍ବଳିତ ଦାବିପତ୍ର ପ୍ରଦାନ କରିଥିଲେ । ବିଭାଗୀୟ 'କର୍ମଚାରୀ କଲ୍ୟାଣ କମିଟି'ର ସାଧାରଣ ସଂପାଦକ ଶ୍ରୀ ଆଲୋକ ରଂଜନ ଦାଶ ଅତିଥିଗଣଙ୍କୁ ଧନ୍ୟବାଦ ଅର୍ପଣ କରିଥିଲେ ।

ଏହି ଅଧିବେଶନରେ ସୂଚନା ଓ ଲୋକ ସଂପର୍କ ବିଭାଗର ଅନେକ କର୍ମଚାରୀ ଯୋଗ ଦେଇଥିଲେ । ଅନ୍ୟମାନଙ୍କ ମଧ୍ୟରେ ସୂଚନା ଓ ଲୋକ ସଂପର୍କ ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ଲୋକନାଥ ତନ୍ତୀ ଓ ଅନୁଶାସନ ସଚିବ ଶ୍ରୀ ଗଣେଶ୍ୱର ଜେନା ଉପସ୍ଥିତ ଥିଲେ ।

# କମ୍ ଜାଳେଣିର ଧୂମ ବିହୀନ ଚୂଲା

## (ସଫଳ କାହାଣୀ)

**ଓ**ଡ଼ିଶା ବନାଞ୍ଚଳ ଉନ୍ନୟନ ପ୍ରକଳ୍ପ ମାଧ୍ୟମରେ ହରିଜନ ଓ ଆଦିବାସୀ ଅଧ୍ୟୁଷିତ ଜିଲ୍ଲା ଦେବଗଡ଼ ବନାଞ୍ଚଳରେ ୧୩ଟି ବନସଂରକ୍ଷଣ ସମିତିର ସମସ୍ତ ୬୮୭ଟି ପରିବାରରେ କମ୍ ଜାଳେଣିର ଧୂମ ବିହୀନ ଚୂଲା ବ୍ୟବହାର କରି ରନ୍ଧନ କାର୍ଯ୍ୟ ସଂପାଦନ କରିଛନ୍ତି । ଏଥିରେ ବ୍ୟବହୃତ ହେଉଥିବା ଜାଳେଣୀ କାଠ ପୂର୍ବାପେକ୍ଷା ୩ ଭାଗରୁ ମାତ୍ର ଭାଗେ ଆବଶ୍ୟକ ହେଉଥିବାରୁ ଏହା ଆଦୃତ ଲାଭ କରିଛି । ଏହି ଚୂଲା ପରିବେଶ ପ୍ରଦୂଷଣର ପରିମାଣକୁ କମାଇବା ସହିତ ଜଙ୍ଗଲ ଉପରେ ନିର୍ଭରଶୀଳ ଥିବା ଲୋକେ କମ୍ ଜାଳେଣି ବ୍ୟବହାର କରି ଜଙ୍ଗଲ ବୃଦ୍ଧିରେ ସହାୟତା କରୁଛନ୍ତି । ଏଥିସହ ରୋଷେଇ କରୁଥିବା ମହିଳାମାନଙ୍କର ଧୂମଜନିତ ଚକ୍ଷୁ ବେମାରି ରୋକାଯାଇ ପାରିଛି । ବାସ ଗୃହ ମଧ୍ୟ ଧୂମଜନିତ ପରିବେଶ ସୁରକ୍ଷା ସହ ନିଜର ଆବର୍ଜନାରୁ ମୁକ୍ତ ରହିପାରୁଛି ।



ଦେବଗଡ଼ ବନାଞ୍ଚଳ ତଥା ବନଖଣ୍ଡ ସମେତ ଓଡ଼ିଶାର ଅନ୍ୟାନ୍ୟ ଗ୍ରାମାଞ୍ଚଳରେ ଏହି ରନ୍ଧନ ପ୍ରଣାଳୀ ପ୍ରବର୍ତ୍ତନ କରାଗଲେ ଜଙ୍ଗଲ ଅଭିବୃଦ୍ଧି ଓ ପରିବେଶ ସୁରକ୍ଷା ହୋଇପାରନ୍ତା ବୋଲି ଆଶା କରାଯାଏ । ଦେବଗଡ଼ ବନାଞ୍ଚଳ ଅଧିକାରୀ ଶ୍ରୀ ବିଷ୍ଣୁଚରଣ ବେହେରାଙ୍କ ଉଦ୍ୟମ ଏବଂ ଦେବଗଡ଼ ବନଖଣ୍ଡ ଅଧିକାରୀ ଶ୍ରୀ ଭୀମସେନ ମହାରଣାଙ୍କ ପ୍ରୋତ୍ସାହନ ଫଳରେ ଏହି ଚୂଲା ଜନାଦୃତ ହୋଇପାରିଛି ।

ଓଡ଼ିଶା ବନାଞ୍ଚଳ ଉନ୍ନୟନ ପ୍ରକଳ୍ପ ମାଧ୍ୟମରେ ଦେବଗଡ଼ ବନଖଣ୍ଡରେ ପ୍ରଥମ ଦଫାରେ ୭୭ ଗୋଟି, ଦ୍ୱିତୀୟ ଦଫାରେ ୬୩ ଗୋଟି ଏବଂ ତୃତୀୟ ଦଫାରେ ପାଖାପାଖି ୮୦ ଗୋଟି ବନସଂରକ୍ଷଣ ସମିତିକୁ ନେଇ ପତିତ ଜଙ୍ଗଲର ପୁନରୁଦ୍ଧାର ଏବଂ ଜଙ୍ଗଲ ଉପରେ ନିର୍ଭର କରି ଚଳୁଥିବା ଗରିବ ଆଦିବାସୀ ତଥା ବନବାସୀମାନଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ନିମନ୍ତେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଉକ୍ତ ପ୍ରକଳ୍ପ ମାଧ୍ୟମରେ ପ୍ରତ୍ୟେକ ବନସଂରକ୍ଷଣ ସମିତି ପାଇଁ ପ୍ରତି ଗ୍ରାମରେ ଗୋଟିଏ ଲେଖାଏଁ କାର୍ଯ୍ୟାଳୟ ତଥା ସଭାଗୃହ, ଗ୍ରାମାଭିମୁଖୀ ଉନ୍ନତିମୂଳକ କାର୍ଯ୍ୟ, ଏକ ଲକ୍ଷ ଟଙ୍କାର ଆବର୍ତ୍ତନ ପାଣ୍ଠି ତଥା ଜଙ୍ଗଲ ଉନ୍ନତିକଳ୍ପେ ଗ୍ରାମ ଲୋକଙ୍କୁ ନେଇ କରାଯାଇଥିବା ଅଣୁ ଯୋଜନା ମାଧ୍ୟମରେ ଜଙ୍ଗଲରେ ଆବଶ୍ୟକୀୟ ବନୀକରଣ କରାଯାଇ ଜଙ୍ଗଲର ପରିସୀମା ବୃଦ୍ଧି କରାଯାଉଛି । ଏହି ପ୍ରକଳ୍ପର ସଫଳ ରୂପାୟନ ପାଇଁ ଦେବଗଡ଼ ବନଖଣ୍ଡ ଅଧିକାରୀଙ୍କୁ ଅଧିକ ଅଭିଜ୍ଞତା ଅର୍ଜନ ପାଇଁ ଓଡ଼ିଶା ସରକାରଙ୍କ ତରଫରୁ ନିକଟରେ ଜାପାନ ପରିଦର୍ଶନ କରିବାର ସୁଯୋଗ ଦିଆଯାଇଅଛି । ଏତଦ୍ୱାରା ଦେବଗଡ଼ ଜିଲ୍ଲାରେ ବନାଞ୍ଚଳ ଉନ୍ନୟନ ପ୍ରକଳ୍ପର ଆଭିମୁଖ୍ୟ ପୂରଣ ହେବା ସହିତ ବନବାସୀମାନଙ୍କର ଆର୍ଥିକ ମାନଦଣ୍ଡ ବୃଦ୍ଧି ପାଇ ପାରିଛି ।

ସୌଜନ୍ୟ : ଶ୍ରୀ ବରଦା ପ୍ରସନ୍ନ ଦାସ, ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ, ଦେବଗଡ଼

## ଜନ୍ମ ଶତବାର୍ଷିକରେ ଶ୍ରଦ୍ଧାଞ୍ଜଳି





ଆବିର୍ଭାବ : ୨୧ ଏପ୍ରିଲ ୧୯୧୦

ତିରୋଭାବ : ୯ ସେପ୍ଟେମ୍ବର ୧୯୮୦



# ଅବିସ୍ମରଣୀୟ ସଦାଶିବବାବୁ

ପ୍ରଫୁଲ୍ଲ ସାମଲ

ଓଡ଼ିଶାର ରାଜନୀତି ଓ ଜନସେବା କ୍ଷେତ୍ରରେ ଯେଉଁମାନେ ନିଜକୁ ନିୟୋଜିତ କରି ଚରମ ତ୍ୟାଗ ପ୍ରଦର୍ଶନ କରି ଯାଇଛନ୍ତି, ସେମାନଙ୍କ ମଧ୍ୟରେ ମହାନ୍ ସ୍ୱାଧୀନତା ସଂଗ୍ରାମୀ ଓ ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗୀୟ ସଦାଶିବ ତ୍ରିପାଠୀ ଅନ୍ୟତମ ।

ଭାରତରେ ସ୍ୱାଧୀନତା ସଂଗ୍ରାମର ଇତିହାସ ଅତି ବିରାଟ । ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଓଡ଼ିଶାର ଲୋକେ ହିଁ ଭାରତର ସ୍ୱାଧୀନତା ଆନ୍ଦୋଳନ କ୍ଷେତ୍ରରେ ଅପୂର୍ବ ତ୍ୟାଗ ସ୍ୱୀକାର କରିଥିଲେ । ଓଡ଼ିଶାର ଉପକୂଳ ଅଞ୍ଚଳ ଅବିଭକ୍ତ କଟକ, ପୁରୀ ଓ ବାଲେଶ୍ୱର ଅଞ୍ଚଳ ସମେତ ଦକ୍ଷିଣରେ ଗଞ୍ଜାମ ଓ କୋରାପୁଟ ଅଞ୍ଚଳ ଓ ପଶ୍ଚିମରେ ସମ୍ବଲପୁର ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନ ଅତି ବ୍ୟାପକ ହୋଇଥିଲା । ୧୯୪୨ରେ ଭାରତଛାଡ଼ ଆନ୍ଦୋଳନ ବା ଅଗଷ୍ଟ ବିପ୍ଳବରେ ଅହିଂସା ଉପାୟରେ ବ୍ରିଟିଶ ସରକାରଙ୍କ ବିରୋଧରେ ଆନ୍ଦୋଳନ ତୀବ୍ରତର ହୋଇଥିଲା । ଇତିହାସରୁ ଜଣାପଡ଼େ ଯେ କୋରାପୁଟ ଅଞ୍ଚଳର ଏକମାତ୍ର ଆଦିବାସୀ ନେତା ଲକ୍ଷ୍ମଣ ନାଏକ ସେହି ଆନ୍ଦୋଳନ ବେଳେ ମିଥ୍ୟା ଅଭିଯୋଗରେ ଫାଶୀ ପାଇଥିବା ବେଳେ ବ୍ରିଟିଶ ପୋଲିସ୍ ଗୁଳିରେ ସର୍ବାଧିକ ୨୮ ଜଣ ସଂଗ୍ରାମୀ ଇରମ (ଭଦ୍ରକ)ରୁ ନିହତ ହୋଇଥିଲେ । ଭଦ୍ରକର ଲୁଣିଆ ଅଞ୍ଚଳରେ ମଧ୍ୟ ପୋଲିସ୍ ଗୁଳିରେ ଅନ୍ୟ ୧୦ ଜଣ ସଂଗ୍ରାମୀ ପ୍ରାଣ ହରାଇଥିଲେ । ସେହିପରି କୋରାପୁଟ ଜିଲ୍ଲାରେ ପୋଲିସ୍ ଗୁଳିରେ ୨୫ ଜଣ, କଟକ ଜିଲ୍ଲାର ବରି ଅନ୍ତର୍ଗତ କଳାମାଟିଆରେ ୪ ଜଣ, ଜଳେଶ୍ୱର ଥାନା ଅଞ୍ଚଳରୁ ୪ ଜଣ ଓ ନିମାପଡ଼ା (ପୁରୀ) ଅଞ୍ଚଳରୁ ଜଣେ ପ୍ରାଣ ହରାଇଥିଲେ । ଏହାସତ୍ତ୍ୱେ ଓଡ଼ିଶାର ଲୋକେ ସ୍ୱାଧୀନତା ପାଇଁ ପ୍ରାଣମୂର୍ଚ୍ଛା ଆନ୍ଦୋଳନ କରିଥିଲେ ।

ସେହି ସଂଗ୍ରାମୀମାନଙ୍କ ମଧ୍ୟରୁ ପୋଲିସ୍ ଗୁଳିରେ ବା ଜେଲ୍‌ରେ ସଢ଼ି ସଢ଼ି ଯେଉଁମାନେ ନମରି ଆନ୍ଦୋଳନ ଜରିଆରେ ଭାରତକୁ ସ୍ୱାଧୀନ କରିଥିଲେ, ସେମାନଙ୍କ ମଧ୍ୟରେ ସ୍ୱର୍ଗୀୟ ସଦାଶିବ ତ୍ରିପାଠୀ ଥିଲେ ଅନ୍ୟତମ । ଯେଉଁଦିନ ବ୍ରହ୍ମପୁର ଜେଲରେ ଲକ୍ଷ୍ମଣ ନାଏକ ଫାଶୀ ପାଇଲେ ତା' ପୂର୍ବଦିନ ସ୍ୱର୍ଗୀୟ ତ୍ରିପାଠୀ ଲକ୍ଷ୍ମଣ ନାଏକଙ୍କୁ ଭେଟି ପଚାରିଥିଲେ, ତାଙ୍କର ଶେଷ ଇଚ୍ଛା । ଭାରତ ନିଶ୍ଚୟ ସ୍ୱାଧୀନ ହେବ ଯଦିଓ ସେ ସ୍ୱାଧୀନତା ଦେଖି ପାରିବେନି ବୋଲି କହିଥିଲେ । ସେଦିନ ତାଙ୍କ ନିକଟରୁ କାନ୍ଦି କାନ୍ଦି ଜେଲ୍‌ର ଅନ୍ୟ ପ୍ରକୋଷ୍ଠକୁ ଚାଲି ଆସିଥିଲେ ସଦାଶିବବାବୁ । ମୋର ସୌଭାଗ୍ୟ ଯେ ସେଦିନ ବ୍ରହ୍ମପୁର ଜେଲ୍‌ରେ ଲକ୍ଷ୍ମଣ ନାଏକ ଫାଶୀ ପାଇବା ସମୟରେ ଭଦ୍ରକ ଅଞ୍ଚଳର ଯେଉଁ ସର୍ବ କନିଷ୍ଠ ସଂଗ୍ରାମୀ ଉପସ୍ଥିତ ଥିଲେ, ସେ ହେଉଛନ୍ତି ଶ୍ରୀ ଗୌରଚନ୍ଦ୍ର ମହାପାତ୍ର । ଭଣ୍ଡାରିପୋଖରୀ ଥାନା ପୋଡ଼ି ଅଭିଯୋଗରେ ତାଙ୍କୁ ବ୍ରହ୍ମପୁର ଜେଲ୍‌ରେ ଅଟକ ରଖାଯାଇଥିଲା ।

ସ୍ୱାଧୀନତା ସଂଗ୍ରାମୀ ଭାବେ ରାଜନୀତିରେ ଯୋଗଦେଇ ସଦାଶିବବାବୁ ରାଜନୀତିରେ ସାଧୁତା ଓ କାର୍ଯ୍ୟଦକ୍ଷତାର ଅପୂର୍ବ ପରମ୍ପରା ସୃଷ୍ଟି କରିଥିଲେ । ସ୍ୱାଧୀନତା ପୂର୍ବରୁ ଓଡ଼ିଶାରେ ଦୁଇ ଦୁଇଥର ବିଧାୟକ ହୋଇ ସ୍ୱାଧୀନତା ପରବର୍ତ୍ତୀ କାଳରେ ସେ ପ୍ରାୟ ଛଅଥର ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ହୋଇଥିଲେ ବି ତାଙ୍କର ବ୍ୟକ୍ତିତ୍ୱପ୍ରତି ଏ ପର୍ଯ୍ୟନ୍ତ କେହି ଦୋଷାରୋପ କରି ନାହାନ୍ତି । ସେପରି ଜଣେ ମହାନ୍ ବ୍ୟକ୍ତିଙ୍କର ଜନ୍ମ ଶତବାର୍ଷିକ ଉତ୍ସବ, ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିର୍ଦ୍ଦେଶରେ ପାଳିତ ହେଉଥିବାରୁ ଓ ମୋତେ ସେହି ରାଜ୍ୟସ୍ତରୀୟ ଜନ୍ମଶତବାର୍ଷିକ କମିଟିର ଅଧ୍ୟକ୍ଷ ଦାୟିତ୍ୱ ମାନ୍ୟବର ମୁଖ୍ୟମନ୍ତ୍ରୀ ଦେଇଥିବାରୁ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି । ମାନ୍ୟବର ସୂଚନା ପ୍ରଯୁକ୍ତି ବିଭାଗର ରାଷ୍ଟ୍ରମନ୍ତ୍ରୀ ତଥା ଶାବରୀ ସାଂସ୍କୃତିକ ସଂସଦର ଅଧ୍ୟକ୍ଷ ତଥା ମାନ୍ୟବର ମନ୍ତ୍ରୀ ଶ୍ରୀ ରମେଶ ମାଝୀ, ମାନ୍ୟବର ଉପବାଚସ୍ପତି ଶ୍ରୀ ଲାଲବିହାରୀ ହିମିରିକା ଓ ଅବିଭକ୍ତ କୋରାପୁଟ ଜିଲ୍ଲାର ସମସ୍ତ ସାଂସଦ, ବିଧାୟକ ଏହି କମିଟିର ସଦସ୍ୟପଦ ମଣ୍ଡନ କରିଥିବାରୁ ମୁଁ ଆନନ୍ଦିତ । ଆମ ବିଭାଗପକ୍ଷରୁ 'ଉତ୍କଳ ପ୍ରସଙ୍ଗ' ସଦାଶିବବାବୁଙ୍କ ସ୍ମୃତିରେ ଏକ ବିଶେଷାଙ୍କ ପ୍ରକାଶ କରୁଥିବା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ।

ମନ୍ତ୍ରୀ, ସୂଚନା ଓ ଲୋକ ସଂପର୍କ
ଏବଂ ପଞ୍ଚାୟତିରାଜ ତଥା ଅଧ୍ୟକ୍ଷ, ରାଜ୍ୟସ୍ତରୀୟ
ସଦାଶିବ ତ୍ରିପାଠୀ ଜନ୍ମ ଶତବାର୍ଷିକ କମିଟି, ଭୁବନେଶ୍ୱର

# ବିଜୁବାବୁ ଓ ସଦାଶିବବାବୁ

ରମେଶ ଚନ୍ଦ୍ର ମାଝୀ

**ଆ**ଜି ଯେତେବେଳେ ସମଗ୍ର ଓଡ଼ିଆ ଜାତି ଉତ୍କଳର କିଛି ରାଜନେତାଙ୍କ କଥା ସ୍ମରଣ କରେ ପ୍ରଥମରୁ ଆଗଧାଡ଼ିରେ ଥିବା ସ୍ୱର୍ଗତଃ ବିଜୁବାବୁ ଓ ସଦାଶିବ ତ୍ରିପାଠୀଙ୍କ କଥା ଚିନ୍ତା କରେ । ଜଣେ ଥିଲେ ଏ ମାଟିର ସନ୍ତାନ ପୁଣି ସ୍ୱାଧୀନତା ସଂଗ୍ରାମୀ ଓ ମୁଖ୍ୟମନ୍ତ୍ରୀ । ଅନ୍ୟ ଜଣେ ଥିଲେ ଏ ମାଟିର ସ୍ୱାଧୀନତା ସଂଗ୍ରାମୀ ଓ ମୁଖ୍ୟମନ୍ତ୍ରୀ । ଦୁଇଜଣଙ୍କ ମଧ୍ୟରେ ଥିବା ସଂପର୍କ ଓ ଅନୁଭୂତି ସମ୍ପର୍କ ଇତିହାସର ଡୋରିରେ ଏବେବି ବନ୍ଧା ହୋଇଛି ।

୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନବେଳେ ବ୍ରହ୍ମପୁର ଜେଲ୍‌ରେ ବିଜୁବାବୁ (ତତ୍କାଳୀନ ଜନପ୍ରିୟ ନାମ ବିଜୟାନନ୍ଦ ପଟ୍ଟନାୟକ) ନବରଙ୍ଗପୁରିଆ ସ୍ୱାଧୀନତା ସଂଗ୍ରାମୀ ମହମ୍ମଦ ବାଜୀଙ୍କ ସହ ଏକ କୋଠରୀରେ ରହୁଥିଲେ । ସେ ଅଞ୍ଚଳର ଡଃ ସଦାଶିବ ତ୍ରିପାଠୀ, ଜଗନ୍ନାଥ ତ୍ରିପାଠୀ, ରବି ସିଂ ମାଝୀ ଓ ପାଙ୍ଗି ମୁସରିସାନ୍ତାଙ୍କ ସେ ଥିଲେ ଅତି ଅନ୍ତରଙ୍ଗ ମଣିଷ ।

୧୯୬୩ ମସିହାରେ ଡଃ ସଦାଶିବ ତ୍ରିପାଠୀଙ୍କୁ ମୁଖ୍ୟମନ୍ତ୍ରୀ କରିବା ପାଇଁ ବିଜୁବାବୁ ଯେଉଁ ଦୃଢ଼ ସଂକଳ୍ପ ନେଇଥିଲେ ତାହା କରି ଦେଖେଇଥିଲେ । ଅବଶ୍ୟ ପରବର୍ତ୍ତୀ ସମୟରେ ରାଜନୈତିକ ପରିବର୍ତ୍ତିତ ପରିସ୍ଥିତିରେ ସଂପର୍କ ତିକ୍ତ ହୋଇଥିଲା ସତ ମାତ୍ର ଡଃ ହରେକୃଷ୍ଣ ମହତାବ ଓ ଅନ୍ୟାନ୍ୟ ନେତୃମଣ୍ଡଳୀଙ୍କୁ ଠିକ୍ ଜବାବ୍ ଦେବାପାଇଁ ସେ ଡଃ ତ୍ରିପାଠୀଙ୍କୁ ମୁଖ୍ୟମନ୍ତ୍ରୀ ଗାଦିରେ ବସାଇଥିଲେ ।

ଡୁଡୁମା ଜଳପ୍ରପାତର ନବୀକରଣ, ଦାମନଯୋଡ଼ି ପ୍ରକଳ୍ପର ନକ୍ସା ପ୍ରସ୍ତୁତି, ମିଗ୍ ବିମାନ କାରଖାନାର ରୂପରେଖ, ନୂତନ ରେଳପଥ ପ୍ରଭୃତି ଥିଲା ବିଜୁବାବୁଙ୍କ କୋରାପୁଟ ଅଞ୍ଚଳ ପାଇଁ ଦାନ । ତତ୍କାଳୀନ ଅବସ୍ଥାରେ ଯେତେବେଳେ ବିକାଶ କଥା ସେ ଚିନ୍ତା କରୁଥିଲେ ଡଃ ତ୍ରିପାଠୀଙ୍କ ସହ ସେ ଆଲୋଚନା କରୁଥିଲେ । ସେ ସବୁ କଥା ଇତିହାସର ମାଇଲଖୁଣ୍ଟ ହୋଇ ଠିଆ ହୋଇଛି ।

୧୯୬୪ ମସିହାରେ ହୀରାକୁଦ ବନ୍ଧର ଶୁଭ ଉଦ୍‌ଘାଟନ ଅବସରରେ ବିଜୁ ପଟ୍ଟନାୟକ ଯେଉଁ କେତେଜଣଙ୍କୁ ସେଠାରେ କାର୍ଯ୍ୟକ୍ରମ ଓ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଭବ୍ୟ ସମ୍ବର୍ଦ୍ଧନାର ଦାୟିତ୍ୱ ଦେଇଥିଲେ, ସେମାନଙ୍କ ମଧ୍ୟରେ ଭବାନୀ ଶଙ୍କର ପଟ୍ଟନାୟକ, ଜଗନ୍ନାଥ ତ୍ରିପାଠୀ ଓ କସ୍ତୁରି ଚରଣ ମଲ୍ଲିକ ଅନ୍ୟତମ ।

୧୯୬୧ ମସିହାରେ ବିଜୁବାବୁଙ୍କ ସହଯୋଗରେ ଯେଉଁ ମନ୍ତ୍ରିମଣ୍ଡଳ ଭଙ୍ଗାଗଲା ସେଥିରେ ୧୨ ଜଣ କୋରାପୁଟିଆ ବିଜୁପ୍ରେମୀ ଏକ ସଙ୍ଗେ ଦସ୍ତଖତ କରି ରାଜ୍ୟପାଳଙ୍କୁ ଦେଇଥିଲେ, ସେମାନେ ଥିଲେ ଡଃ ସଦାଶିବ ତ୍ରିପାଠୀ (ଉମରକୋଟ), ଜଗନ୍ନାଥ ତ୍ରିପାଠୀ (ଡାବୁଗାଁ), ମିରୁ ହରିଜନ (ନବରଙ୍ଗପୁର), ରଘୁନାଥ ପଟ୍ଟନାୟକ (ଜୟପୁର), ଗୁରୁ ନାୟକ (ମାଲକାନଗିରି), ମହାଦେବ ବକରିଆ (କୋଟପାଡ଼), ଟି. ସାଙ୍ଗନା (କୋରାପୁଟ), ପାଙ୍ଗି ମୁସୁରିସାନ୍ତା (ପଟାଙ୍ଗି), ମାଡ଼ାଙ୍ଗି କାମୟା (ରାୟଗଡ଼ା), ନରସିଂହ ପାତ୍ର (ଗୁଣପୁର), ବିଶ୍ୱନାଥ ଚୌଧୁରୀ (ବିଷମକଟକ) ।

୧୯୬୪ ମସିହାରେ ଜାତୀୟ କଂଗ୍ରେସ ଅଧିବେଶନ ଭୁବନେଶ୍ୱରରେ ବସିଥିଲା । ସ୍ୱର୍ଗତଃ ବିଜୁ ପଟ୍ଟନାୟକ ବହୁ ଆର୍ଥିକ ସମସ୍ୟାର ସମ୍ମୁଖୀନ ହୋଇଥିଲେ । ପଣ୍ଡିତ ନେହେରୁଙ୍କପ୍ରତି ତାଙ୍କ ଶ୍ରଦ୍ଧା ଓ ସମ୍ମାନ ଏଥିରୁ ଅନୁମେୟ । ସେ ସମୟରେ ପ୍ରଥମ ଥର ପାଇଁ 'ଶହୀଦ ଲକ୍ଷ୍ମଣ ନାଏକ ଫାଟକ' ତିଆରି କରିବା ପାଇଁ ବିଜୁବାବୁ ଅର୍ଡ଼ର ଦେଇଥିଲେ । ଲକ୍ଷ୍ମଣ ନାଏକ ଭବନ, ଶହୀଦ ପାର୍କ ପ୍ରତିଷ୍ଠା ହିଁ କୋରାପୁଟିଆ ଆତ୍ମୀୟତାର ଏକ ଜ୍ୱଳନ୍ତ ନିଦର୍ଶନ ।

ଆଜି ସମଗ୍ର ଓଡ଼ିଶା ତାଙ୍କର ଶତବାର୍ଷିକ ଦିବସ ପାଳନ କରୁଅଛି । ଏହାର ମୁଖ୍ୟ ଭୂମିକା ନେଇଛି ଶବରୀ ସଂସ୍କୃତି ଅନୁଷ୍ଠାନ । ସମସ୍ତଙ୍କ ସହଯୋଗରେ ସେହି ମହାନ୍ ଆତ୍ମା ସ୍ୱର୍ଗୀୟ ସଦାଶିବ ତ୍ରିପାଠୀଙ୍କ ଜୟନ୍ତୀରେ ସାମିଲ ହେବା ସହ ଶ୍ରଦ୍ଧାଞ୍ଜଳି ଦେବେ, ଏତିକି ଆଜିର କାମନା ।

ରାଷ୍ଟ୍ରମନ୍ତ୍ରୀ
ବିଜ୍ଞାନ ଓ କାରିଗରୀ ତଥା ସୂଚନା ପ୍ରଯୁକ୍ତି ବିଦ୍ୟା

# ସ୍ମରଣୀୟ ସଦାଶିବବାବୁ

ଲାଲବିହାରୀ ହିମିରିକା

ନବରଙ୍ଗପୁର ଏବେ ଜିଲ୍ଲା ହୋଇଥିଲେ ହେଁ ସେତେବେଳେ ଅବିଭକ୍ତ କୋରାପୁଟ ଅଞ୍ଚଳରେ ଥିଲା । ମୁଁ ଏବେ ରାୟଗଡ଼ା ଜିଲ୍ଲାରୁ ପ୍ରତିନିଧିତ୍ୱ କରୁଥିଲେ ବି ଏହି ଜିଲ୍ଲା ଏକଦା କୋରାପୁଟ ଜିଲ୍ଲାରେ ଥିଲା । ଗତ ୧୯୧୦ ଅପ୍ରେଲ ୨୧ ତାରିଖରେ ନବରଙ୍ଗପୁର ଅଞ୍ଚଳରେ ଏକ ସଂଭ୍ରାନ୍ତ ବ୍ରାହ୍ମଣ ଓ ଜମିଦାର ପରିବାରରେ ଜନ୍ମଗ୍ରହଣ କରି ସମଗ୍ର ଓଡ଼ିଶାରେ ଜଣେ ସଚ୍ଚୋଟ ରାଜନୀତିଜ୍ଞ ଭାବେ ଖ୍ୟାତିଲାଭ କରି ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ହୋଇଥିବା ସ୍ୱର୍ଗତଃ ସଦାଶିବ ତ୍ରିପାଠୀଙ୍କ ଜନ୍ମ ଶତବାର୍ଷିକରେ ମୁଁ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ପ୍ରଣିପାତ କରୁଛି ।

ଆଜି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଉଦ୍ୟମ ଯୋଗୁଁ କୋରାପୁଟ ଅଞ୍ଚଳରେ ସ୍ୱାଧୀନତାର ୬୨ ବର୍ଷ ପରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଗଢ଼ି ଉଠିଥିବା ଆନନ୍ଦର କଥା । କେନ୍ଦ୍ର ସରକାରଙ୍କ ଉପରେ ବାରମ୍ବାର ଚାପ ପକାଇ ସେ ଯେପରି ଏହି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ କରିପାରିଲେ, ଆମ କୋରାପୁଟ ଅଞ୍ଚଳରୁ ମୁଖ୍ୟମନ୍ତ୍ରୀ ହୋଇଥିବା ସଦାଶିବବାବୁ ମଧ୍ୟ କେନ୍ଦ୍ର ସରକାରଙ୍କ ଉପରେ ଚାପ ପକାଇ ବ୍ରହ୍ମପୁର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରି ଓଡ଼ିଶାର ପଶ୍ଚିମାଞ୍ଚଳ ଓ ଦକ୍ଷିଣାଞ୍ଚଳ ଲୋକଙ୍କ ଦୀର୍ଘଦିନର ଆଶାକୁ ପୂରଣ କରିପାରିଥିଲେ ।

ସ୍ୱାଧୀନତା ସଂଗ୍ରାମ କ୍ଷେତ୍ରରେ ତାଙ୍କର ଅବଦାନ ମଧ୍ୟ ଅବିସ୍ମରଣୀୟ । ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଓ ଫାଶୀ ପାଇ ଶହୀଦ ହୋଇଥିବା ଆଦିବାସୀ ସ୍ୱାଧୀନତା ସଂଗ୍ରାମୀ ଲକ୍ଷ୍ମଣ ନାଏକଙ୍କ ସହ ଅବିଭକ୍ତ କୋରାପୁଟ ଅଞ୍ଚଳରେ ସେ ଯେପରି ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ବ୍ରିଟିଶ ସରକାରଙ୍କ ବିରୋଧରେ ଅହିଂସା ଆନ୍ଦୋଳନ କରିଥିଲେ, ତାହାର ପଟାନ୍ତର ନାହିଁ । ମିଥ୍ୟା ଅଭିଯୋଗରେ ବ୍ରହ୍ମପୁର ଜେଲ୍‌ରେ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଦିଆଯିବା ପୂର୍ବରୁ ସଦାଶିବବାବୁ ତାଙ୍କୁ ସାକ୍ଷାତ କରିଥିଲେ । ମାତ୍ର ଲକ୍ଷ୍ମଣ ଫାଶୀ ପାଇବା ପୂର୍ବରୁ ମଧ୍ୟ ନିଜ ପରିବାର ବିଷୟରେ ବିଚଳିତ ନ ହୋଇ ଭାରତ ସ୍ୱାଧୀନ ହେବ ବୋଲି ସଦାଶିବବାବୁଙ୍କ ନିକଟରେ ପ୍ରକାଶ କରିଥିଲେ ।

ଭାରତରେ ବିଶେଷ କରି ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମରେ ଇତିହାସକୁ ବିଧିବଦ୍ଧ ଭାବେ ଲେଖାଯାଇନାହିଁ । ଲେଖାଯାଇପାରିଲେ ଭବିଷ୍ୟତ ବଂଶଧର ସେହି ସ୍ୱାଧୀନତା ସଂଗ୍ରାମର ତ୍ୟାଗ ଓ ଆଦର୍ଶ ବିଷୟରେ ଅନୁଭବ କରି ପାରନ୍ତେ । ଆଜି ସଦାଶିବବାବୁଙ୍କ ଜନ୍ମ ଶତବାର୍ଷିକରେ ତାଙ୍କର ତ୍ୟାଗ ଓ ଆଦର୍ଶ ଆମ୍ଭମାନଙ୍କୁ ଅଗ୍ରସର ହେବା ଲାଗି ପ୍ରେରଣା ଦେଉ ।

ଉପବାଚସ୍ପତି
ଓଡ଼ିଶା ବିଧାନସଭା, ଭୁବନେଶ୍ୱର

# ଅବିସ୍ମରଣୀୟ

ଭୂପିନ୍ଦର ସିଂ

**ସ**ଦାଶିବ ତ୍ରିପାଠୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ଏଥିପାଇଁ ସେ ଆମର ନମସ୍ୟ । ଏକଥା କହିବା ପ୍ରାସଙ୍ଗିକ, କିନ୍ତୁ ସେ ଥିଲେ ସମଗ୍ର ଓଡ଼ିଶା ପ୍ରଦେଶର ବରେଣ୍ୟ ଜନନାୟକ ଓ ସ୍ୱାଧୀନତା ସଂଗ୍ରାମୀ । ଏହି ଶତାବ୍ଦୀ ପୁରୁଷଙ୍କ ସ୍ୱାଧୀନତା ସଂଗ୍ରାମର ଇତିହାସ ଓଡ଼ିଆ ଜାତି ପାଇଁ ଚିର ସ୍ମରଣୀୟ । ମହାମାନବ ମହାତ୍ମା ଗାନ୍ଧୀଙ୍କ ଡାକରାରେ ଦେଶର ସ୍ୱରାଜ୍ୟ ପାଇଁ ସେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଯେତେବେଳେ ଅବିଭକ୍ତ କୋରାପୁଟ ଜିଲ୍ଲାର ସ୍ୱାଧୀନତା ଆନ୍ଦୋଳନ କଥା ମନେପଡ଼େ, ସେତେବେଳେ ସଦାଶିବ ତ୍ରିପାଠୀଙ୍କ ବିନା କୋରାପୁଟିଆ ସ୍ୱରାଜ୍ୟ ସଂଗ୍ରାମର ଇତିହାସ ଅପୂର୍ଣ୍ଣ ରହେ । ସେ ଏପ୍ରିଲ୍ ମାସ ୨୯ ତାରିଖ ୧୯୧୦ ମସିହାରେ ଜନ୍ମ ହୋଇଥିଲେ । ଦୀର୍ଘ ବର୍ଷର କର୍ମମୟ ଜୀବନ ପରେ ସେପ୍ଟେମ୍ବର ୯ ତାରିଖ ୧୯୮୦ ମସିହାରେ ସେହି ମହାନ୍ ନାୟକଙ୍କର ତିରୋଧାନ ହୋଇଥିଲା ।

ଗତ ଦିନରେ କୋରାପୁଟଠାରେ ଜାତୀୟ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଉତ୍ସବ ଦିନ ଏକଥା ମୁଁ କହିଥିଲି । ମୁଁ ପ୍ରଥମେ ସେ ମାଟିକୁ ନମସ୍କାର କରି ତା'ର ଧୂଳି ସ୍ପର୍ଶ କରେ । କାରଣ ଅବିଭକ୍ତ କୋରାପୁଟ ଜିଲ୍ଲାର ଜଣେ ଆଦିବାସୀ ପୁଅ ଲକ୍ଷ୍ମଣ ନାଏକ ମାଟି ମା' ପାଇଁ ନିଜର ଆତ୍ମ ବଳିଦାନ ଦେଇଥିଲେ । ସେ ମାଟିର ପୁଅ ସଦାଶିବ ତ୍ରିପାଠୀ ଗରିବ ରୟତ ପ୍ରଜାର ଜଙ୍ଗଲ ଜମିର ଅଧିକାର କଥା ସେଦିନ ଚିନ୍ତା କରିଥିଲେ । ହୁଏତ ଆମେ ଆଜି ଚିନ୍ତା କରୁଛେଁ । ନଚେତ୍ ଭୂସଂସ୍କାର ଆଇନ ଓ ଜମିଦାର ପ୍ରଜା ଉଚ୍ଛେଦର ନବ ଜାଗରଣ ଯିଏ ଆଣିଥିଲା – ସେହି ସଦାଶିବ ତ୍ରିପାଠୀ ଏଥିପାଇଁ ଧନୀକ ଓ ରାଜଗୋଷ୍ଠୀର ଶିକାର ହୋଇଥିଲେ । ମାତ୍ର ନିଜ ଅଟଳରୁ ଓହରି ନଥିଲେ । ତେଣୁ ସେ ମାଟି ଧନ୍ୟ । ସ୍ୱାଧୀନତା ଆନ୍ଦୋଳନରେ ଶହ ଶହ ଶହୀଦ ନିଜ ରକ୍ତକୁ ଉତ୍ସର୍ଗ କରିଥିଲେ, ଭାରତ ମାଟିର ସ୍ୱରାଜ୍ୟ ପାଇଁ । ବ୍ରିଟିଶ ସାମ୍ରାଜ୍ୟ ବିରୋଧରେ ଆଦିବାସୀ ଜନଜାତିର ରକ୍ତ ତର୍ପଣ ବିରଳ ଅଧ୍ୟାୟ – 'ଏ କଥା ମୁଁ ଯେତେବେଳେ କୋରାପୁଟ ରାସ୍ତାରେ ଯାତ୍ରା ସମୟରେ ବ୍ୟାଖ୍ୟା କରିଥିଲି । ଅଜାଣତରେ ମଧ୍ୟ ମୋର ମୁଖମଣ୍ଡଳରୁ ତାହା ବାହାରି ଆସିଥିଲା ।

ବିଧାନସୌଧରେ ବସିବାର ସୁଯୋଗ ପାଇଛି । ମାତ୍ର ଏହା ପୂର୍ବରୁ ମୁଁ ସେ ଅଞ୍ଚଳ ସହ ଜଡ଼ିତ, ଏକଥା ସମସ୍ତେ ଜାଣନ୍ତି । ସ୍ୱର୍ଗତଃ ତ୍ରିପାଠୀ ଥିଲେ ଦୀର୍ଘ ୧୫ ବର୍ଷରୁ ଊର୍ଦ୍ଧ୍ୱ ସମୟ ରାଜସ୍ୱ ମନ୍ତ୍ରୀ । ପରବର୍ତ୍ତୀ ସମୟରେ ମୁଖ୍ୟମନ୍ତ୍ରୀ ଓ ଦଳୀୟ ନେତା । ସେ ରାଜସ୍ୱ ମନ୍ତ୍ରୀ ଥିବାବେଳେ ମହାଜନମାନଙ୍କ କବ୍‌ଜାରେ ରଖିଥିବା ବନ୍ଧକ ଜମିକୁ ମୁକୁଳାଇ ଜନସାଧାରଣଙ୍କ ମଧ୍ୟରେ ବାଣ୍ଟିଥିଲେ । ଜଣେ ଆର୍ଥିକ ସ୍ୱଚ୍ଛଳ ବ୍ୟକ୍ତି ୩୦ ଏକରରୁ ଅଧିକ ଜମିର ଭାଗୀଦାର ହୋଇପାରିବ ନାହିଁ । ବଳକା ଜମିଗୁଡ଼ିକ ହସ୍ତାନ୍ତର ଯୋଗ୍ୟ ହେବ ନାହିଁ । ପ୍ରତ୍ୟେକ ଜମିର ମାଲିକାନା ସ୍ୱତନ୍ତ୍ର ପଟ୍ଟାର ଅଧିକାରୀ ହେବ । ଅଧିକ ଜମି ଯାହା ନାମରେ ଥିବେ, ତାକୁ ସିଲ୍ କରି ରୟତ ପ୍ରଜାକୁ ବାଣ୍ଟି ଦିଆଯିବ । ରାଜରାଜୁଡ଼ାଙ୍କ ପାଖରେ ଅଧିକ ଜମିଜମା ସବୁ ସରକାରଙ୍କ ହାତକୁ ଚାଲିଯିବ ।

ଏହି ମହାନାୟକଙ୍କର ଖଦଡ଼ ପିନ୍ଧା, ଗାନ୍ଧୀ ଆଚାର, ସ୍ୱଭାବ ସୁଲଭ ମଣ୍ଡଦିଆ ଧୋତି, ଅମାୟିକ ମୁଖମଣ୍ଡଳର ଆଭା, ନିର୍ମଳ ବ୍ୟକ୍ତିତ୍ୱ ଓ କ୍ଷମତାର ସର୍ବୋଚ୍ଚ ଶିଖରରେ ରହି ମଧ୍ୟ ସରଳ ମଣିଷ ଭଳି ଭାଷା ଆଜି ମଧ୍ୟ ଜନମାନସ ପଟରେ ନାଚି ଉଠୁଛି ।

ଆମ ଜିଲ୍ଲା କଳାହାଣ୍ଡିର ସଦର ମହକୁମା ଭବାନୀପାଟଣାଠାରୁ ନବରଙ୍ଗପୁର ମାତ୍ର ୧୦୦ କି.ମି. ଦୂର । ବହୁବାର ମୁଁ ସେ ଅଞ୍ଚଳକୁ ଯାଇଛି ଏବଂ ଲୋକଙ୍କଠାରୁ ସଦାସର୍ବଦା ଶ୍ରୀ ତ୍ରିପାଠୀଙ୍କର ଭୂରି ଭୂରି ପ୍ରଶଂସା ଶୁଣିଛି ।

ସ୍ୱାଧୀନତା ଆନ୍ଦୋଳନ ହୋଇଥିଲା ସମାଜବାଦ ପାଇଁ ଆଉ ସ୍ୱାଧୀନତା ପରେ ଯଦି ସମାଜବାଦ ନ ଆସିବ ତେବେ ଭାରତ ସ୍ୱରାଜ୍ୟ ହେଲା କିପରି ? ଏକଥା ତ୍ରିପାଠୀ ମହାଶୟ ଚିନ୍ତା କରିଥିଲେ । ସ୍ୱାଧୀନତା ପରବର୍ତ୍ତୀ ପ୍ରଶାସନିକ ସ୍ତରରେ କାର୍ଯ୍ୟ କରି ସେ ବିଭିନ୍ନ ସଂସ୍କାର ଆଣିଥିଲେ । ଆଜି ସମଗ୍ର ଜାତି ତାଙ୍କର ଏକଶହତମ ଜୟନ୍ତୀ ପାଳନ କରୁଛି । ତାଙ୍କ ଗୁଣାବଳୀର ଜୟଗାନ ହୁଏତ କରାଯିବ । ଯିଏ ମାଟି ପାଇଁ ଦେଶପାଇଁ ଓ ସମାଜର ଅବହେଳିତ ନିଷ୍ପେସିତ ଲୋକଙ୍କ ପାଇଁ ସବୁକିଛି କରେ ସେ ମରେ ନାହିଁ, ସେ ଅମର ରହେ ।

କବିଚନ୍ଦ୍ର ଶେଖର ତ୍ରିପାଠୀଙ୍କ ଭାଷାରେ–

ଶୋଇଗଲା ଐରାବତ ହିମାଳୟ ପରବତ
ଶୁଖିଗଲା ସେ ଯେ, ତାର ଶାସ୍ୱତ ଝରଣା,
ଯାଇଛି ଅମର ଧାମେ କୁହସିନା ମୃତ୍ୟୁ ନାମେ
ବାହୁଡ଼ା ବିଜୟ ତା'ର ନାହିଁଟି ମରଣ ।

ଓଡ଼ିଶା ବିଧାନସଭାର ବିରୋଧୀ ଦଳ ନେତା
ଭୁବନେଶ୍ୱର

---

## ସ୍ୱର୍ଗୀୟ ସଦାଶିବ ତ୍ରିପାଠୀଙ୍କ ହସ୍ତଲିପି


(To my son.)


POST CARD
ADDRESS ONLY
Babu
Prafullochandra Tripathy,
Student, Secondary School,
P.O. Nowrangapur.
(Koraput Dist.)

# ଶିକ୍ଷକରୁ ସେ ମୁଖ୍ୟମନ୍ତ୍ରୀ

ହେମାନନ୍ଦ ବିଶ୍ୱାଳ

**ଭା**ରତବର୍ଷର ଯୁଗପୁରୁଷ ମହାତ୍ମା ଗାନ୍ଧୀଙ୍କ ଡାକରାରେ ସମଗ୍ର ଉତ୍କଳ ଭୂଖଣ୍ଡ ଯେତେବେଳେ ସ୍ୱରାଜ୍ୟ ଆନ୍ଦୋଳନରେ ଅଗ୍ନି ସ୍ଫୁଲିଙ୍ଗ ହେଉଥିଲା, ସେତେବେଳେ ଉତ୍କଳପ୍ରଦେଶର ବହୁ ବରପୁତ୍ର ନିଜନିଜର କର୍ମମୟ ଜୀବନ ତ୍ୟାଗ କରି ମାଟି ମା' ପାଇଁ ଆତ୍ମବଳି ଦେଇଥିଲେ । ତିରିଶି ଦଶକରେ କୋରାପୁଟ ଜିଲ୍ଲା ଥିଲା ଏକ ଘଞ୍ଚ ଜଙ୍ଗଲ । କାଳିଫର୍ଣ୍ଣିଆ ପରି ଏକ ଭୂଖଣ୍ଡ । ଆଦିବାସୀ ଓ ଜଙ୍ଗଲ ମଣିଷଙ୍କ ପରି ଜନଜାତିର ଏକ ଭିଟାମାଟି ।

ବ୍ରିଟିଶ ପୋଲିସ୍ ଓ ରାଜସ୍ୱ ନିରୀକ୍ଷକଙ୍କ ଅତ୍ୟାଚାର ଥିଲା ସେତେବେଳେ ଏ ମାଟିର ଏକ ଗତାନୁଗତିକ ପରମ୍ପରା । ଏ ପରମ୍ପରା ବିରୋଧରେ ଯେଉଁ କେତେଜଣ ଯୋଗଜନ୍ମା ଇଷ୍ଟଇଣ୍ଡିଆ କମ୍ପାନୀ ଗୋରାଜାତି ଉପରେ ସ୍ୱର ଉତ୍ତୋଳନ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ ରାଧାକୃଷ୍ଣ ବିଶ୍ୱାସରାୟ, ଯାହାକୁ 'କୋରାପୁଟିଆ ଗାନ୍ଧୀ' ବୋଲି ଲୋକେ ମାନୁଥିଲେ । ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନ ବେଳେ ସେହି 'କୋରାପୁଟିଆ ଗାନ୍ଧୀ' ପ୍ରଦେଶ କଂଗ୍ରେସ କମିଟିର କାର୍ଯ୍ୟଭାର ତୁଲାଇଥିଲେ । କୋରାପୁଟିଆ ସଂଗ୍ରାମୀ ରାଧାମୋହନ ସାହୁ, ଯିଏ ଏକ କିମ୍ବଦନ୍ତୀ ପୁରୁଷ କୋରାପୁଟ ରାଜନୀତିର ସରଳ ମୂର୍ତ୍ତିମନ୍ତ ବ୍ୟକ୍ତିତ୍ୱ, ପରବର୍ତ୍ତୀ ସମୟରେ ଜୟପୁର ବିଧାନସଭାରୁ ଲଗାତାର ବିଧାନସଭାକୁ ନିର୍ବାଚିତ ହୋଇଥିଲେ ।

ସଂଗ୍ରାମୀ ସଦାଶିବ ତ୍ରିପାଠୀ ଯିଏ ପରବର୍ତ୍ତୀ ସମୟରେ ଓଡ଼ିଶା ରାଜନୀତିର ସର୍ବୋଚ୍ଚ ଶିଖରରେ ପହଞ୍ଚି ପାରିଥିଲେ । ବୀର ଶହୀଦ ଲକ୍ଷ୍ମଣ ନାଏକ, ମାତିଲି ଗୁଳିକାଣ୍ଡର ପ୍ରଥମ ଶହୀଦ । ଓଡ଼ିଶା ପ୍ରଦେଶରେ ଭାରତଛାଡ଼ ଆନ୍ଦୋଳନରେ ଏହି ଜଣେ ମାତ୍ର ଆଦିବାସୀ ନେତା ଫାଶୀ ପାଇଥିଲେ । ଶହୀଦ୍ ବଗା ପୁଜାରୀ, ଯିଏ ନବରଙ୍ଗପୁର ଜିଲ୍ଲାର ପ୍ରଥମ ଶହୀଦ କୋରାପୁଟ ଜେଲରେ ଥିଲେ । ମହାତ୍ମା ଗାନ୍ଧୀଙ୍କ ୱାର୍ଦ୍ଧା ଆଶ୍ରମର ସହକର୍ମୀ । ରବିସିଂ ମାଝୀ ଜଣେ ଅମାୟିକ ଆଦିବାସୀ ସଂଗ୍ରାମୀ ଯିଏ ପରବର୍ତ୍ତୀ ସମୟରେ ରାଜ୍ୟ ବିଧାନସଭାକୁ ବହୁବାର ବିଧାୟକ ହୋଇ ବିଜୁବାବୁଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ଥିଲେ । ମହମ୍ମଦବାଜୀ ସାହେବ ଜଣେ ମୁସଲମାନ ସଂଗ୍ରାମୀ, ଆଜନ୍ମ ବ୍ରହ୍ମଚାରୀ ଓ ଭୂଦାନ ଆନ୍ଦୋଳନରେ ରାଜ୍ୟର ଜଣେ ଜନପ୍ରିୟ ନେତା । ବିପ୍ଳବୀ ଲକ୍ଷ୍ମୀଚନ୍ଦ୍ର ଦାସ, ଯାହାକୁ ବ୍ରିଟିଶ ସରକାର 'କୋରାପୁଟିଆ ସିଂହ' ଭାବେ ନାମିତ କରିଥିଲେ । ସଂଗ୍ରାମୀ ସନୁ ମାଝୀ ଏକ ଆତଙ୍କ ଖେଳାଉଥିବା ଆଦିବାସୀ ସଂଗ୍ରାମୀ ଯାହାର ମୁଣ୍ଡକୁ ଗୋରା ସରକାର ୧୦ ହଜାର ଟଙ୍କାର ପୁରସ୍କାର ଘୋଷଣା କରିଥିଲେ । ସଂଗ୍ରାମୀ ଜଗନ୍ନାଥ ତ୍ରିପାଠୀ ଶାନ୍ତିର ବାର୍ତ୍ତାବହ, ଯିଏ ରାଜ୍ୟ ବିଧାନସଭାକୁ ବହୁବାର ନିର୍ବାଚିତ ହୋଇଥିଲେ । ଏହି ଯୋଗଜନ୍ମାମାନଙ୍କୁ ନେଇ କୋରାପୁଟ ଜିଲ୍ଲାର ସ୍ୱାଧୀନତା ଆନ୍ଦୋଳନ ହୋଇଥିଲା ।

୧୯୪୨ ଅଗଷ୍ଟ ୨୧ର ମାତିଲି ଗୁଳିକାଣ୍ଡ, ୧୯୪୨ ଅଗଷ୍ଟ ୨୪ରେ ଓଡ଼ିଶା ପ୍ରଦେଶର ଜାଲିଆନାୱାଲାବାଗ ହତ୍ୟାକାଣ୍ଡ, ଯାହାକି ରକ୍ତତୀର୍ଥ ପାପଡ଼ାହାଣ୍ଡିର ଚୁରୀ ନଦୀକୂଳରେ ହୋଇଥିଲା, ତାହା କୋରାପୁଟ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିପାରିବ ।

୧୯୪୩ ମାର୍ଚ୍ଚ ୨୯ରେ ବ୍ରହ୍ମପୁର ଜେଲ୍‌ରେ ଆଦିବାସୀ ନେତା ଶହୀଦ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଦେବା, ଶହ ଶହ ସଂଗ୍ରାମୀଙ୍କ କୋରାପୁଟ ଜେଲ୍‌ରେ ଶହୀଦ, ବହୁ ସଂଗ୍ରାମୀଙ୍କୁ ଆଣ୍ଡାମାନ (କଳାପାଣି)କୁ ଦୀପାନ୍ତର, ଏସବୁ ଲୋମହର୍ଷଣକାରୀ ଘଟଣା ଥିଲା ଏ ମାଟିର ବିରଳ ଅଧ୍ୟାୟ ।

୨୧ ଅପ୍ରେଲ ୧୯୧୦ରେ ଏକ ଜମିଦାରୀ ପରିବାର ଯାହାର ଜମି ମାଲିକାନା ସେ ସମୟରେ ୭୦୦ ଏକରରୁ ଊର୍ଦ୍ଧ୍ୱ, ଉଚ୍ଚ ବ୍ରାହ୍ମଣ ପରମ୍ପରା ସଂପନ୍ନ ପରିବାରରେ ସଦାଶିବ ତ୍ରିପାଠୀ ଜନ୍ମ ହୋଇଥିଲେ । ଲେଖିବାର କାରଣ ରାଜସ୍ୱ ମନ୍ତ୍ରୀ ବେଳେ ଓଡ଼ିଶାର ଭୂସଂସ୍କାର ଓ ଜମିଦାର ପ୍ରଥା ଉଚ୍ଛେଦ ସେ ହିଁ ଆରମ୍ଭ କରିଥିଲେ ଓ ସଂପୂର୍ଣ୍ଣ ଜମିକୁ ରୟତ ପ୍ରଜାଙ୍କୁ ବାଣ୍ଟି ଦେଇଥିଲେ ।

ଏଥିପାଇଁ ଓଡ଼ିଶାର ବହୁ ରାଜା ଜମିଦାରଙ୍କର ସେ ଶତ୍ରୁ ସାଜି ଥିଲେ । ତତ୍କାଳୀନ ବ୍ରିଟିଶ ସାମ୍ରାଜ୍ୟରେ ଉଚ୍ଚଶିକ୍ଷା ପାଇ ମଧ୍ୟ ଶିକ୍ଷକତାକୁ ସେ ଆଦରି ନେଇଥିଲେ ।

ନବରଙ୍ଗପୁର ରାଜା ଚୈତନ୍ୟ ଦେବ ହାଇସ୍କୁଲରେ ଶିକ୍ଷକତା ଥିଲା ତାଙ୍କ ଜୀବନରେ ପରିବର୍ତ୍ତନର ଏକ ଉତ୍ତଳ ତରଙ୍ଗ । ସେ ଯେଉଁ ଛାତ୍ରମାନଙ୍କୁ ସୃଷ୍ଟି କରି ଯାଇଥିଲେ, ପରବର୍ତ୍ତୀ ସମୟରେ ରାଜ୍ୟ ବିଧାନସୌଧରେ ଏକ ସଙ୍ଗେ ବସିବାର ସୁଯୋଗ ମିଳିଥିଲା । ପ୍ରଶାସନରେ ତାଙ୍କ ଛାତ୍ରମାନେ ମଧ୍ୟ ପରିଚାଳନାର ଦାୟିତ୍ୱ ନେଇଥିଲେ । ଏହା ଜଣେ ଶିକ୍ଷକ ପାଇଁ କ'ଣ ଗୌରବର କଥା ନୁହେଁ କି ?

ଛାତ୍ରମାନଙ୍କ ବହିବସ୍ତାନିରେ ମଲାଟ ପକାଇବା ଓ ମଲାଟରେ ଗୋଲ ଗୋଲକରି ନାମ ଲେଖିବା ସଦାଶିବ ବାବୁଙ୍କ ବହୁ ଚର୍ଚ୍ଚିତ ଛାତ୍ର ବତ୍ସଳତାର ଅନ୍ୟ ଏକ ଦିଗ ।

୧୯୩୪ ମସିହାରେ ତାଙ୍କ ସହ ସଂପର୍କ ସ୍ଥାପନ ହୋଇଥିଲା ପଣ୍ଡିତ ନୀଳକଣ୍ଠ ଦାସଙ୍କ ସହ, ଯିଏ ତାଙ୍କୁ ଶିକ୍ଷକତା ତ୍ୟାଗ କରି ସକ୍ରିୟ ଆନ୍ଦୋଳନରେ ଆସିବା ପାଇଁ ପ୍ରବର୍ତ୍ତାଇ ଥିଲେ । କୋରାପୁଟ ଜିଲ୍ଲାର ବେଠି, ଗଡ଼ମ, ଗୋତି ପ୍ରଥା ଉଠାଇବା ପାଇଁ ୧୯୩୫ରୁ ସେ ଆନ୍ଦୋଳନରେ ସାମିଲ ହୋଇଥିଲେ । ଓଡ଼ିଶା ପ୍ରଦେଶ ଗଠନ ପରେ ୧୯୩୬ରେ ସେ ପ୍ରଥମ ବିଧାନସଭାକୁ ନିର୍ବାଚିତ ହୋଇଥିଲେ, ନବରଙ୍ଗପୁର ଆସନରୁ । ୧୯୭୧ ମସିହା ପର୍ଯ୍ୟନ୍ତ ସେ ରାଜ୍ୟ ବିଧାନସଭାକୁ ଲଗାତାର ସଦସ୍ୟଭାବେ ନିର୍ବାଚିତ ହୋଇ ଆସୁଥିଲେ । ବିଭିନ୍ନ ସମୟରେ ସେ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ବିରୋଧୀ ଦଳର ନେତା ପଦରେ ପ୍ରତିଷ୍ଠିତ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ରାଜସ୍ୱ କ୍ଷେତ୍ରର ସେ ଥିଲେ ଅଗ୍ରଗଣ୍ୟ ସାରଥୀ ।

ଭୂସଂସ୍କାର ଓ ଜମିଦାରୀ ପ୍ରଥା ଉଚ୍ଛେଦ ଥିଲା ତାଙ୍କ ଅନବଦ୍ୟ ଦାନ । ଦକ୍ଷିଣ ଓଡ଼ିଶାର ଜଣେ ନେତା ହୋଇ ମଧ୍ୟ ରାଜ୍ୟର ସେଥିଲେ ନିର୍ବିବାଦୀୟ । ଡ. ମହତାବ ଓ ବିଜୁବାବୁଙ୍କ ରାଜ୍ୟ ରାଜନୀତିର ବଳ କଷାକଷିର ସେ ଶିକାର ହୋଇଥିଲେ ୧୯୬୫ ମସିହାରେ ।

୧୯୬୪ ମସିହାରେ ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ ଭୁବନେଶ୍ୱର ଅଖିଳ ଭାରତୀୟ କଂଗ୍ରେସ କମିଟିର ଅଧିବେଶନ ବସିଥିଲା । ଡକ୍ଟର ତ୍ରିପାଠୀ ଥିଲେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଅନ୍ୟତମ ପ୍ରିୟ ଶିଷ୍ୟ । ଡ. ତ୍ରିପାଠୀ ନେହେରୁଙ୍କୁ ଲେଖିଥିବା ଚିଠିଗୁଡ଼ିକୁ ଅନୁଧ୍ୟାନ କଲେ ଏହା ଅନୁମାନ କରି ହୁଏ ।

ବ୍ରହ୍ମପୁର ଜେଲ୍‌ରେ ଶହୀଦ ଲକ୍ଷ୍ମଣ ନାଏକଙ୍କ ଶହୀଦ ହେବାର କିଛି ଘଣ୍ଟା ପୂର୍ବରୁ ସେ ନିଜ ରାଜନୈତିକ ଗୁରୁ ସଦାଶିବ ତ୍ରିପାଠୀଙ୍କୁ ଡାକି ଫାଶୀର ଶେଷ ଇଚ୍ଛା ବ୍ୟକ୍ତ କରିଥିଲେ । 'ଆଜ୍ଞା– ମୁଁ ଭୋରରୁ ଫାଶୀ ପାଇବି, ମନରେ ଦୁଃଖ ରହିଗଲା ମୁଁ ସ୍ୱରାଜ୍ୟ ଦେଖିପାରିବି ନାହିଁ । କିନ୍ତୁ ମନେରଖ ଆଜ୍ଞା ସୂର୍ଯ୍ୟ ଚନ୍ଦ୍ର ଯଦି ସତ୍ୟ, ସ୍ୱରାଜ୍ୟ ନିଶ୍ଚୟ ଆସିବ ।

ବ୍ରହ୍ମପୁର ମେଡ଼ିକାଲ କଲେଜର ସେ ଥିଲେ ପ୍ରତିଷ୍ଠାତା । ବ୍ରହ୍ମପୁର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କରିଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ତାଙ୍କୁ ଡକ୍ଟରେଟ୍ ଉପାଧି ମିଳିଥିଲା ।

୧୯୬୫ ମସିହାରେ ଅନ୍ୟାୟକୁ ସମର୍ଥନ କରିନଥିଲେ ବୋଲି ମୁଖ୍ୟମନ୍ତ୍ରୀ ପଦରୁ ସେ ବିଦା ହେଲେ କିନ୍ତୁ ପରବର୍ତ୍ତୀ ସମୟରେ ସେ ବିରୋଧୀ ଦଳର ନେତା ଭାବେ ଲୋକପ୍ରିୟତା ଅର୍ଜନ କରିଥିଲେ ।

୧୯୭୧ ମସିହାରେ ତାଙ୍କ ରାଜନୀତି ଜୀବନର ଭଟ୍ଟା ପଡ଼ିଆସିଲା । କଂଗ୍ରେସ ଦୁଇଭାଗ ହେଲା । ଡଃ ସଦାଶିବ ତ୍ରିପାଠୀ ସଂଗଠନ କଂଗ୍ରେସରେ ସାମିଲ ହେଲେ । ବାର୍ଦ୍ଧକ୍ୟ ଓ ପରାଜୟ ତାଙ୍କୁ ବାଧିଥିଲା । ଜରୁରୀକାଳୀନ ପରିସ୍ଥିତିରେ ସେ ଥିଲେ ଜଣେ ନୀରବ ଦ୍ରଷ୍ଟା । ୧୯୮୦ ମସିହା ସେପ୍ଟେମ୍ବର ୯ରେ ସେ କଟକ ବଡ଼ ଡାକ୍ତରଖାନାରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ସ୍ୱାଧୀନତାର ଆନ୍ଦୋଳନରେ ଅଂଶଗ୍ରହଣ, ପରବର୍ତ୍ତୀ ସମୟରେ ରାଜ୍ୟ ପ୍ରଶାସନର ଡୋରି ଧରି, କଳୁଷିତ ରାଜନୀତିକୁ ସେ ସୁଧାରିବାକୁ ଉଦ୍ୟମ କରିଥିଲେ । ସବୁକିଛି ତାଙ୍କ ଅଙ୍ଗେ ସେ ନିଭାଇଥିଲେ । ସେ ଥିଲେ ଦୃଢ଼ମନା ଓ ଆତ୍ମବିଶ୍ୱାସୀ । ସେ ଆଗକୁ ବଢ଼ିଥିଲେ, ପଛକୁ ଫେରି ନଥିଲେ । କାରଣ ସେ ଥିଲେ ଜଣେ ଆଦର୍ଶବାଦୀ ଶିକ୍ଷକ ।

ସାଂସଦ ଓ ପୂର୍ବତନ ମୁଖ୍ୟମନ୍ତ୍ରୀ
ଓଡ଼ିଶା

■■■■■

# ସ୍ୱର୍ଗୀୟ ସଦାଶିବ ତ୍ରିପାଠୀ

ଜଗନ୍ନାଥ ତ୍ରିପାଠୀ

**ସ୍ୱା**ଧୀନତା ସଂଗ୍ରାମୀ ସ୍ୱର୍ଗତଃ ସଦାଶିବ ତ୍ରିପାଠୀ ଉତ୍କଳ ପ୍ରଦେଶର ଜଣେ ବରେଣ୍ୟ ବ୍ୟକ୍ତି । ସେ ଅବିଭକ୍ତ କୋରାପୁଟ ଜିଲ୍ଲା ନବରଙ୍ଗପୁର ସହରରେ ୧୯୧୦ ମସିହା ଏପ୍ରିଲ ୨୧ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କର ତିନି ପୁତ୍ର ଥିଲେ । ସେମାନେ ହେଲେ– ଶ୍ରୀ ଶରତ ଚନ୍ଦ୍ର, ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଓ ଶ୍ରୀ ସୁବାସ ଚନ୍ଦ୍ର । ସେ ନବରଙ୍ଗପୁରରୁ ମଧ୍ୟଇଂରାଜୀ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଲା ପରେ ଜୟପୁର ଉଚ୍ଚ ବିଦ୍ୟାଳୟକୁ ଯାଇଥିଲେ ଏବଂ ସେଠାରୁ ମାଟ୍ରିକ୍ୟୁଲେସନ୍ ଶିକ୍ଷା ପାଇଥିଲେ । ବ୍ରହ୍ମପୁର ଟ୍ରେନିଂ ବିଦ୍ୟାଳୟରେ ଶିକ୍ଷକ ଟ୍ରେନିଂ ପାଇଁ ନବରଙ୍ଗପୁର ଓ ଜୟପୁରରେ ଶିକ୍ଷକତା କରିଥିଲେ । ଶିକ୍ଷକ ଥିବା ସମୟରେ ଛାତ୍ରମାନଙ୍କୁ ନିଜର ଭାଇବନ୍ଧୁ ପରି ଆଦର ଦେଇ ଶିକ୍ଷା ଦିଗରେ କିପରି ଆଗେଇବେ ଚେଷ୍ଟା କରୁଥିଲେ । ସେସମୟରେ ଏକ୍ସରସାଇଜ୍ ଖାତା ନଥିଲା । ଛାତ୍ର ନିଜେ ଧଳା କାଗଜରେ ଖାତା କରୁଥିଲା । ଶିକ୍ଷକ ତ୍ରିପାଠୀ ନିଜେ ଖାତା ସିଲେଇ ମଲାଟ ଉପରେ ଖଣ୍ଡେ କାଗଜ ମାରି ସୁନ୍ଦର ଅକ୍ଷରରେ ପିଲାର ନାମ, ଶ୍ରେଣୀ, ସ୍କୁଲ ନାମ, ଗ୍ରାମ, ଲେଖି ଦେଉଥିଲେ । ଖାତା ଓ ପଢ଼ା ବହିରେ ମଲାଟ ସହ ମଇଳା ନକରି, ନଚିରି ପିଲା ଜାଗ୍ରତରେ ବହିପତ୍ର ରଖି ପାଠ ପଢ଼ିବ ବୋଲି ବତାଉଥିଲେ । ସେ ସମୟରେ ସପ୍ତାହରେ ଦୁଇଦିନ ଶନିବାର ଓ ରବିବାର ଛୁଟି ଥିଲା । କିନ୍ତୁ ସେ ଛୁଟି ଦିନମାନଙ୍କରେ ମଧ୍ୟ ସ୍କୁଲ ଖୋଲି ସେ ଶିକ୍ଷା ଦେଉଥିଲେ । ସହଯୋଗୀ ଶିକ୍ଷକମାନଙ୍କ ସହ ଏକପ୍ରାଣ ପରି ଭାଇ ଭାଇ ପରି ଚଳୁଥିଲେ । ସେ ମଲାଯାଏଁ ସାଥୀ ଶିକ୍ଷକମାନଙ୍କ ସହ କଥା କରିବା ଦେଖାଯାଉଥିଲା । ମୁଖ୍ୟମନ୍ତ୍ରୀ ସମୟରେ ମଧ୍ୟ ଶିକ୍ଷକମାନେ ଯାଇ କଥା ହେବା ଦେଖାଯାଉଥିଲା । କଥାବାର୍ତ୍ତା ଘଣ୍ଟା ଘଣ୍ଟା, ଦିନରାତି ହୋଇ ବାହୁଡୁଥିଲେ ।

ଓଡ଼ିଶାର ଉତ୍କଳ ସମ୍ମିଳନୀ ଆରମ୍ଭ ହୋଇ ନୂତନ ଉତ୍କଳପ୍ରଦେଶ ଗଠନ ଆନ୍ଦୋଳନ ସମୟରେ ଶ୍ରୀ ତ୍ରିପାଠୀ ଛାତ୍ର ଅବସ୍ଥାରେ ଜୟପୁରର ସ୍ୱର୍ଗତଃ ହରିହର ମିଶ୍ରଙ୍କୁ ଲେଖାପଢ଼ା ସହିତ ଅନ୍ୟାନ୍ୟ ଓଡ଼ିଆ ତାଳପତ୍ର, ତାମ୍ରପଟ୍ଟାର ଦଲିଲ ଓଗେରା ସୀମା କମିଶନଙ୍କ ଦେଖାଇବା ପାଇଁ ସଂଗ୍ରହ କରିବା ବ୍ୟବସ୍ଥା କରିଥିଲେ । ତାଙ୍କ ଦଦେଇ ଶ୍ରୀ ମହାଦେବ ତ୍ରିପାଠୀ ନବରଙ୍ଗପୁର ତରଫରୁ ଉତ୍କଳ ସମ୍ମିଳନୀର ସଭ୍ୟ ଥିଲେ । ଶ୍ରୀ ତ୍ରିପାଠୀ ବ୍ରହ୍ମପୁରରେ ଟ୍ରେନିଂ ପାଇବା ସମୟରେ ମଧ୍ୟ ଉତ୍କଳ ସମ୍ମିଳନୀ ସଂଘର ସଭ୍ୟ ହୋଇ ସକ୍ରିୟ କାମ କରୁଥିଲେ ।

୧୯୩୬ ମସିହା ନୂତନ ଓଡ଼ିଶା ପ୍ରଦେଶ ଗଠନ ହେବା ପର୍ଯ୍ୟନ୍ତ ସେ ଜଣେ ଉତ୍ତମ ଶିକ୍ଷକ ଭାବରେ ପରିଚିତ ହୋଇ ଆସିଥିଲେ । ଗୋଟିଏ ଛୋଟିଆ ପାଠାଗାର କରି ବହିପତ୍ର, ଖବରକାଗଜ ପଢ଼ିବା ଓ ଖବରକାଗଜର ମୁଖ୍ୟ ଖବର କାଟି ଗୋଟିଏ ଖାତାରେ ଅଠାଦେଇ ରଖିବା ଏବଂ ସମ୍ବାଦ ଯୋଗାଇବା ବ୍ୟବସ୍ଥା ମଧ୍ୟ କରିବା ଦେଖାଯାଇଥିଲା । ବ୍ରହ୍ମପୁର ଟ୍ରେନିଂ ସମୟରେ ଖଦଡ଼ଲୁଗା ପିନ୍ଧିବା ସହ ସ୍ୱରାଜ ଚିନ୍ତାଧାରା ମନରେ ଜାଗ୍ରତ ହେଲା । ମହାତ୍ମା ଗାନ୍ଧୀ ଓଡ଼ିଶା ଗସ୍ତ ସମୟରୁ ରାଜନୀତିରେ ଗୁପ୍ତ ଭାବରେ ଜଡ଼ିତ ହେଲେ । ସେ ସମୟରେ ବ୍ରିଟିଶ ଇଷ୍ଟଇଣ୍ଡିଆ କମ୍ପାନୀ କୋରାପୁଟ ଜିଲ୍ଲାକୁ ଆକ୍ରମଣ କରି ନିଜ ଆୟତ୍ତକୁ ରଖିବା ପରେ ସେହି ଜିଲ୍ଲାବାସୀ ବିଦ୍ରୋହୀ ବୋଲି ଗୋଟିଏ ଆଇନ ଜାରି କରାଗଲା । ଏହା ହେଲା 'ହସ୍ତ ମୁଦି' ଆଇନ । ଏହି ଜିଲ୍ଲାଟି ଭାଇସ୍‌ରାୟର ହାତରେ ରହିବ । ଜିଲ୍ଲାପାଳ ସର୍ବେସର୍ବା । କ୍ଷମତା ପ୍ରୟୋଗ କରି ଜମିଦାରଙ୍କ ସହ ହାତ ମିଳାଇ ପ୍ରଜାଙ୍କ ପ୍ରତି ଯାବତୀୟ ଅନ୍ୟାୟ ଅତ୍ୟାଚାର କରି ମାଡ଼ ଦେଇ ପ୍ରଜାଙ୍କ ନିକଟରେ ଥିବା ଧନ ଲୁଟ ତରାଜ କରି ଟଙ୍କା ପଇସା ନାନା କୌଶଳ କରି ଲୁଟ୍ କରି ନେଲେ । ଅଫିମ ଓ ମଦ ପ୍ରଜା ଖାଇ ସର୍ବହରା ହୋଇ ଭିକାରୀ ପରି ବୁଲିବେ । ଶିକ୍ଷା ନ ପାଇ ମୂର୍ଖ ହୋଇ ସଦାସର୍ବଦା ବ୍ରିଟିଶ ଗୋରା ଜାତି ଓ ହାକିମମାନଙ୍କୁ ପ୍ରଭୁ ପରି ମାନି ଚଳିବେ । ସଭା ସମିତି, ଦଳ, ସଂଘ ପ୍ରଭୃତି କୌଣସି ବ୍ୟକ୍ତି କରିପାରିବେ ନାହିଁ । ରାଜନୀତି କଥା ପ୍ରଚାର ହେବା ମନା କରାଯାଇଥିଲା ।

ଯଦି ସରକାର ବା ରାଜା ବିରୋଧରେ ଗଲେ ଜିଲ୍ଲା ବାହାର କରି ଦ୍ୱୀପାନ୍ତର ମଧ୍ୟ ପଠାଯିବ ବୋଲି କଡ଼ା ଆଇନ ଜାରି କରାଯାଇଥିଲା ।

ନୂତନ ଉତ୍କଳ ପ୍ରଦେଶ ଗଠିତ ହେବା ପରେ ସେହି ଅଷ୍ଟମୁଦି ଆଇନ ଉଠିଯାଇଥିଲା । ଓଡ଼ିଶା ରାଜ୍ୟରେ ସରକାର ଗଠନ ହୋଇ ପ୍ରଚାର, ଦଳଗଠନ ଅଧିକାର ଘୋଷଣା ହେବା ପରେ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟଙ୍କଦ୍ୱାରା ପ୍ରଥମ ସଂଗଠନ କୋରାପୁଟ ଜିଲ୍ଲାରେ ଆରମ୍ଭ ହେଲା । ଶ୍ରୀ ଲକ୍ଷ୍ମୀଚନ୍ଦ୍ର ଦାସ ଓ ଶ୍ରୀ ମହମ୍ମଦ ବାଜି ରାଜନୀତିରେ ଯୋଗଦେଇ କଂଗ୍ରେସ ସଂଗଠନ ଆରମ୍ଭ କଲେ । ଶିକ୍ଷକ ସଦାଶିବ ତ୍ରିପାଠୀ ସେ ସମୟରେ କଂଗ୍ରେସ, ଗାନ୍ଧୀ ଓ ସ୍ୱାଧୀନ ହେବା କଥା କହୁଥିଲେ ।

୧୯୩୭ ମସିହାରେ ଓଡ଼ିଶା ବିଧାନସଭା ନିର୍ବାଚନ ହେବ ବୋଲି ଘୋଷଣା ହେଲା । ଏମ୍.ଏଲ୍.ଏ. ପ୍ରାର୍ଥୀ ବାଛିବାକୁ ପଣ୍ଡିତ ନୀଳକଣ୍ଠ ଦାସ କୋରାପୁଟ ଜିଲ୍ଲା ଗସ୍ତରେ ନବରଙ୍ଗପୁର ଆସି ନିର୍ବାଚନ ପ୍ରଚାର ସଭା କଲେ । ଏହି ସଭାପରେ ଲୋକମାନେ ମୂକ ବଧିରରୁ ମୁକ୍ତ ହୋଇ କଥା କହିବା ଦେଖାଗଲା । ସେହିଦିନଠାରୁ ମୋର ମଧ୍ୟ କଂଗ୍ରେସ ଅନୁଷ୍ଠାନ ସହ ଅଳ୍ପ ସମ୍ବନ୍ଧ ସ୍ଥାପନ ହେଲା ।

ଶ୍ରୀ ସଦାଶିବ ତ୍ରିପାଠୀ ସେ ସମୟରେ ଶିକ୍ଷକ କାମ କରୁଥିଲେ । ତାହାଙ୍କ ଦଦେଇ ଶ୍ରୀ ମହାଦେବ ତ୍ରିପାଠୀଙ୍କୁ ଦାସେ ଆପଣେ ବୁଝାଇ ଶିକ୍ଷକତାରୁ ଇସ୍ତଫା ଦିଆଇ ରାଜନୀତିରେ ପ୍ରବେଶ କରାଇଲେ । ସେ ସମୟରେ ନବରଙ୍ଗପୁର ବିଧାନସଭା ନିର୍ବାଚନମଣ୍ଡଳୀ ସମଗ୍ର ସବ୍‌ଡିଭିଜନ୍‌କୁ ନେଇ ଗଠିତ ହୋଇଥିଲା । ଭୋଟ ଅଧିକାର ମଧ୍ୟ ସମସ୍ତଙ୍କର ନଥିଲା । ସାବାଳକ ଭୋଟ ପ୍ରଥା ନଥିଲା । ଯେଉଁମାନେ ଜମିଦାରଙ୍କୁ ୧୦ ଟଙ୍କାର ସିରସ୍ତା ବାନ୍ଧୁଥିଲେ, ସେମାନେ ଭୋଟ ଦେଇପାରୁଥିଲେ । ନବରଙ୍ଗପୁର ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଦଳ ତରଫରୁ ଶ୍ରୀ ସଦାଶିବ ତ୍ରିପାଠୀ ଓଡ଼ିଶା ବିଧାନସଭାକୁ ପ୍ରାର୍ଥୀ ହେଲେ ।

ବ୍ରିଟିଶ ଗୋରାଜାତିଙ୍କ ଚେଷ୍ଟାରେ ଜୟପୁର ଜମିଦାରଙ୍କୁ କହି କଂଗ୍ରେସ ବିରୋଧରେ ଗୋଟିଏ ଧନୀ ମହାଜନ ଦଳ ଗଠନ କଲେ । ଜୟପୁର ଜମିଦାର ଜଣେ ଓକିଲଙ୍କୁ ପ୍ରାର୍ଥୀ କଲେ । ସେ ସମୟରେ ନବରଙ୍ଗପୁର ସହରବାସୀ କଂଗ୍ରେସ ଦଳ ନାମ ଶୁଣିଲେ ଭୟରେ ଥରହର ହୋଇ କଥା ହେଉନଥିଲେ, ପ୍ରଚାରକ ନଥିଲେ । ପୁରା ସବ୍‌ଡିଭିଜନ୍‌ରୁ ନବରଙ୍ଗପୁର ସହରରୁ ଚାରିଜଣ କର୍ମୀ ବିନା ଟଙ୍କା ପଇସାରେ କଂଗ୍ରେସ ଦଳକୁ ସାହାଯ୍ୟ କଲେ । ଶ୍ରୀ ଲକ୍ଷ୍ମୀଚନ୍ଦ୍ର ଦାସ, ଶ୍ରୀ ମହମ୍ମଦ ବାଜୀ, ଶ୍ରୀ ରଘୁନାଥ ଚୌଧୁରୀ ଓ ଶ୍ରୀ ଜଗନ୍ନାଥ ତ୍ରିପାଠୀ । ପଣ୍ଡିତ ଶ୍ରୀ ମଞ୍ଜୁଘୋଷ ତ୍ରିପାଠୀ, ଶ୍ରୀ ସୀମାଞ୍ଚଳ ବେହେରା ଓ ଶ୍ରୀ ସଦାନନ୍ଦ ମହାନ୍ତିଙ୍କର ମଧ୍ୟ ଦେଶାତ୍ମବୋଧର ଚେତନା ଥିଲା । ସେମାନେ ମଧ୍ୟ କଂଗ୍ରେସକୁ ସାହାଯ୍ୟ କରୁଥିଲେ । ସମୟକ୍ରମେ ହଜାର ହଜାର ନିରୀହ, ଅଶିକ୍ଷିତ ଗରିବ ପ୍ରଜା କଂଗ୍ରେସରେ ଦଳ ସହ ସହଯୋଗ କଲେ । ବିପୁଳ ଭୋଟ ପାଇ ଶ୍ରୀ ସଦାଶିବ ତ୍ରିପାଠୀ ଜୟଯୁକ୍ତ ହେଲେ । ଓଡ଼ିଶା ବିଧାନସଭାର ଜଣେ ଟାଣୁଆ ବିଧାୟକ ଭାବେ ପରିଚିତ ହେଲେ । ୧୯୩୭ଠାରୁ ୧୯୭୦ ମସିହା ପର୍ଯ୍ୟନ୍ତ ସେ ବିଧାୟକ ଥିଲେ । ସେ ସମୟ ମଧ୍ୟରେ ଓଡ଼ିଶା ରାଜ୍ୟର ମନ୍ତ୍ରୀ ହୋଇ ରାଜସ୍ୱ, ଜଙ୍ଗଲ, ଅବକାରୀ, ଯୋଗାଣ ଓ ପରିବହନ ଦାୟିତ୍ୱ ଶୃଙ୍ଖଳାର ସହ ଚଳାଇ ଆସୁଥିଲେ । ସେ ସମୟ ମଧ୍ୟରେ ଓଡ଼ିଶା ରାଜ୍ୟର ସେ ମୁଖ୍ୟମନ୍ତ୍ରୀ ମଧ୍ୟ ହୋଇଥିଲେ । ତାହାଙ୍କ ମୁଖ୍ୟମନ୍ତ୍ରୀ ସମୟରେ ଭୁବନେଶ୍ୱରରେ ମହାଜାତୀୟ କଂଗ୍ରେସ ବସିଥିଲା । ସେ ମହାଶୟ କେନ୍ଦ୍ର ସ୍ତରରେ ମଧ୍ୟ ସୁନାମ ଅର୍ଜନ କରିଥିଲେ ।

ଦଳୀୟ କନ୍ଦଳ ଯୋଗୁଁ ୧୯୭୧ ମସିହାରେ କଂଗ୍ରେସ ଭାଗ ଭାଗ ହେବା ସମୟରେ ଶ୍ରୀ ତ୍ରିପାଠୀ ସଙ୍ଗଠନ କଂଗ୍ରେସରେ ଯୋଗ ଦେଇ ନବରଙ୍ଗପୁର ବିଧାନସଭାକୁ ପ୍ରାର୍ଥୀ ହୋଇ ପରାସ୍ତ ହେଲେ ଏବଂ ରାଜନୀତିରୁ ସନ୍ନ୍ୟାସ ନେଲେ ।

ନବରଙ୍ଗପୁରର ସ୍ୱାଧୀନତା ସଂଗ୍ରାମୀ ଜଗନ୍ନାଥ ତ୍ରିପାଠୀ ଏବେ ନାହାନ୍ତି ।



# କ୍ରାନ୍ତିକାରୀ କର୍ମଯୋଗୀ ସଦାଶିବ

ଦୋଳଗୋବିନ୍ଦ ପ୍ରଧାନ

**ସ୍ୱା**ଧୀନତା ସଂଗ୍ରାମୀ, ଐତିହାସିକ, ଚିନ୍ତାନାୟକ, ସୃଜନଶୀଳ କବି ବା କଳାକାରମାନଙ୍କ ପରି ମହାନ୍ ବ୍ୟକ୍ତିମାନଙ୍କର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ କୌଣସି ଐତିହାସିକ କାର୍ଯ୍ୟକ୍ରମ ବା ଉଦ୍ୟମ ନିଶ୍ଚିତ ଭାବରେ ଅଭିନନ୍ଦନୀୟ, ଯାହାକି ଶବରୀ ସାଂସ୍କୃତିକ ପରିଷଦ ନବରଙ୍ଗପୁରର କର୍ମକର୍ତ୍ତାମାନେ କରାଇ ପାରିଛନ୍ତି । ଜାତିଗଠନ ଦିଗରେ ସେହି ମହାନ୍ ବ୍ୟକ୍ତିତ୍ୱମାନଙ୍କର କଷ୍ଟସାଧ୍ୟ ଅବଦାନ ସହଜରେ ମୂଲ୍ୟାୟନ କରି ହେବ ନାହିଁ । ଜୀବନୀ ରଚନା, ସ୍ମାରକୀ ଷ୍ଟାମ୍ପ ପ୍ରଚଳନ, ପ୍ରତିମୂର୍ତ୍ତି ଉନ୍ମୋଚନ ଓ ସ୍ମରଣିକା ପ୍ରକାଶନ ଆଦି କେତେକ କାର୍ଯ୍ୟଦ୍ୱାରା ସେମାନଙ୍କର ଅପୂରଣୀୟ ଋଣ ପରିଶୋଧ କରାଯାଇପାରେ ଅନ୍ୟଥା ନୁହେଁ ।

ଭାରତୀୟ ଇତିହାସରେ ଏକ ସଙ୍କଟ କାଳରେ ଦେଶ ଯେଉଁ ମହାନ୍ ବ୍ୟକ୍ତିମାନଙ୍କୁ ଜନ୍ମ ଦେଇଥିଲା ସେମାନଙ୍କ ମଧ୍ୟରେ ସ୍ୱାଧୀନତା ସଂଗ୍ରାମୀ ଓ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ ଅନ୍ୟତମ । ସଦାଶିବ ତ୍ରିପାଠୀ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନର ପ୍ରଥମ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା ସଂଗ୍ରାମରେ ନିଜକୁ ସାମିଲ କରି ଦେଇଥିଲେ ଓ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ସେହି ସଂଗ୍ରାମ ଭିତରେ ରହି ଦେଶ ଓ ଯଶ ପାଇଁ ନିଜର ଦିବ୍ୟ କର୍ତ୍ତବ୍ୟ ସଂପାଦନ କରିଯାଇଛନ୍ତି । ସ୍ୱାଧୀନତା ପରେ ମୃତ୍ୟୁ ପର୍ଯ୍ୟନ୍ତ (୧୯୮୦) ସେ ନିଜର ଆଦର୍ଶରୁ ପାଦେ ମଧ୍ୟ ବିଚ୍ୟୁତ୍ ହୋଇ ନଥିଲେ । ଯେଉଁ ତ୍ୟାଗ ଓ ସତ୍ୟନିଷ୍ଠା ନେଇ ସେ ଜାତୀୟ ସଂଗ୍ରାମରେ ଝାସ ଦେଇଥିଲେ ସେହି ତ୍ୟାଗ ଓ ସତ୍ୟନିଷ୍ଠା ପ୍ରତି ସେ ଶେଷ ନିଃଶ୍ୱାସ ତ୍ୟାଗ କଲା ପର୍ଯ୍ୟନ୍ତ ଏକାନ୍ତ ବିଶ୍ୱସ୍ତ ରହିଥିଲେ । କୌଣସି ପ୍ରକାର ଉପଭୋଗୀ କାମନା ଓ କ୍ଷମତାଭିଳାଷ ତାଙ୍କୁ ଲକ୍ଷ୍ୟଚ୍ୟୁତ କରାଇ ପାରିନଥିଲା । ତାଙ୍କର ଅମଳିନ ବ୍ୟକ୍ତିତ୍ୱ ଏବେ ମଧ୍ୟ ଏ ଜାତିର ଆଦର୍ଶ । ଯେଉଁମାନେ ସ୍ୱାଧୀନତା ସଂଗ୍ରାମୀ ବୋଲି ନିଜର ଡିଣ୍ଡିମ ପିଟନ୍ତି ଓ ସ୍ୱାଧୀନତା ସଂଗ୍ରାମ ଭିତରେ ନଥାଇ ମଧ୍ୟ ନିଜକୁ ସ୍ୱାଧୀନତା ସଂଗ୍ରାମୀ କହି ବାହାବା ନେବାକୁ ଆଗଭର ହୁଅନ୍ତି ତଥା କ୍ଷମତା-ରାଜନୀତିକୁ ହାତ ମୁଠାରେ ରଖି ନାନାଦି ଅପକୌଶଳ କରି ଆପଣାର ଉପଭୋଗୀ ବ୍ୟକ୍ତିତ୍ୱକୁ ପ୍ରତିଷ୍ଠା ଦେଇ ପ୍ରଶଂସା ପାଇଁ ଉଦ୍ୟମ କରନ୍ତି, ସେପରି ଲୋକଙ୍କଠାରୁ ସଦାଶିବବାବୁ ସଂପୂର୍ଣ୍ଣ ନିଆରା । ଗାନ୍ଧୀ-ଗୋପବନ୍ଧୁଙ୍କ ଆଦର୍ଶର ସେ ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ।

କର୍ମଯୋଗୀ ସଦାଶିବ ପ୍ରାକ୍ ସ୍ୱାଧୀନତା ସମୟରେ ଅଳ୍ପ ବୟସରେ ଜଣେ ଆଦର୍ଶ ଶିକ୍ଷକ ଭାବରେ ଖ୍ୟାତି ଅର୍ଜନ କରୁଥିବା ବେଳେ ଦେଶମାତୃକାକୁ ପରାଧୀନତା ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ଗିରଫ ହୋଇ ଅଟକ ବନ୍ଦୀ ଭାବରେ ବ୍ରହ୍ମପୁର କେନ୍ଦ୍ର ଜେଲରେ ୩ ବର୍ଷରୁ ଊର୍ଦ୍ଧ୍ୱକାଳ ବନ୍ଦୀ ହୋଇ ରହିଥିଲେ । ୧୯୪୫ରେ ସେ କାରାଗାରୁ ମୁକ୍ତ ହେବା ପରେ ନବରଙ୍ଗପୁର ଓ ଉମରକୋଟ ନିର୍ବାଚନ ମଣ୍ଡଳୀରୁ ପାଞ୍ଚଥର ସେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି ।

ନିର୍ବାଚିତ ପ୍ରତିନିଧି ରୂପେ ସେ ଓଡ଼ିଶାର ମନ୍ତ୍ରିମଣ୍ଡଳରେ ଯୋଗଦେଇ ବିଭିନ୍ନ ବିଭାଗ ଦକ୍ଷତାର ସହ ଜଣେ ମନ୍ତ୍ରୀ ଭାବରେ କାର୍ଯ୍ୟ କରିଥିଲେ । ପରିଶେଷରେ ସେ ଓଡ଼ିଶାର ପଞ୍ଚମ ମୁଖ୍ୟମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କରି ଜଣେ ଦକ୍ଷ ଓ ସଚ୍ଚୋଟ ବ୍ୟକ୍ତିତ୍ୱର ସମ୍ମାନ ଅର୍ଜନ କରି ଯାଇଛନ୍ତି ।

ମୋର ପରମ ସୌଭାଗ୍ୟ ଯେ ଏପରି ଜଣେ କ୍ରାନ୍ତିକାରୀ ଜାତୀୟ ବୀରଙ୍କ ସାନ୍ନିଧ୍ୟ ସେହି ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ବ୍ରହ୍ମପୁର ସେଣ୍ଟ୍ରାଲ ଜେଲ୍‌ର ମେଘନାଦ ପାଚେରୀ ଘେରା ବନ୍ଦୀଶାଳାରେ ୩ ବର୍ଷ କାଳ ସହସ୍ରାଧିକ ଅଟକବନ୍ଦୀମାନଙ୍କ ଗହଣରେ ମିଳିଥିଲା । ସେହି ବନ୍ଦୀ ଜୀବନ କାଳରେ ଅଗଣିତ ସ୍ମୃତିର ପ୍ରଥମ ନୈବେଦ୍ୟ ଅଞ୍ଜଳି ହେଉଛି ଶହୀଦ ଲକ୍ଷ୍ମଣ ନାଏକଙ୍କ ଫାଶୀ ଘଟଣା । ଜାତୀୟ କବି ବୀର କିଶୋରଙ୍କଦ୍ୱାରା ରଚିତ କବିତାଟି ମାନବିକ ଆବଦନରୁ ଗଭୀରତା ଓ ଅନୁରାଗ ଦୃଷ୍ଟିରୁ ଏକ ସର୍ବୋତ୍ତମ ଶୋକ ଗୀତିକା ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ମହାତ୍ମା ଗାନ୍ଧୀ ତ୍ୟାଗ, ସତ୍ୟ ଓ ଅହିଂସାର ଯେଉଁ ପରାକାଷ୍ଠା ଦେଖାଇ ଦେଇଗଲେ ତା'ର ଏପରି ପ୍ରଭାବ ଲୋକଙ୍କ ଉପରେ ପଡ଼ିଲା ଯେ ଭାରତବର୍ଷର ଶିକ୍ଷିତ ଓ ଅଶିକ୍ଷିତ ଯୁବକ-ଯୁବତୀ, ବୃଦ୍ଧ-ବୃଦ୍ଧା ଓ କୁଳବଧୂମାନଙ୍କ ସହିତ ସହସ୍ର ସହସ୍ର ଆଦିମ ଆଦିବାସୀ ସମ୍ପ୍ରଦାୟର ଲୋକମାନେ ସର୍ବସ୍ୱ ତ୍ୟାଗ କରି ବାପୁଜୀଙ୍କ ଆହ୍ୱାନରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । କଂଗ୍ରେସ ଅନୁଷ୍ଠାନ ଜରିଆରେ ସ୍ୱାଧୀନତା ସଂଗ୍ରାମର ଦୁନ୍ଦୁଭି ବାଜି ଉଠିଲା । ଘଞ୍ଚ ସବୁଜ ବନାନୀ କୋରାପୁଟ ଜିଲ୍ଲା ମଧ ସେହି ମହାଭାରତୀୟ ଜାତୀୟ ସ୍ରୋତରେ ନିଜକୁ ଭସାଇ ଦେଲା । ସେହି ଜିଲ୍ଲାର ମାତିଲି ଥାନା ଅନ୍ତର୍ଗତ ଏକ ନିଭୃତ ଗିରିଗୁହା କନ୍ଦର ଘେରା ଅଗମ୍ୟ ଅଞ୍ଚଳସ୍ଥ ଆଦିମ ଅଧିବାସୀ ଅଧ୍ୟୁଷିତ ତେନ୍ତୁଳିଗୁମ୍ମା ଗ୍ରାମର ମୁସ୍ତାବାରଙ୍କ ପୁଅ ଲକ୍ଷ୍ମଣ ନାଏକ ଭାରତଛାଡ଼ ଆନ୍ଦୋଳନର ଅଗ୍ନି ଶିଖାରେ ପତଙ୍ଗ ଝାସ ଦେଲା ପରି ଝାସ ଦେଇ ତା.୨୧.୦୮.୧୯୪୨ରିଖ ବ୍ରିଟିଶ ପୋଲିସ୍‌ଦ୍ୱାରା ଏକ ନରହତ୍ୟା ଅଭିଯୋଗରେ ଅଭିଯୁକ୍ତ ହୋଇ ଗିରଫ ହେଲେ । ସେତେବେଳକୁ ତାଙ୍କର ବୟସ ତେପନ ବର୍ଷ । କୋରାପୁଟ ଜେଲ୍‌ରେ ବନ୍ଦୀ ଥିବା ଅବସ୍ଥାରେ ତାଙ୍କର ବିଚାର ହୋଇ ତା.୧୩.୧୧.୧୯୪୨ରିଖରେ ତାଙ୍କୁ ନରହତ୍ୟା ଅଭିଯୋଗରେ ଫାଶୀ ଦଣ୍ଡ ଆଦେଶ ହୋଇଥିଲା । ସେହି ଫାଶୀଦଣ୍ଡର ତତ୍କାଳୀନ ବିଚାରକ ଥିଲେ ଭି. ରାମନାଥନ, ଆଇ.ସି.ଏସ୍. ଯେକି ସ୍ୱାଧୀନ ଭାରତରେ ଓଡ଼ିଶା ସରକାରଙ୍କ ମୁଖ୍ୟ ଶାସନ ସଚିବ ହୋଇ ତା' ପରେ ରାଜସ୍ୱ ପର୍ଷଦର ସଦସ୍ୟ ହୋଇଥିଲେ । ମାତିଲି ଥାନାର କେସ୍ ନଂ.୫୮ର ସରକାରୀ ଓକିଲ ଥିଲେ ଗଞ୍ଜାମ ଜିଲ୍ଲାର ଜଗନ୍ନାଥ ରାଓ । ସେ ସରକାରୀ ଓକିଲ ହିସାବରେ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ହେବା ପାଇଁ ଜବାବ ପକ୍ଷରୁ ସୁଆଲ ପେଶ୍ କରିଥିଲେ । ସେହି ଆର୍. ଜଗନ୍ନାଥ ରାଓ ସ୍ୱାଧୀନ ଭାରତରେ କଂଗ୍ରେସ ଦଳ ପକ୍ଷରୁ ଗଞ୍ଜାମ ଜିଲ୍ଲାର ଜଣେକ ପାର୍ଲାମେଣ୍ଟ ସଦସ୍ୟ ହୋଇ ପରେ କେନ୍ଦ୍ର ମନ୍ତ୍ରୀ ହୋଇଥିଲେ । କୋରାପୁଟ ଜେଲ୍‌ରେ ଫାଶୀ ଦେବାର ବ୍ୟବସ୍ଥା ନଥିବାରୁ ଲକ୍ଷ୍ମଣ ନାଏକଙ୍କୁ କୋରାପୁଟ ଜେଲ୍‌ରୁ ବଦଳି କରାହୋଇ ଆଣି ବ୍ରହ୍ମପୁର ଜେଲ୍‌ର ସେଲ୍ ଭିତରେ ରଖାଯାଇଥିଲା । ଯେଉଁମାନଙ୍କୁ ଫାଶୀ ଅର୍ଡ଼ର ହୋଇଥାଏ, ଫାଶୀ ପାଇବାର ୭/୮ ଦିନ ଆଗରୁ ଜେଲ କର୍ତ୍ତୃପକ୍ଷ ଫାଶୀ ଆସାମୀଙ୍କୁ ତାଙ୍କର ଶେଷ ଇଚ୍ଛା କ'ଣ ଓ କେଉଁ ଆତ୍ମୀୟ ସ୍ୱଜନଙ୍କୁ ଦେଖିବେ, କ'ଣ ଖାଇବାକୁ ଚାହାନ୍ତି ପଚାରିଥାନ୍ତି । ଜେଲ୍‌ର ଏହି ପ୍ରଥା ଅନୁଯାୟୀ ୧୯୪୩ ମସିହା ମାର୍ଚ୍ଚ ମାସ ୨୮ ତାରିଖ ଦିନ ଜେଲ୍ କର୍ତ୍ତୃପକ୍ଷ ଆସି ଅଟକବନ୍ଦୀ ଶିବିରରେ ଜଣାଇଲେ ଯେ ଲକ୍ଷ୍ମଣ ନାଏକ ଆପଣମାନଙ୍କୁ ଦେଖା କରିବାକୁ ଚାହୁଁଛନ୍ତି । ଏକଥା ଶୁଣି ସମସ୍ତଙ୍କ ମନରେ ଏକ ବିଷାଦର ଛାୟା ଖେଳିଗଲା । ଜଣେ ମରଣ ମୁହା ମଣିଷକୁ କ'ଣ କହି ସାନ୍ତ୍ୱନା ଦେବେ ? କିଂ କର୍ତ୍ତବ୍ୟ ବିମୂଢ଼ ଦଶ-ବାର ଜଣ ଅଟକ ବନ୍ଦୀ ସ୍ୱାଧୀନତା ସଂଗ୍ରାମୀ ଦେଖା କରିବାକୁ ଗଲେ । ସେମାନେ ହେଲେ ଗୋପବନ୍ଧୁ, ଚୌଧୁରୀ, ସଦାଶିବ ତ୍ରିପାଠୀ, ଭାଗୀରଥି ମହାପାତ୍ର, ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ବିଶ୍ୱନାଥ ଦାସ, ଉମାଚରଣ ପଟ୍ଟନାୟକ, ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ଭଗବାନ ଖେମୁଣ୍ଡୁ ଓ ଜାତୀୟ କବି ବୀର କିଶୋର ଦାସ ପ୍ରମୁଖ । ଜେଲ୍ ଭିତରେ ଥିବା ସେଲ୍ ଭିତରେ ଚକାମାଣ୍ଡି ପକାଇ ବସିଛନ୍ତି ଲକ୍ଷ୍ମଣ ନାଏକ । ଏମାନେ ବା କ'ଣ ପଚାରିବେ, ସେ ବା କ'ଣ କହିବେ ? ଏଭଳି ଆନ୍ଦୋଳିତ ମନର ନୀରବତାକୁ ଭଙ୍ଗ କରି ଗୁରୁଗମ୍ଭୀର ସ୍ୱରରେ କହି କହି ଉଠିଲେ ବୀର ଲକ୍ଷ୍ମଣ ନାଏକ 'ମନରେ ଦୁଃଖ ରହିଗଲା ସ୍ୱାଧୀନତାଟା ଦେଖିପାରିଲି ନାହିଁ । ମୋ ପିଲାମାନଙ୍କୁ କହିବେ – ମୁଁ ସ୍ୱାଧୀନ ଭାରତରେ ଜନ୍ମ ଗ୍ରହଣ କରି ସେମାନଙ୍କୁ ଦେଖା କରିବି ।' ସାକ୍ଷାତ କରିବାକୁ ଯାଇଥିବା ଅଟକବନ୍ଦୀମାନେ ବୁକୁଫଟା କୋହକୁ ଚପାଇ ଲୁହ ପୋଛି ପୋଛି ଦଇବକୁ ଧିକ୍କାର କରି ଫେରି ଆସିଥିଲେ । ସେଇଦିନ ସନ୍ଧ୍ୟାରେ ଜେଲ୍ ଭିତରେ ସମସ୍ତ ବନ୍ଦୀମାନଙ୍କର ଯେଉଁ ଶୋକ ସଭା ହୋଇଥିଲା ସାଥୀ ଲକ୍ଷ୍ମଣ ନାଏକଙ୍କ କହିଥିବା ଶେଷକଥାକୁ ଆଧାର କରି ଜାତୀୟ କବି ବୀର କିଶୋର ଲେଖିଥିବା ହୃଦୟ ବିଦାରକ ଶୋକ ଗୀତିକାଟି ସେଇ ସଭାରେ ଏ ଲେଖକ ଗାଇଥିଲା । ସେଇ ଶୋକ ଗୀତଟି ହେଉଛି –

ମୋର ଯିବାର ବେଳ ତ
  ଆସି ହେଲାଣି
ଭାଇ ହସି ହସି ମୋତେ
  ଦିଅ ମେଲାଣି । (ଘୋଷା)
ମନରେ ରହିଲା ମନର ଯା କଥା
  କି କହିବି ଭାଇ ମୋ ମରମ ବ୍ୟଥା
ମୁଁ ସ୍ୱାଧୀନ ଭାରତ ଦେଖି ନପାରିଲି
  ଯା' ଲାଗି ବାନ୍ଧିଲି ମୋର ଆଶା ନିଶୁଣି ।
    ମୋର ଯିବାର ବେଳତ ...
ଯେଉଁ ଦିନ ହେଲେ ଯାଆନ୍ତିତ ଦିନେ
  ସେତିକି ଶୋଚନା ନାହିଁ ମୋର ମନେ

ମୋ' ପିଲା ପିଲିଙ୍କି କହିବେ ଏତିକି
ମୁଁ ସ୍ୱାଧୀନ ଭାରତେ ନିଶ୍ଚେ ଫେରିବି ପୁଣି ।
ମୋର ଯିବାର ବେଳ ତ ...

ଗୀତ ଶେଷ ହେଲା । ବହୁ ବନ୍ଦୀ ତାଙ୍କ ସ୍ମୃତିଚାରଣ କଲେ । ରାତ୍ର ୧୦ଟା ଯାଏଁ ରୋଷେଇବାସ ନାହିଁ । ସାରା ଜେଲ୍ ଭିତରେ ଏକ ଶୋକର ଛାୟା । ସଙ୍ଗିନୀ ବନ୍ଧୁକଧାରୀ ପୋଲିସ୍‌ମାନେ ଆସି ଯେ ଯାହାର ଶିବିରକୁ ଯିବା ପାଇଁ ନିର୍ଦ୍ଦେଶ ଦେଲେ । ଯେ ଯାହା ଶିବିରକୁ ଫେରିଲେ । ପ୍ରତ୍ୟେକ ଶିବିରର ଦ୍ୱାରରେ ତାଲା ପଡ଼ିଲା । ଶିବିରର ପ୍ରତ୍ୟେକ ଝରକା ଓ ଦ୍ୱାରପାଖରେ ଶହ ଶହ ସଙ୍ଗିନୀଲଗା ବନ୍ଧୁକଧାରୀ ପୋଲିସ୍ ଜଗି ରହିଲେ । କାହାରି ଆଖିରେ ନିଦ ନାହିଁ । ସିନ୍ଦୂରା ଫାଟି ଆସିବା ମୁହୂର୍ତ୍ତକୁ ଶୁଣାଗଲା ବାପୁଜୀଙ୍କ ସେଇ ପ୍ରିୟ ଭଜନ–

ରଘୁପତି ରାଘବ ରାଜାରାମ....

ହାତରେ ହାତକଡ଼ି, ଗୋଡ଼ରେ ଦଣ୍ଡାବେଡ଼ି ପକାଯାଇ ସାଥୀ ଲକ୍ଷ୍ମଣ ନାଏକଙ୍କର ବିଶାଳ ବାହୁକୁ ଧରି ଜେଲ୍ ୱାର୍ଡ଼ରମାନେ ଚଲାଇ ଚଲାଇ ନେଇ ଆସୁଛନ୍ତି ଫାଶୀ ଖୁଣ୍ଟର ଦ୍ୱାରଦେଶ ନିକଟକୁ । ସ୍ୱାଧୀନତା ସଂଗ୍ରାମୀ ବୀର ଲକ୍ଷ୍ମଣ ନାଏକଙ୍କ ମନରେ ଅନୁଶୋଚନା ନାହିଁ ଫାଶୀ ପାଇବା ପାଇଁ । ଦେଶ ସ୍ୱାଧୀନ ହେବ । ବ୍ରିଟିଶ ଶାସନ ଲୋପ ହେବ, ଦାସତ୍ୱ ଶୃଙ୍ଖଳରୁ ଭାରତମାତା ମୁକ୍ତି ହେବେ, ଜାତୀୟ ତ୍ରିରଙ୍ଗା ଫର୍ ଫର୍ ହୋଇ ଉଡ଼ିବ ଓ ଗାନ୍ଧିଜୀଙ୍କ ପରିକଳ୍ପିତ ରାମରାଜ୍ୟ ପ୍ରତିଷ୍ଠା ହେବ । ଫାଶୀଘର ରୁଦ୍ଧ କବାଟ ଖୋଲିବା ଆଗରୁ ସେଠାରେ ଜଗି ରହିଥିବା ଜେଲ୍ ପ୍ରହରୀ ମୋଟା କଳା କନାର ଗୋଟିଏ ମୁଣା (ବ୍ୟାଗ୍) ଲକ୍ଷ୍ମଣ ନାଏକଙ୍କ ମୁଣ୍ଡରୁ ବେକଯାଏ ଗଳାଇ ଦେଲେ । ବାପୁଜୀଙ୍କର ପ୍ରିୟଭଜନର ଅନ୍ତିମ ସ୍ୱର –

.... ସବ୍‌କୋ ସନ୍‌ମତି ଦେ ଭଗବାନ୍ ।

କଳା କନାର ମୁଣା ଭିତରେ କ୍ଷୀଣ ଭାବରେ ଧ୍ୱନିତ ହେଉଥିଲା । ଫାଶୀଘରର ରୁଦ୍ଧ କବାଟ ଖୋଲା ଯାଇ ଫାଶୀଖୁଣ୍ଟ ପାଖକୁ ନେଇ ଫାଶୀର ଫନ୍ଦା ତାଙ୍କ ଗଳାରେ ଗଳାଇ ଦିଆଯାଇଥିଲା ।

ସ୍ୱାଧୀନତା ସଂଗ୍ରାମୀ ଓ ପୂର୍ବତନ ମନ୍ତ୍ରୀ
ପ୍ଲଟ ନଂ–୩, ୟୁନିଟ୍–୮ ଡିଏଭି ସ୍କୁଲ ନିକଟ
ନୟାପଲ୍ଲୀ, ଭୁବନେଶ୍ୱର–୧୨

## ଅତୀତର ସ୍ମୃତି ...



୧୯୫୧–୫୨ ମସିହାର ରାଜ୍ୟରେ ପ୍ରଥମ ସାଧାରଣ ନିର୍ବାଚନ ସମୟରେ ନବରଙ୍ଗପୁରଠାରେ ଶ୍ରୀ ସଦାଶିବ ତ୍ରିପାଠୀ ଓ ପତ୍ନୀ ଶ୍ରୀମତୀ ତିଳୋତ୍ତମା ତ୍ରିପାଠୀ ମତଦାନ କରୁଛନ୍ତି ।

# ଆକସ୍ମିକ ଭେଟ

ଇଂ ଦାଶରଥି ନନ୍ଦ

(ଲେଖକ ଶ୍ରୀ ଦାଶରଥି ନନ୍ଦ ୨୦୦୧ ମସିହାରେ ଜଳସେଚନ ବିଭାଗର ସର୍ବୋଚ୍ଚ ଯନ୍ତ୍ରୀ ଭାବେ ଅବସର ଗ୍ରହଣ କରିଛନ୍ତି । ଚାକିରି କାଳର ପ୍ରାରମ୍ଭରେ (୧୯୬୫) ଆକସ୍ମିକ ଭାବେ ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କ ପ୍ରସ୍ତାବକ୍ରମେ ସେ ତାଙ୍କ ସହିତ ଭୁବନେଶ୍ୱରରେ ଏକାଠି ଚାରିମାସ ରହିଛନ୍ତି । ଘଟଣାକ୍ରମେ ଲେଖକଙ୍କର ଜୀବନର ଗତି ମଧ୍ୟ ବଦଳି ଯାଇଛି । ତାଙ୍କରି ଆତ୍ମଜୀବନୀମୂଳକ ଉପନ୍ୟାସ 'କ୍ରୀଡ଼ନକ'ର ଆରମ୍ଭ ସଦାଶିବ ତ୍ରିପାଠୀଙ୍କ ସହିତ ଭେଟରୁ । ସେଇ ସୁଖପାଠ୍ୟ ବର୍ଣ୍ଣନାରୁ କିୟଦଂଶ)

**ଦି**ନ ଏଗାରଟା ବେଳେ ସୁନାବେଡ଼ାରୁ ଗାଡ଼ି ଆସି ଜୟପୁର ବସଷ୍ଟାଣ୍ଡରେ ପହଞ୍ଚିଲା । ୧୯୬୫ ସେପ୍ଟେମ୍ବର ମାସର ଏକ ରବିବାର । ମୁଁ ବସ୍‌ରୁ ଓହ୍ଲାଇ ରିକ୍ସା ପାଖକୁ ଗଲାବେଳେ ଦେଖିଲି, ବସ୍‌ଷ୍ଟାଣ୍ଡ୍ ପାଖ ରୟାଲ୍ ଗେଷ୍ଟ ହାଉସ୍‌ଟି କେତେକ ପୋଲିସ୍‌ଦ୍ୱାରା ବେଷ୍ଟିତ ହୋଇଛି । ମନରେ କୌତୁହଳ ଜାଗରିତ ହେଲା । ଘରକୁ ନ ଯାଇ ସେ ଦିଗରେ ପଦଚାଳନା କଲି । ପୋଲିସ୍‌ଙ୍କୁ ପଚାରି ବୁଝିଲି, ଓଡ଼ିଶାର ଚିଫ୍ ମିନିଷ୍ଟର୍ ସଦାଶିବ ତ୍ରିପାଠୀ ଆସିଛନ୍ତି । ତେଣୁ ଏ ପ୍ରକାର ପୋଲିସ୍ ବନ୍ଦୋବସ୍ତ । ମନେ ମନେ ହସିଲି । ତୁମ ପାଇଁ ସିନା ପ୍ରଦେଶ ମୁଖ୍ୟ, ମୋ ପାଇଁ କିନ୍ତୁ ପିଉସା । ଦେଖିଯିବା ତେବେ ମୁଖ୍ୟମନ୍ତ୍ରୀ ଭାବେ ପିଉସାଟି କିପରି ଦେଖାଯାଉଛନ୍ତି ।

ମୁଁ ସେତେବେଳେ ଥିଲି ନୂଆରେ ଆରମ୍ଭ ହୋଇଥିବା ସୁନାବେଡ଼ାସ୍ଥିତ ମିଗ୍ ନିର୍ମାଣ ଯୋଜନାର ଜଣେ ଜୁନିୟର ଇଞ୍ଜିନିୟର୍ । ମୁଖ୍ୟ ନିର୍ମାଣ ଯନ୍ତ୍ରୀଙ୍କ ଅଫିସ୍‌ରେ ଡିଜାଇନ୍ ବିଭାଗରେ କାର୍ଯ୍ୟରତ ଥିଲି । ରବିବାରରେ କିଛି କାମ ନାହିଁ । ମୋ' ନିଜ ଜନ୍ମସ୍ଥଳୀ ହେଉଛି ଜୟପୁର, ସୁନାବେଡ଼ାଠାରୁ ୨୪ କିଲୋମିଟରର ବ୍ୟବଧାନ । ସେଠି ମୋ' ବାପା, ମା' ଓ ଜେଜେମା ରହନ୍ତି । ସୁନାବେଡ଼ାରେ ମୋ ବଡ଼ ଭାଇ ଶ୍ରୀ ଚନ୍ଦ୍ରଶେଖର ମଧ୍ୟ ଓଭର୍‌ସିଅର୍ ଭାବେ କାର୍ଯ୍ୟ କରନ୍ତି । ତେଣୁ ମୁଁ ପ୍ରାୟ ପ୍ରତି ରବିବାର ସକାଳେ ଜୟପୁର ଆସେ ଓ ସୋମବାର ଦିନ ଫେରିଯାଏଁ ।

ପୋଲିସ୍ ଅଫିସରଙ୍କୁ ମୋର ପରିଚୟ ଦେଲି ଓ ସଦାଶିବ ତ୍ରିପାଠୀଙ୍କ ସହିତ ମୋର ପାରିବାରିକ ସମ୍ପର୍କ ଜଣାଇ ତାଙ୍କୁ ସାକ୍ଷାତ କରିବା ପାଇଁ ଅନୁମତି ମାଗିଲି । ସେ ସମ୍ମାନର ସହିତ ଅତିଥି ଭବନର ଦ୍ୱାରଦେଶ ପର୍ଯ୍ୟନ୍ତ ନେଇ ବାରଣ୍ଡାରେ ବସାଇ ଦେଲେ । ଅତିଥି ଭବନଟି ରାଜା ରାଜୁଡ଼ା ଅମଳର । ମଝିରେ ଗୋଟିଏ ପ୍ରଶସ୍ତ ହଲ୍, ତାହା ଭୋଜନାଳୟ ମଧ୍ୟ । ତା'ର ଦୁଇପଟେ ଦୁଇଟି ବଡ଼ ବଖରା । ସେଗୁଡ଼ିକ ବିଶ୍ରାମାଳୟ । ଏ ତିନୋଟି ବଖରାର ସମ୍ମୁଖରେ ଏକ ବିରାଟ ବାରଣ୍ଡା । ତାହା ଅତିଥିମାନଙ୍କର ଡ୍ରଇଂ ରୁମ୍ ଭାବେ କାମ କରେ ।

ଅଳ୍ପ କେଇମାସ ତଳର କଥା ମୋ' ମନରେ ଭାସି ଆସିଲା । ସେଇ ୧୯୬୫ ମସିହା ଫେବୃଆରୀ ମାସରେ ମୁଁ ଏକା ସରକାରୀ କାମରେ ଭୁବନେଶ୍ୱର ଯାଇଥିଲି । ସେଠି ମୋର କେତେକ ସହାଧ୍ୟାୟୀ ବନ୍ଧୁଙ୍କ ସହିତ ଦେଖା ହୋଇଥିଲା । ଆମେ ବୁର୍ଲା ଇଞ୍ଜିନିୟରିଂ କଲେଜରେ ୧୯୬୪ ବ୍ୟାଚ୍‌ରେ ଉତ୍ତୀର୍ଣ୍ଣ ହୋଇଛୁଁ । ବିଗତ ଦୁଇ ବର୍ଷ ତଳେ ଚୀନର ଭାରତ ଅଞ୍ଚଳ ଦଖଲ ଜନିତ ପରିସ୍ଥିତିରେ ଅନ୍ୟ କଲେଜର ପିଲାମାନଙ୍କୁ ସେଇ ୬୪ ମସିହାରେ ହିଁ ସହାୟକ ଯନ୍ତ୍ରୀ ପଦ ଦିଆଗଲା– ପି.ଏସ୍.ସି. ଜରିଆରେ ପରୀକ୍ଷା କରାଇ । ବୁର୍ଲାର ମେକାନିକାଲ୍ ଛାତ୍ରମାନଙ୍କର ମଧ୍ୟ ପି.ଏସ୍.ସି. ହୋଇସାରିଛି । କେବଳ ଆମ ସିଭିଲର ହିଁ ଇଣ୍ଟରଭ୍ୟୁ ହୋଇ ନାହିଁ । ତା' ନ ହେଲେ ଆମେ ସହାୟକ ଯନ୍ତ୍ରୀ ହୋଇପାରିବୁ ନାହିଁ । ୧୯୬୪ ମସିହାରେ ବୁର୍ଲା ଇଞ୍ଜିନିୟରିଂ କଲେଜରୁ (ଓଡ଼ିଶାର ଏକମାତ୍ର ତତ୍କାଳୀନ ଇଞ୍ଜିନିୟରିଂ କଲେଜ) ୮୦ ଜଣ ଛାତ୍ର ଉତ୍ତୀର୍ଣ୍ଣ ହୋଇଥିଲୁ । ମୁଁ ସେବର୍ଷ ସିଭିଲ୍ ଯାନ୍ତ୍ରିକରେ ପ୍ରଥମ ସ୍ଥାନ ଲାଭ କରିଥିଲି ।

ଆଲୋଚନା ବେଳେ ମୁଁ କହିଲି, 'ମୁଁ ଭାଇ କ୍ୟାପିଟାଲଠୁଁ ବହୁ ଦୂର ସୁନାବେଡ଼ାରେ ଅଛି । ତୁମେମାନେ ଏଠାରେ ଅଛ । ତୁରନ୍ତ, ଇଣ୍ଟରଭ୍ୟୁ ପାଇଁ ଓଡ଼ିଶା ଲୋକସେବା ଆୟୋଗ ଅଫିସ୍‌ରେ ଚେଷ୍ଟା କରୁନ ?'

'ଆରେ ପାଗଳ ! ଲୋକସେବା ଆୟୋଗ ଅଫିସ୍ କ'ଣ ସାଧାରଣ ଅଫିସ୍ ଯେ ଯିଏ ଯାହା ତା' ଅଭିଯୋଗ କରିବ ? ତାହା ହାଇକୋର୍ଟ ଭଳି । ସେଠି ଚାପ କାମ ଦେବନି । ହଁ, ହୁଏତ କେହି ମନ୍ତ୍ରୀ ବା ସ୍ଥାନୀୟ ବ୍ୟକ୍ତି ନିଜ ବିଭାଗର କିଛି ଅସୁବିଧାକୁ ନେଇ ଅଫିସର ନିଯୁକ୍ତି ପାଇଁ ପରାମର୍ଶ ଦେଇପାରନ୍ତି । ଆମେ ସେପରି ଏକ ମନ୍ତ୍ରୀ ପାଉନୁ । ସେମାନେ ମଧ୍ୟ ପି.ଏସ୍.ସି.କୁ ଡରନ୍ତି ।

ମୋ' ତୁଣ୍ଡରୁ ବାହାରି ପଡ଼ିଲା, 'ମୋ ପିଉସା ତ ଏବେ ରେଭେନ୍ୟୁ ମିନିଷ୍ଟର । ତାଙ୍କରିଦ୍ୱାରା କିଛି ହୋଇପାରିବ ? ମୁଁ ଅବଶ୍ୟ ତାଙ୍କୁ ବହୁ ବର୍ଷ ହେଲା ସାକ୍ଷାତ କରିନି । ବହୁ ବର୍ଷମାନେ ପ୍ରକୃତରେ ବହୁତ, ପ୍ରାୟ ବାର ବର୍ଷ ହୋଇଯିବ ସେ ମୋତେ ନ ଚିହ୍ନିଲେ ବି ମୋ ବାପାଙ୍କ ନାଁ କହିଲେ ନିଶ୍ଚୟ ଚିହ୍ନିବେ ।'

ବନ୍ଧୁମାନେ ମୋ କଥା ଶୁଣି ଚାଲିଗଲେ ଅବଶ୍ୟ, କିନ୍ତୁ ଛ' ଘଣ୍ଟାପରେ ଅପରାହ୍ଣ ଚାରିଟାରେ ଆସି କହିଲେ କି ରେଭେନ୍ୟୁ ମିନିଷ୍ଟର ଚଳିବ, କାରଣ ସେ ପ୍ରାକୃତିକ ବିପର୍ଯ୍ୟୟ ସମସ୍ୟା ବୁଝନ୍ତି । ସେ ଦୃଷ୍ଟିରୁ ସେ ଯନ୍ତ୍ରୀ ନିଯୁକ୍ତି ସମସ୍ୟା ଉଠାଇ ପାରିବେ । ଆଉ ଗୋଟିଏ ବିଶେଷ ଜ୍ଞାତବ୍ୟ ବିଷୟ ହେଉଛି ଯେ ବର୍ତ୍ତମାନ ପି.ଏସ୍.ସି.ର ସେକ୍ରେଟାରୀ ହେଉଛନ୍ତି ଜଣେ ପାଢ଼ୀ ନାମଧେୟ ବ୍ୟକ୍ତି । ସେ ପାରଳାଖେମୁଣ୍ଡିର । ତେଣୁ ଦକ୍ଷିଣିୟା ସଦାଶିବ ଓ ସେଇ ଦକ୍ଷିଣିୟା ପାଢ଼ୀ ସାହେବଙ୍କ ଆତ୍ମୀୟତା ଥାଇପାରେ । ଏବେ ଏଇ ରାତିରେ ହିଁ ତୁ ରାଜସ୍ୱ ମନ୍ତ୍ରୀଙ୍କ ସହିତ କଥାବାର୍ତ୍ତା କରି ପି.ଏସ୍.ସି. କଥା ଠିକ୍ କର ।'

କେବଳ ସେତିକି ନୁହେଁ । ସେମାନେ ମୋତେ ତାଙ୍କରି ସାଇକେଲ୍ ପଛରେ ବସାଇ ରାଜସ୍ୱ ମନ୍ତ୍ରୀଙ୍କ ଗେଟ୍ ସାମ୍ନାରେ ଛାଡ଼ି ଚାଲିଗଲେ । ମୋ ସାଙ୍ଗମାନଙ୍କୁ ମୋର ମନ୍ତ୍ରୀଙ୍କ ସମ୍ପର୍କକୁ ନେଇ ଫୁଟାଣି ମାରିଥିଲି ସିନା ମୁଁ କିନ୍ତୁ କେବେ ବି ତାଙ୍କ ସହିତ ମୁହାଁ ମୁହିଁ କଥାବାର୍ତ୍ତା ହୋଇନାହିଁ । ହଁ କୋଟପାଡ଼ରେ ଅଷ୍ଟମ ଶ୍ରେଣୀ ପଢୁଥିଲା ବେଳେ ବାର୍ଷିକ ଉତ୍ସବରେ ସେ ମୁଖ୍ୟ ଅତିଥି ହୋଇ ଆସିଥିଲେ ଏବଂ ତାଙ୍କ ହାତରୁ ମୁଁ ଅନେକ ପୁରସ୍କାର ପାଇଛି । ମୋ ବାପାଙ୍କୁ (ପ୍ରଧାନଶିକ୍ଷକ) ସେ ସମ୍ମାନ ଦିଅନ୍ତି କାରଣ ସେ ନିଜେ ରାଜନୀତିରେ ପଶିବା ପୂର୍ବରୁ ମୋ ବାପାଙ୍କ ଅଧୀନରେ ହିଁ ଶିକ୍ଷକତା କରୁଥିଲେ ନବରଙ୍ଗପୁରରେ । ପୁରସ୍କାର ପ୍ରାପ୍ତି ରାତିରେ ସେ ଆମ ଘରକୁ ଆସିଥିଲେ ଏବଂ ମୋତେ ଅର୍ଦ୍ଧସୁପ୍ତ ଅବସ୍ଥାରେ ମୋ ମୁଣ୍ଡ ଆଉଁଶି ଆଶୀର୍ବାଦ କରିଥିଲେ । ତା'ପରେ ଏଗାରବର୍ଷ କାଳ ଆଉ ଦେଖା ହୋଇ ନାହିଁ ।

ଇଚ୍ଛା ନଥିଲେ ବି ବନ୍ଧୁମାନଙ୍କୁ ଯେତେବେଳେ କଥା ଦେଇଛି, ମନ୍ତ୍ରୀ କୋଠାରେ ପ୍ରବେଶ କଲି । ପ୍ରାଇଭେଟ୍ ସେକ୍ରେଟାରୀ ରାଘବନ୍‌ଙ୍କୁ ମୋର ପରିଚୟ ପ୍ରଦାନ କରନ୍ତେ, ସେ ମୋତେ ତାଙ୍କ କୋଠରୀକୁ ନେଇଗଲେ ।

ଏଗାର ବର୍ଷ ପୂର୍ବରୁ ସେଇ ରୂପ, ସେଇଠାଣି । ପ୍ରଶସ୍ତ କପାଳ, କୁଞ୍ଚ କୁଞ୍ଚିଆ ମୁଣ୍ଡ ବାଳ । ଦେହରେ ଲୁଗା ଓ ଗାମୁଛା ।

ମୁଁ ମୋର ପରିଚୟ କ'ଣ ଦେବି ? ସେ ନିଜେ ଆରମ୍ଭ କଲେ, 'କିରେ ଦାଶରଥି ! ବାପା କିମିତି ଅଛନ୍ତି ? ତୋତେ ମୁଁ ଦଶ କି ପନ୍ଦର ବର୍ଷ ତଳେ କୋଟପାଡ଼ରେ ଦେଖିଥିଲି । ତୁ ତ ସ୍କୁଲ ଯାକର ସବୁ ପ୍ରାଇଜ ନେଇଗଲୁ ଗୀତ, ଡ୍ରଇଂ, ଖେଳ, ପଢ଼ା ସବୁତକରେ ଫାଷ୍ଟ । ସେ ଦିନଠୁଁ ତୋ ନାଁ ମନେ ରଖିଛି । ଏବେ କହ କ'ଣ ପାଇଁ ଆସିଛୁ ?'

ମୁଁ କ'ଣ କହିବି, ହଠାତ୍ କିଛି ସ୍ଥିର କରି ନ ପାରି ଯାହା ତୁଣ୍ଡକୁ ଆସିଲା ବକିଲି । ପିଉସା, ତୁମେ (ସେତେବେଳେ ଆମ ବନ୍ଧୁ ସମ୍ପର୍କରେ 'ଆପଣ' ସମ୍ବୋଧନ ଧାରା ନଥିଲା । ତୁମେ ଓ ତୁରେ ସମ୍ପର୍କଟା ନିବିଡ଼ତର ଥିଲା) ଜାଣିଛ, ମୁଁ ବୁର୍ଲାରୁ ଇଞ୍ଜିନିୟରିଂ ପାଶ୍ କରି ଦେଢ଼ବର୍ଷ କାଳ ପ୍ରଥମେ ବାଲିମେଳା ଓ ପରେ ସୁନାବେଡ଼ାରେ କାମ କରୁଛି । ସିଭିଲ୍ ପାଠ ମାନେ ଓଡ଼ିଶାରେ ରାସ୍ତା କୋଠା, ଜଳ ଯୋଗାଣ ଓ ଜଳସେଚନ ବିଭାଗରେ କାମ କରିବା । ତେବେ ଏଥିପାଇଁ ଆମରି ପି.ଏସ୍.ସି. ଡାକରା ଆସିନାହିଁ ।'

'ଯେବେ ଆସିବ ତେବେ ପରୀକ୍ଷା ଦେବୁ ।'

'ତୁରନ୍ତ କରିବା ପାଇଁ ତୁମେ ବା ସରକାର କିଛି କରିପାରିବେ ନାହିଁ ?'

'କ'ଣ କରିବା ? ପି.ଏସ୍.ସି.କୁ କେହି ଆଦେଶ ବା ଉପଦେଶ ଦେଇ ପାରିବେନି !'

ସେ ଯେତେବେଳେ ନିଜ ତରଫରୁ ଏତକ କହିଲେ ମୁଁ ବା କିପରି ତାଙ୍କ ଉପରେ ଚାପ ପ୍ରୟୋଗ କରିବି ? ମୁଁ ଏବେ କ'ଣ କରିବି । କିଛି ତ କହିବାକୁ ପଡ଼ିବ ।

ଅଳ୍ପ କିଛି ସମୟ ଭାବି କହିଲି, 'ଆଜ୍ଞା ! ମୁଁ ତୁମ ପାଖକୁ ଆସିବାର ଉଦ୍ଦେଶ୍ୟ ହେଲା, ତୁମେ ସରକାରରେ ଅଛ । ଆମେ ନୂଆରେ ସରକାରୀ କର୍ମଚାରୀ ହେବାକୁ ଯାଉଛୁଁ । ମୁଁ ସିଭିଲ୍ ଇଞ୍ଜିନିୟରିଂର ଯେଉଁ ତିନୋଟି ବିଭାଗ କହିଲି, ତା'ର ଭବିଷ୍ୟତ ଜଣା ନାହିଁ, ଅନ୍ତତଃ ମୋତେ । ତୁମେ ମୋର ପଥ ପ୍ରଦର୍ଶକ ଭାବେ କହିପାରିବକି ମୁଁ କେଉଁ ବିଭାଗକୁ ଯିବି । ଅନ୍ତତଃ ପି.ଏସ୍.ସି.ରେ ମୁଁ ମୋର ଦାବି ଉପସ୍ଥାପନ କରିବି ।'

ସେ ମଧ୍ୟ କିଛି ସମୟ ଭାବି କହିଲେ, 'ଇରିଗେସନ୍‌ର ଭବିଷ୍ୟତ ଓଡ଼ିଶା ଇଞ୍ଜିନିୟରିଂଙ୍କ ପାଇଁ ମଙ୍ଗଳପ୍ରଦ । ହଉ ତୁ ଯେତେବେଳେ ଇଚ୍ଛା କରିବୁ ଏଠାକୁ ଆସିବୁ । ବାପା ମା' ଭଲ ଅଛନ୍ତି ଶୁଣି ଖୁସି ଲାଗିଲା । ତା'ପରେ ସେ ତାଙ୍କ ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ଡାକି କହିଲେ, ଏ ବାବୁ ଯେତେବେଳେ ଯେଉଁଥିପାଇଁ ଆସିବେ ତୁମେ ସାହାଯ୍ୟ କରିବ ।

ତା'ପରେ ମୋତେ କହିଲେ, 'ମୁଁ କାଲି ମୟୂରଭଞ୍ଜ ଯାଉଛି । ପରେ କେବେ ଦେଖା ହେବ ।'

ତା' ଆରଦିନ ଆମ ବନ୍ଧୁମେଳରେ ମୋର ମନ୍ତ୍ରୀଙ୍କ ସହିତ ବାକ୍ୟାଳାପର ବିବରଣୀ ଦେଲି । ସେମାନେ ମୁଣ୍ଡରେ ହାତଦେଇ କିଛି ସମୟ ଭାବିଲେ । ନିଜ ନିଜ ଭିତରେ କିଛି କଥାବାର୍ତ୍ତା ହେଲେ । ତା'ପରେ ସେମାନେ ଯାହା କହିଲେ, ତା'ର ମର୍ମହେଲା, ତୁ ଜଣେ କୋରାପୁଟିଆ ହେତୁ ନିଜକୁ ମଳିମୁଣ୍ଡିଆ ବୋଲି ଭାବୁଛୁ । କିନ୍ତୁ ତୁ ଜଣେ ଓଡ଼ିଶା ସରକାରଙ୍କ ରାଜସ୍ୱ ମନ୍ତ୍ରୀଙ୍କ ପୁତୁରା । ରାଜସ୍ୱ ମନ୍ତ୍ରୀ ଜଣେ ମହାନ୍ କ୍ଷମତାଧାରୀ । ତାଙ୍କ ପୁତୁରା ହିସାବରେ ତୁ ସେଇ କ୍ଷମତାରୁ କିଛି ଅଂଶର ଅଧିକାରୀ ହୋଇ ନାଟକଟିଏ କର । ତଦ୍ୱାରା ତୋ' ସହିତ ତୋ ଜାତିବି ଉଦ୍ଧାର ପାଇବ ।'

ଏପରି ବାକ୍ୟ ମୋ ପାଇଁ ଏକ ନୂତନ ଉନ୍ମାଦନା ସୃଷ୍ଟି କଲା । ରାଜସ୍ୱ ମନ୍ତ୍ରୀଙ୍କ ପୁତୁରା ହୋଇ ମୁଁ କ'ଣ ବା କରିପାରେ ? ଏ ପ୍ରଶ୍ନର ଉତ୍ତରରେ ସେମାନେ ମୋତେ ଯାହା କରିବାକୁ କହିଲେ ସେଥିରେ ମୋର ହୃତକମ୍ପ ହେବାକୁ ଲାଗିଲା । ସେମାନଙ୍କ ଭାଷଣ, କିନ୍ତୁ ମୋତେ ମୁଗ୍ଧ କଲା । ତଦନୁଯାୟୀ କାର୍ଯ୍ୟକ୍ରମ ମଧ୍ୟ ଚାଲିଲା । ସେ ଦିନ ଅପରାହ୍ଣରେ ରାଜସ୍ୱ ମନ୍ତ୍ରୀଙ୍କ ଅନୁପସ୍ଥିତିରେ ମୁଁ ନିଜକୁ ସଦାଶିବ ତ୍ରିପାଠୀ ପରି ପି.ଏସ୍.ସି. ସେକ୍ରେଟାରୀ ପାଢ଼ୀ ବାବୁଙ୍କୁ ଫୋନ୍ କରି ଅନୁରୋଧ କଲିକି ଇଞ୍ଜିନିୟରମାନଙ୍କର ମୌଖିକ ଡାକରା ତୁରନ୍ତ ହେବା ଜରୁରୀ । ସେ ହଁ କରି, ସେଥିପାଇଁ ପଦକ୍ଷେପ ନେବେ ବୋଲି କହିଲେ ।

ଫୋନ୍ ଥୋଇଲା ବେଳକୁ ମୋ' ଦେହ ଝାଳରେ ଜୁଡୁବୁଡୁ । ଯାହା ହେଉ ଗୋଟିଏ ରକ୍ଷା, ପାଢ଼ୀ ବାବୁ ମୋତେ ରାଜସ୍ୱ ମନ୍ତ୍ରୀ ବୋଲି ଭାବି ନେଲେ । ତା' ଅର୍ଥ ହେଉଛି, କେବେହେଲେ ସଦାଶିବ ତ୍ରିପାଠୀ ତାଙ୍କୁ ଫୋନ୍‌ରେ କଥା ହୋଇନାହାନ୍ତି । କେବଳ ସେତିକି ନୁହେଁ, କାହାପାଇଁ ମଧ୍ୟ (ଅତି ଆପଣାର ଓ ଆତ୍ମୀୟ ହେଲେ ସୁଦ୍ଧା) ନିଯୁକ୍ତି, ବଦଳି କିମ୍ବା ପ୍ରମୋସନ୍ ପାଇଁ ସେ କୌଣସି ସରକାରୀ କର୍ମଚାରୀ ଉପରେ ସାମାନ୍ୟ ଚାପ ମଧ୍ୟ ପ୍ରୟୋଗ କରନ୍ତି ନାହିଁ ବୋଲି ଶୁଣିଥିଲି । ଏବେ ତା'ର ପ୍ରମାଣ ପାଇଲି ।

ସେଇ ବର୍ଷ ଫେବୃଆରୀ ୪ଠର ତାରିଖରେ ସଦାଶିବ ତ୍ରିପାଠୀଙ୍କ ନାତୁଣୀର (ଦ୍ୱିତୀୟ ପୁତ୍ର ପ୍ରଫୁଲ୍ଲଙ୍କ ଝିଅ) ବିବାହ ଅନୁଷ୍ଠିତ ହୋଇଥିଲା । ଆମ ପରିବାର ତରଫରୁ ମୁଁ ସେଇ ଉତ୍ସବରେ ଯୋଗ ଦେଇଥିଲି । ମୋତେ ଭୀଷଣ ଡର ମାଡୁଥାଏ । କାଳେ ପି.ଏସ୍.ସି. ସେକ୍ରେଟାରୀ ପାଢ଼ୀ ବାବୁ ବିଗତ ସପ୍ତାହର କଥା ମନ୍ତ୍ରୀଙ୍କୁ କହି ଦେଇଥିବେ, ତେବେ ତ ଏକ ବିସ୍ଫୋରକ ପରିସ୍ଥିତି ସୃଷ୍ଟି ହେବ। ତେଣୁ ବିବାହୋତ୍ସବରେ ମୁଁ ଯଥାସମ୍ଭବ ଲୁଚି ଲୁଚି ସବୁ ଦେଖୁଥାଏଁ । ଉକ୍ତ କାର୍ଯ୍ୟକ୍ରମରେ ସେ ନିଜେ ଥିଲେ କନ୍ୟା ଦାତା । ତେଣୁ ସେ ଅନ୍ୟ ଦିଗରେ ବ୍ୟସ୍ତ ଥିବାରୁ ସାମନା ସାମନି ବିଶେଷ ଦେଖା ଦେଲା ନାହିଁ । ଯେଉଁ ଅଳ୍ପ ସମୟ ମୁହାଁ ମୁହିଁ ହେଲୁ, ସେଥିରୁ ପୂର୍ବକାଣ୍ଡର ବାସନା ବାଜିଲାନି । ତେଣୁ ମୁଁ ପ୍ରାୟ ହାଲୁକା ଅନୁଭବ କରୁଥାଏ ।

ଉକ୍ତ ବିବାହୋତ୍ସବରେ ହଜାରରୁ ଅଧିକ ଲୋକ ଉପସ୍ଥିତ ଥିଲେ । ସେତେବେଳେ ଏତେ ସଂଖ୍ୟକ ଲୋକ ଏକ ବିବାହ ବା ବ୍ରତ ଉତ୍ସବରେ ଯୋଗ ଦେବା କ୍ୱଚିତ୍ । ଶୁଣିଲି, ସଦାଶିବବାବୁ ନିଜର ଆତ୍ମୀୟ ଓ ଦଳୀୟ କର୍ମୀଙ୍କୁ ଆପ୍ୟାୟିତ କରିବା ପାଇଁ ଏପରି ପାରିବାରିକ ଉତ୍ସବକୁ ଏକ ମାଧ୍ୟମ କରିଥିଲେ । ଏଥିର ଏକ ବିଶେଷ ଆକର୍ଷଣ ଥିଲା କାକରା ପିଠା ଓ ଆରିସା ପିଠାର ସୁମଧୁର ପ୍ରସ୍ତୁତି ଓ ପର୍ଯ୍ୟାପ୍ତ ପରିବେଷଣ । ରାତି ଆଠଟାରେ, ହସ୍ତଗ୍ରନ୍ଥି ପରେ ଭୋଜନର ବ୍ୟବସ୍ଥା ଓ କାକରାପିଠାର ପରିବେଷଣ । ସଦାଶିବ ପିଉସା ମଧ୍ୟ କାକରା ପିଠା ଖାଇବାକୁ ବସିଲେ କର୍ମୀ ମହଲରେ । ସମୟ ରାତି ଦଶଟା ହେବ ।

ହଠାତ୍ ଏକ କଳରବ ସୃଷ୍ଟିହେଲା । ଖବର ଖେଳିଗଲା ଯେ, ସଦାଶିବଙ୍କୁ ହଠାତ୍ ଭୁବନେଶ୍ୱର ଯିବାକୁ ହେବ । ଜୟପୁର ଏରୋଡ୍ରମରେ ସରକାରୀ ଉଡ଼ାଜାହାଜ ଆସି ପହଞ୍ଚି ଯାଇଛି । ସେ ଯେଉଁ ଅବସ୍ଥାରେ ଥାଆନ୍ତୁ ପଛେ ତୁରନ୍ତ ଚାଲିଯିବାକୁ ପଡ଼ିବ । କଦଳୀ ପତ୍ର ଉପରେ କାକରାପିଠା ଦୁଇଟି ପଡ଼ିଛି, ସେ ଉଠି

ପଡ଼ିଲେ ଓ ଚାଲିଲେ ଜୟପୁର ଅଭିମୁଖେ । ଏପରି ଅଚାନକ କାଣ୍ଡ ଦେଖି, କିଏ କ'ଣ ଭାବିବାକୁ ଲାଗିଲେ । ଆଗରୁ ତ ଥରେ ଏପରି ଅଚାନକ ଭାବେ ସେ ମନ୍ତ୍ରିମଣ୍ଡଳରୁ ବହିଷ୍କୃତ ହୋଇଥିଲେ । ସେପରି ହେବ ନାହିଁ ତ ?

କିନ୍ତୁ ଦୁଇ ଦିନ ପରେ ଶୁଣାଗଲା ସେ ବୀରେନ୍ ମିତ୍ରଙ୍କ ସ୍ଥାନରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଛନ୍ତି ଏବଂ ଆମ ପାଇଁ ଶୁଭ ଖବର ହେଲା ତା'ର କୋଡ଼ିଏ ଦିନ ପରେ ଆମର ପି.ଏସ୍.ସି. ସାକ୍ଷାତ୍‌କାର ପାଇଁ ନୋଟିସ୍ ଆସିଛି । ଦରଖାସ୍ତ ଆବେଦନର ଏକ ମାସ ପରେ ଓ ଜୁନ୍ ମାସରେ ସାକ୍ଷାତକାର ।

ଏତକ ଭାବିଲା ବେଳକୁ, ମୋ ସମ୍ମୁଖରେ ଅଭିଯୋଗକାରୀଙ୍କ ସଂଖ୍ୟା ଶୂନ୍ ହୋଇଗଲାଣି । ଜଣେ ଲୋକ ଆସି ପଚାରିଲା, 'ଆପଣଙ୍କ ସାକ୍ଷାତର ଉଦ୍ଦେଶ୍ୟ ଜଣାଇଲେ ମୁଁ ମୁଖ୍ୟମନ୍ତ୍ରୀଙ୍କୁ କହିବି ।'

'ମୋର ଉଦ୍ଦେଶ୍ୟ କେବଳ ମୁଖ୍ୟମନ୍ତ୍ରୀଙ୍କୁ ଦେଖିବା ପାଇଁ ।

'ତା' ମାନେ ?'

'ତା' ମାନେ ହେଉଛି, ମୁଁ ତାଙ୍କୁ ବହୁ ବର୍ଷ ଧରି ରାଜସ୍ୱ ମନ୍ତ୍ରୀ ଭାବେ ଜାଣିଛି । ଏବେ ସେ ମୁଖ୍ୟମନ୍ତ୍ରୀ । ଏ ଦୁଇଟି ଭିତରେ ପ୍ରଭେଦ ଅଛି । ତାଙ୍କୁ ଦେଖି ସେ ପ୍ରଭେଦଟା ଶରୀରରେ କିପରି ପ୍ରକଟିତ ହୋଇଛି, ଜାଣିବାକୁ ଚାହୁଁଛି ।

'ଏଇଟା କି ପ୍ରକାର ଅଭିଯୋଗ ଆଜ୍ଞା ! ଏକଥା କ'ଣ ମୁଖ୍ୟମନ୍ତ୍ରୀଙ୍କୁ କୁହାଯିବା ଉଚିତ୍ ?'

'ହଁ, କୁହ । ଦେଖାଯାଉ ସେ କ'ଣ କହୁଛନ୍ତି ।'

ଅର୍ଦ୍ଦଳି ହସି ହସିକା ଚାଲିଗଲା । ଅଳ୍ପ ସମୟ ଭିତରେ ଫେରି ଆସି କହିଲା, 'ସାର୍ ତୁମ କଥାଶୁଣି ହସିବେ କ'ଣ ଗମ୍ଭୀର ହୋଇଗଲେ । ତୁମ ନାଁ ପଚାରି ଆସିବାକୁ କହିଲେ ।'

'କହିବୁ, ଗଙ୍ଗାଧର ନନ୍ଦଙ୍କ ପୁଅ ଦାଶରଥି ।'

ତା'ର ଅଳ୍ପ ସମୟ ପରେ ସଦାଶିବ ତ୍ରିପାଠୀ ବାରଣ୍ଡାକୁ ଆସି ଏକ ଚୌକିରେ ବସିଲେ । ସେ ହସି ହସି କହିଲେ, 'କ'ଣ ଦେଖୁଛୁ ? ରାଜସ୍ୱ ଓ ମୁଖ୍ୟ ଭିତରେ ପ୍ରଭେଦ କ'ଣ ସେଇୟା ନା ?'

'ହଁ ।'

'କି ପ୍ରଭେଦ ଦେଖିଲୁ ?'

'ଏବେ ତ ନୂଆରେ ଦେଖୁଛି । ତେବେ ଶରୀରଟା ଏକ ମନ ବି ଏକ । ତେବେ ବାହ୍ୟ ଦୃଶ୍ୟପଟ ଆଡ଼ମ୍ବରପୂର୍ଣ୍ଣ ଏବଂ ଭାଷା ଓ ବକ୍ତବ୍ୟ ଉଚ୍ଚାଟମୟ ।'

ସେ ହସି ହସି କହିଲେ, 'ଏ ସବୁ ଠିକ୍ ହୋଇପାରେ । କିନ୍ତୁ ଏ ସବୁ ସ୍ୱତଃସ୍ଫୁର୍ତ । ହଁ ଏବେ କୁହ, ବାପା କିପରି ଅଛନ୍ତି ।'

'ପ୍ରତି ରବିବାରେ ସୁନାବେଢ଼ାରୁ ଜୟପୁର ଆସେଁ । ଏଠି ବାପା ଅଛନ୍ତି । ମୁଁ ଆଜି ଏଗାରଟାରୁ ଗୋଟାଏ ଯାଏଁ ଏଠାରେ ଅଛି ତୁମକୁ ଦେଖା କରିବା ପାଇଁ । ତେଣୁ ବାପାଙ୍କ କଥା ଜାଣି ନାହିଁ । ବରଂ ବାପାଙ୍କୁ ତୁମ କଥା କହିବି ଯେ ତୁମେ ଭଲରେ ଅଛ ।'

ସେ ପୁଣି ହସିଲେ ଏବଂ ପଚାରିଲେ, 'ତୋ କଥା କ'ଣ ?'

'ଏବେ ଜୁନ୍ ମାସରେ ପି.ଏସ୍.ସି. ସାକ୍ଷାତ୍‌କାର ହୋଇଥିଲା । ମୁଁ ଓଡ଼ିଶାରେ ପ୍ରଥମ ହୋଇଛି । ତୁମେ କହିବା ଅନୁସାରେ ମୁଁ ଜଳସେଚନ ବିଭାଗ ପାଇଁ ପ୍ରାର୍ଥୀ ଥିଲି ।'

'ଓଃ ତା'ହେଲେ ତ ଖୁବ୍ ଭଲ କଥା ହେଲା । ମୁଖ୍ୟମନ୍ତ୍ରୀ ହେଲେ ମଧ୍ୟ ଜଳସେଚନ ବିଭାଗ ମୋ ଅଧୀନରେ । କେଉଁଠି ଚାକିରି କରିବାକୁ ଚାହୁଁଛୁ ?'

'ମୁଁ ପ୍ରଥମେ ଓଡ଼ିଶାର ଜଳସଂପଦ ଅର୍ଥାତ୍ ନଦ, ନଦୀଗୁଡ଼ିକୁ ବୁଝିବାକୁ ଚେଷ୍ଟା କରିବି । କେଉଁ ନଦୀର କେତେ କ୍ଷମତା ଓ ଲୁକ୍କାୟିତ ସମ୍ପଦ । ସେଥିପାଇଁ ମୁଁ କୌଣସି ଫିଲଡ୍‌କୁ ନ ଯାଇ ପ୍ଲାନିଂରେ ରହିବାକୁ ଚାହୁଁଛି ।'

'ନଦୀଗୁଡ଼ିକ ବିଷୟରେ କେଉଁଠାରୁ ଜାଣିବୁ ? ଓଡ଼ିଶାରେ ତ ଅନେକ ନଦୀ ।'

ହଠାତ୍ ମୋ ତୁଣ୍ଡରୁ ବାହାରି ପଡ଼ିଲା, 'ସେସବୁ ଟେପୋମ୍ୟାପ୍‌ଗୁଡ଼ିକରୁ ଜାଣିହେବ । ମୋର ଚାକିରି ପୂର୍ବରୁ ମଧ୍ୟ ମୁଁ ସେ ସବୁକୁ ପରୀକ୍ଷାନିରୀକ୍ଷା କରିବା ପାଇଁ ଇଚ୍ଛୁକ, ଯଦି ତୁମେ ଭୁବନେଶ୍ୱରକୁ ସମଗ୍ର ଓଡ଼ିଶାର ଟୋପୋ ମ୍ୟାପ୍‌ଗୁଡ଼ିକ ପଠାଇପାରିବ...'

ମୁଖ୍ୟମନ୍ତ୍ରୀ ତାଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ରାଘବନଙ୍କୁ ଡକାଇ ଟୋପୋ ମ୍ୟାପ୍‌ଗୁଡ଼ିକ ପଠାଇ ଦେବାକୁ ଟିପି ନେଲେ । ତା'ପରେ ମୋତେ ପଚାରିଲେ, 'ପ୍ଲାନିଂ ମାନେ ତ, ତା'ର ସବୁ ଅଫିସ୍ ଭୁବନେଶ୍ୱରରେ । ତୁ ସେଠି କେଉଁଠି ରହିବୁ ?'

'ଜାଣି ନାହିଁ । ଭୁବନେଶ୍ୱର ରହଣି ବିଷୟରେ ଧାରଣା ନାହିଁ । ସରକାରୀ ଘର ମିଳିବା ପର୍ଯ୍ୟନ୍ତ ଅସୁବିଧା ହୋଇପାରେ ।'

'କିଛି ଅସୁବିଧା ହେବ ନାହିଁ । ତୁ ମୋ ସହିତ ଆମ ଘରେ ରହିବୁ ।'

ମୁଁ କାବା ହୋଇଗଲି । ମୋ ପରି ଜଣେ ନଗଣ୍ୟ ଲୋକ ପୁଣି ରହିବ ମୁଖ୍ୟମନ୍ତ୍ରୀଙ୍କ କୋଠାରେ ? ମୁଁ କହିଲି, 'ତୁମେ ରାଜ୍ୟ ମୁଖ୍ୟ । ମୁଁ ଜଣେ ସାମାନ୍ୟ ସହକାରୀ ଯନ୍ତ୍ରୀ ଓ ରାତିରେ ହୁଏତ ମୁଁ ଟୋପ ମ୍ୟାପ୍ ଧରି ବସିବି ଘଣ୍ଟା ଘଣ୍ଟା ଯାଏଁ । ତୁମ ପାଖକୁ ଶହ ଶହ ଲୋକ ଆସୁଥିବେ । ମୋ ପାଇଁ ତୁମର ଅନେକ ଅସୁବିଧା ହେବ ନିଶ୍ଚୟ ।'

ସେ କହିଲେ, 'କିଛି ଅସୁବିଧା ହେବ ନାହିଁ । ତୋ ପିଉସୀ ବା ଭାଇନା କେହି ମୋ ପାଖରେ ରହନ୍ତି ନାହିଁ । ସମସ୍ତେ ନବରଙ୍ଗପୁରରେ । ମୁଁ ସେଠି ଏକୁଟିଆ । ତୋ ପାଇଁ ସ୍ୱତନ୍ତ୍ର ରୁମ୍‌ର ବ୍ୟବସ୍ଥା ହେବ । ଯେତେ ଜଳସେଚନ ପ୍ଲାନିଂ କରିବୁ ସେଠି କରୁଥା । କେହି ଡିଷ୍ଟର୍ବ କରିବେ ନାହିଁ । ବଳକା ସମୟରେ ତୁ ମୁଁ ଗପ କରିବା । ହେଲା ଏଇଟା ଫାଇନାଲ୍ । ତୋର ପୋଷ୍ଟିଂ ଅର୍ଡ଼ର ମାସେ ଭିତରେ ଆସି ପହଞ୍ଚିଯିବ ।'

ମୋର କୌଣସି ବକ୍ତବ୍ୟକୁ ମସୁଧା ନ ଦେଇ ସେ କହିଲେ, 'ହଉ ଏଥର ଯା' । ଭୁବନେଶ୍ୱରରେ ଦେଖା ହେବ । ଏ ଭିତରେ ସୁନାବେଡ଼ାକୁ ଟପୋ ମ୍ୟାପ୍‌ଗୁଡ଼ିକୁ ପଠାଇ ଦେବି ।'

ଦିନ ଗୋଟାଏ ବେଳ ଘର ଲେଉଟାଣି ସମୟରେ ମୋ ମନଟା ଉଭୟ ପୁଲକ ଓ ବିଷାଦରେ ଭରି ଯାଇଥିଲା । ମନରେ ପ୍ରଶ୍ନ ଉକୁଟି ଥିଲା, ସରକାରୀ ସ୍ତରରେ ଜଣେ ସହକାରୀ ଯନ୍ତ୍ରୀ କେଉଁ କେତେ ତଳ ପାହ୍ୟାର । ସେପରି ଜଣେ ନଗଣ୍ୟ ବ୍ୟକ୍ତିକୁ ଓଡ଼ିଶା ମୁଖ୍ୟ ସଦାଶିବ ତ୍ରିପାଠୀ କିପରି ଆପଣା ବସାରେ ସ୍ଥାନ ଦେଲେ । ଦ୍ୱିତୀୟ କଥା ମନରେ ଆସେ, ମୋର ସେଠି ସ୍ୱତନ୍ତ୍ରତା କେତେ ପରିମାଣରେ ରହିବ । ମୁଖ୍ୟମନ୍ତ୍ରୀଙ୍କ କୋଳାହଳମୟ କୋଠିରେ ମୁଁ ପ୍ରାୟତଃ ବିଲୁପ୍ତ ହୋଇଯିବି । ତଥାପି ଏପରି ଏକ ଦୁର୍ଲଭ ପ୍ରସ୍ତାବନାକୁ ପ୍ରତ୍ୟାଖ୍ୟାନ କରିବା ଅମୂଳକ ।

ଏପରି ଭାବନାଗୁଡ଼ିକରେ (ଆନନ୍ଦ ଓ ନିରାନନ୍ଦ) ଆକ୍ରାନ୍ତ ହୋଇ ଜୟପୁର ନିବାସରେ ପ୍ରବେଶ ହେଲି । ଆମ ଘରର ନିୟମ ଥିଲା, ପ୍ରଥମେ ଆମ ଆରାଧ୍ୟ ଦେବୀ ଦୁର୍ଗାଙ୍କୁ ପ୍ରଣିପାତ ପରେ ହିଁ ଅନ୍ୟ ଗୁରୁଜନଙ୍କୁ ନମସ୍କାର କରିବା । ମୁଁ ସେପରି କଲାପରେ ମା' ପଚାରିଲେ କାହିଁକି ଡେରି ହେଲା ? ମୁଁ ସଦାଶିବ ତ୍ରିପାଠୀଙ୍କ କଥା ଆରମ୍ଭ କଲି । କଥା ଉଠିଲା, ସେ ମୋ' ପାଖକୁ ଆସି କେତେକ ପ୍ରଶ୍ନ କଲେ ଏବଂ ଶେଷରେ ଶୁଣିଲେ ଯେ ସେ ମୋତେ ତାଙ୍କ ଘରେ ରହିବାକୁ ଆଦେଶ ଦେଇଛନ୍ତି । ସେ ସବୁ ଶୁଣି କହିଲେ, 'ସେପରି ହିଁ କରିବୁ ।'

ମୁଁ ପଚାରିଲି, 'ତୁମକୁ ସେ ଏତେ ସମ୍ମାନ ଦିଅନ୍ତି ତୁମ ବିଷୟରେ ପଚାରନ୍ତି, ଅଥଚ ତୁମକୁ ଦେଖିବାକୁ ସେ କାହିଁକି ଆମ ଘରକୁ ଆସନ୍ତି ନାହିଁ ?'

ସେ କହିଲେ, 'ମୁଁ ତାଙ୍କୁ ପ୍ରତିଜ୍ଞା କରାଇଛି କି ଯେତେଦିନ ଯାଏଁ ସେ ମନ୍ତ୍ରୀ ଥିବେ, ମୁଁ ନ ଡାକିଲା ଯାଏଁ ଆମ ଘରକୁ ଆସିବେ ନାହିଁ । ମୁଁ କେବଳ ବାହା, ବ୍ରତରେ ଇଚ୍ଛା କଲେ ତାଙ୍କୁ ଡାକିବି । ସେହିପରି ମୁଁ ମଧ୍ୟ କେବେ ନିଜ କାମ ପାଇଁ ତାଙ୍କର ଦ୍ୱାରସ୍ଥ ହେବି ନାହିଁ ।'

ମୁଁ ସୁନାବେଡ଼ାକୁ ଫେରିବାର ସାତଦିନ ପରେ ମୁଖ୍ୟ ନିର୍ମାଣ ଯନ୍ତ୍ରୀ ଆନନ୍ଦ ଚନ୍ଦ୍ର ପାଢ଼ୀ ମୋତେ ଡକାଇ ପଠାଇଲେ । ମୁଁ ଡରିଗଲି । ସେତେବେଳେ ଏ.ସି. ପାଢ଼ୀ ମାନେ ଇଞ୍ଜିନିୟରିଂଙ୍କ ଭିତରେ ସାକ୍ଷାତ ଏକ ଜିଅନ୍ତା ବାଘ । ମୁଁ ଯେତେବେଳେ ପ୍ରଥମେ ସୁନାବେଡ଼ାରେ ନିଯୁକ୍ତ ହେଲି, ସେତେବେଳେ ତାଙ୍କ ଅଫିସ୍ ଥିଲା ଭୁବନେଶ୍ୱରରେ । ମାସରେ ଥରେ ଦୁଇଥର ସୁନାବେଡ଼ା ଆସନ୍ତି । ସେ ଆସିଲା ବେଳେ ଦୂରରୁ ସାଇରନ୍ ଶବ୍ଦ ଶୁଣାଯାଏ । ସେପରି ଜଣେ ପ୍ରତାପୀ ଯନ୍ତ୍ରୀ ଦିନେ ତାଙ୍କ ରୁମ୍‌କୁ ଡାକି କହିଲେ – ଚିଫ୍ ମିନିଷ୍ଟର ତୁମ ପାଇଁ ଏ ବଣ୍ଡଲ୍‌ଟି ପଠାଇଛନ୍ତି । ଉପରେ ଲେଖାଯାଇଛି, Confidential Topo Maps of Orissa - 35 numbers.

ମୁଁ ଧୀରେ ଧୀରେ ଟପୋ ବଣ୍ଡଲ୍‌ଟି ଧରି ତାଙ୍କ ରୁମ୍‌ରୁ ପ୍ରସ୍ଥାନ କଲି ।

ମୁଁ ମୋ ବସାରେ ଦିନ ରାତି ଧରି ଟପୋ ମ୍ୟାପ୍‌ଗୁଡ଼ିକୁ ମେଲାଇ ନଦୀଗୁଡ଼ିକର ଗତିପଥ ହିଁ ଦେଖିବାରେ ଲାଗିଲି । ମୋର ସେତେବେଳେ ଡ୍ୟାମ୍, ବିଦ୍ୟୁତ୍ ବିଭବ ଆଦି ଉପରେ କୌଣସି ଧାରଣା ନଥିଲା । ତେଣୁ ସେ ନକ୍ସାଗୁଡ଼ିକରୁ ଏତିକି ମାତ୍ର ଜ୍ଞାନ ଆହରଣ କଲି ଯେ କେଉଁ ନଦୀଗୁଡ଼ିକ କେଉଁ ଅଞ୍ଚଳରେ ପ୍ରବାହିତ ହେଉଛି । କେଉଁ ପାହାଡ଼ କଡ଼େ, କେଉଁ ଉପତ୍ୟକାରେ ଓ କେଉଁ ସହରାଞ୍ଚଳରେ ଗତି କରୁଛି ।

ଏଥିରୁ କ'ଣଟା ବା ଲାଭ ହେବ । ମନରେ ବ୍ୟଥିତ ହେବା ହିଁ ସାର ।

୧୯୬୫ ନଭେମ୍ବର ପ୍ରଥମ ସପ୍ତାହରେ ସହକାରୀ ଯନ୍ତ୍ରୀଙ୍କ ପୋଷ୍ଟିଂ ଅର୍ଡ଼ର ବାହାରିଲା । ପ୍ରଥମ ଦଶାରେ ୧୮ ଜଣ ନିଯୁକ୍ତିପତ୍ର ପାଇଲେ । ସେଥିରେ ସର୍ବାଗ୍ରେ ମୋର ଜଣେ ମାତ୍ରକୁ ହିଁ ପ୍ଲାନିଂ ବିଭାଗରେ ସ୍ଥାପିତ କରାଯାଇଥିଲା । ଅନ୍ୟ ସତର ଜଣକୁ ବିଭିନ୍ନ କ୍ଷେତ୍ରରେ ପୋଷ୍ଟିଂ ହୋଇଥିଲା ।

ସେଇ ନଭେମ୍ବର ଦ୍ୱିତୀୟ ସପ୍ତାହରେ ମୁଁ ଭୁବନେଶ୍ୱରରେ ପଦାର୍ପଣ କଲି । ସିଧା ଚାଲିଲି ମୁଖ୍ୟମନ୍ତ୍ରୀଙ୍କ କୋଠିକୁ । ତାହା ଏକ ଛକ ସାମ୍ନାରେ କଡ଼ର ପ୍ରଥମ ସରକାରୀ କ୍ୱାର୍ଟର, ବୋଧହୁଏ ଟାଇପ୍ ସି । ଗେଟ୍ ସାମ୍ନାରେ ଗୋଟିଏ ଛୋଟିଆ କ୍ୟାବିନ୍‌ରୁ ପୋଲିସ୍‌ଟିଏ ଆସି ମୋ ରିକ୍ସାକୁ ଅଟକାଇଲା । ମୋର ପରିଚୟ ଶୁଣି ଭିତରକୁ ଗଲା ଏବଂ ଫେରିଆସି ମୋତେ ଭିତରକୁ ଯିବାକୁ ଅନୁମତି ଦେଲା ।

ମୁଁ ସନ୍ତର୍ପଣରେ ଭିତରେ ପ୍ରବେଶ କଲି । ବାରଣ୍ଡାରେ ଏକୁଟିଆ ବସିଥିବା ମୋ' ପିଉସା ବା ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ପ୍ରଣାମ ଜଣାଇଲି । ସେ ହସି ହସି ରଡ଼ି ଛାଡ଼ିଲେ, ଆରେ ଗୁଣ, ବାବୁଙ୍କ ଜିନିଷଗୁଡ଼ିକୁ ସେ ବଖରାରେ ରଖିଦେ । ଚାକର ଗୁଣ ଦୌଡ଼ି ଆସି ରିକ୍ସାରୁ ମୋର ଗୋଟିଏ ଟ୍ରଙ୍କ ଓ ବ୍ୟାଗଟିଏ ଧରି ଅନ୍ୟ ଏକ ରୁମ୍‌ରେ ରଖିଦେଲା । ସେ କହିଲେ, 'ଭଲରେ ଆସିଲୁ ତ ? ଯା' ସଫା ସୁତରା ହୋଇ ଖାନାପିନା କର ଓ ବିଶ୍ରାମ ନେ । ପରେ କଥା ହେବା ।'

ମୁଁ ଅନ୍ୟ ବଖରାକୁ ଚାଲିଗଲି । ଘର ଓ ତା' ଚାରିପଟେ ଘୁରି ଆସିଲି । ମୁଖ୍ୟଙ୍କ କୋଠରୀରେ ତିନୋଟି ବଖରା । ବାଁ ପଟେ ସେ ରୁହନ୍ତି । ସେଇ ଏକମାତ୍ର ବଖରାରେ ଟଏଲେଟ୍‌ର ବନ୍ଦୋବସ୍ତ । ତା' ଡାହାଣକୁ ଆଉ ଦୁଇଟି ବଖରା । ଦ୍ୱିତୀୟ ରୁମ୍‌ରେ ମୋର ଆସ୍ଥାନ ହେବ । ଏ ତିନୋଟି ରୁମ୍ ସାମ୍ନାରେ ବିଶାଳ ବାରଣ୍ଡା । ସେଇ ବାରଣ୍ଡାର ଶେଷରେ ପ୍ରାଇଭେଟ୍ ସେକ୍ରେଟାରୀଙ୍କ ବଖରା । ସମ୍ମୁଖ ପୋର୍ଟିକୋ ଉପରେ ଫୁଲ ଲଟାଟିଏ ଢାଙ୍କି ହୋଇରହିଛି । ସମ୍ମୁଖରେ ଏକ ପ୍ରଶସ୍ତ ଉଦ୍ୟାନ । ପଛପଟେ ଦୁଇଟି ଛୋଟ ଘର । ସେଥିରୁ ଗୋଟିକରେ ଚାକର ଗୁଣନିଧି ଏକୁଟିଆ ରହେ । ସେ ଜଗତସିଂହପୁରର । ତା' ପିଲାମାନେ ଗାଁରେ ରହନ୍ତି ।

ଭୁବନେଶ୍ୱରରେ ସେତେବେଳେ ମୋ' ଭାଉଜଙ୍କ ବାପା ମୃତ୍ୟୁଞ୍ଜୟ ମହାପାତ୍ର ବି ରହୁଥିଲେ । ସେ ସମବାୟ ବିଭାଗର ଡେପୁଟି ଡାଇରେକ୍ଟର । ତିନି ନମ୍ବର ୟୁନିଟ୍‌ରେ ରହନ୍ତି । ସେ ତିନି ପୁଅଙ୍କୁ ନେଇ ଗୋଟିଏ ଘରେ ରହନ୍ତି । ତାଙ୍କ ଘରକୁ ମୁଁ ଆଗରୁ ଯାଇଛି । ପିଲାମାନେ ଓ ବାପା ମା' ଭାରି ବନ୍ଧୁ ବତ୍ସଳ । ତେଣୁ ଦରକାର ବେଳେ ତାଙ୍କ ଘରକୁ ମଧ୍ୟ ଗଲେ ସମୟ କଟିବ । ସେପରି ହେଲା ମଧ୍ୟ । ମୋର ରାତ୍ରିଭୋଜନ ସେଠାରେ ହିଁ ହୁଏ ।

ପ୍ରଥମ ଦୁଇ ଦିନରେ ଦେଖିଲି ମୁଖ୍ୟମନ୍ତ୍ରୀ ଖୁବ୍ ଗମ୍ଭୀର ହୋଇ ନିଜ ବଖରାରେ ହିଁ ବସି ରହୁଛନ୍ତି । ସେପରି ଉଦାସୀନ ଅବସ୍ଥାରେ ବାର୍ତ୍ତାଳାପ କରିବା ଅନୁଚିତ ଭାବି ମୁଁ ଦୂରେଇ ରହିଲି ।

କଥା ପ୍ରସଙ୍ଗରେ ପ୍ରାଇଭେଟ୍ ସେକ୍ରେଟାରୀଙ୍କଠାରୁ କିଛି ସୁରାକ୍ ପାଇଲି ମୁଖ୍ୟଙ୍କ ବିମର୍ଷତା ବିଷୟରେ । ରାଘବନ ହେଉଛନ୍ତି ଜଣେ ମାନ୍ଦ୍ରାଜବାସୀ । ସେ ଅତ୍ୟନ୍ତ ବିଶ୍ୱସ୍ତତାର ସହିତ କାମ କରନ୍ତି । ପ୍ରାଇଭେଟ୍ କଥା ମୋଟେ ବ୍ୟକ୍ତ କରନ୍ତି ନାହିଁ । ମୋର ସୌଭାଗ୍ୟ ମାତ୍ର ଦୁଇ ଦିନ ଭିତରେ ମୁଁ ତାଙ୍କର ବିଶ୍ୱାସଭାଜନ ହୋଇପାରିଲି । ତାଙ୍କଠାରୁ ଶୁଣିଲି, ମନ୍ତ୍ରିମଣ୍ଡଳର ସଦସ୍ୟମାନେ ଷ୍ଟ୍ରାଇକ୍ କରିଛନ୍ତି । କେହି ସହଯୋଗ କରୁନାହାନ୍ତି । ଅଫିସ୍‌କୁ ଯାଉନାହାନ୍ତି । ଦ୍ୱିତୀୟତଃ କଳାହାଣ୍ଡିରେ ମରୁଡ଼ି ପଡ଼ିଛି । ଏ ସବୁ ଶୁଣି ମୋତେ ଦୁଃଖ ଲାଗିଲା । ମୁଁ ଭାବିଥିଲି କୋରାପୁଟର ଆଉ ଜଣେ ମନ୍ତ୍ରୀ ଟି. ସାଙ୍ଗାନାଙ୍କୁ ଦେଖା କରିବାକୁ । କିନ୍ତୁ ସେ ମଧ୍ୟ ସେତେବେଳେ ଷ୍ଟ୍ରାଇକ୍‌ରେ । ତାଙ୍କୁ ଦେଖା କରିବାର ଲାଳସା ତ୍ୟାଗ କଲି । ସନ୍ଧ୍ୟାରେ ମଉକା ଖୋଜି ପିଉସାଙ୍କୁ କହିଲି, ମୁଁ ଭଗବତୀଙ୍କୁ ପ୍ରାର୍ଥନା କରିବି, ତୁମର ସଙ୍କଟ ମୋଚନ ହେବ । ସେ ହସିଲେ ।

କେଉଁଥିପାଇଁ ହେଲା ଜାଣି ନାହିଁ, କିନ୍ତୁ ପାଞ୍ଚଦିନ ପରେ ମନ୍ତ୍ରିମାନେ ଆପଣା ବିଭାଗରେ ଯୋଗଦେଲେ ।

ପରେ ଶୁଣିଲି ଯେ, ସଦାଶିବଙ୍କ ଉପରେ ଚାପ ପଡ଼ିଥିଲା ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବାକୁ । ସେ ମଧ୍ୟ ରାଜି ଥିଲେ । କିନ୍ତୁ ବାରମ୍ବାର ପ୍ରଦେଶରେ ନେତୃତ୍ୱ ପରିବର୍ତ୍ତନକୁ ଦିଲ୍ଲୀର କଂଗ୍ରେସ ହାଇକମାଣ୍ଡ ନାକଚ କରି ଦେଲେ । ସେଥିପାଇଁ କଠୋର ପଦକ୍ଷେପ ନିଆଯିବ ବୋଲି କହିବାରୁ ମନ୍ତ୍ରୀମାନେ ଅସହଯୋଗରୁ ନିବର୍ତ୍ତିଲେ ।

ଏତେବେଳକୁ ଅଫିସ୍‌ରେ ସମସ୍ତେ ଜାଣି ଯାଇ ଥାଆନ୍ତି ଯେ ମୁଁ ମୁଖ୍ୟମନ୍ତ୍ରୀଙ୍କ ଘରେ ରହୁଛି ଏବଂ ମୁଖ୍ୟମନ୍ତ୍ରୀ ମୋର ପିଉସା । ତେଣୁ ମୁଁ ଅଫିସ୍‌କୁ ଡେରିରେ ଗଲେ ମଧ୍ୟ କେହି କିଛି କହନ୍ତି ନାହିଁ । କିନ୍ତୁ ମୋ ଉପରିସ୍ଥ ପଦ୍ମନାଭଙ୍କ ଦୃଷ୍ଟିରେ ପଡ଼ିଲେ ଗାଳି ଶୁଣେ ।

୧୯୬୬ ଫେବୃଆରୀ ଆଡ଼କୁ ଆସେମ୍ବ୍ଲି ଚାଲିଲା । ସେଇ ସମୟରେ ମୋର ମୁଖ୍ୟମନ୍ତ୍ରୀଙ୍କ ସହିତ ସମ୍ପର୍କ ନିବିଡ଼ତର ହେଲା ।

କିଛି ଦାୟିତ୍ୱ ବି ପଡ଼ିଲା । ସକାଳେ ମୁଖ୍ୟମନ୍ତ୍ରୀଙ୍କ ବସାରେ ଏମ୍.ଏଲ୍.ଏ.ମାନେ ଭିଡ଼ ଜମାନ୍ତି । ଅଧିକାଂଶ କୋରାପୁଟର । ସେମାନଙ୍କ ସହିତ ମୋର ଆତ୍ମୀୟତା ବଢ଼ିଲା । ମଝିରେ ମଝିରେ କେତେକ ମନ୍ତ୍ରୀବି ଆସନ୍ତି । ସେମାନଙ୍କ କଥାବାର୍ତ୍ତାରୁ ମୁଁ ଯାହା ଜାଣିଲି, ତତ୍କାଳୀନ ପ୍ରଧାନ ସମସ୍ୟାଗୁଡ଼ିକ ହେଲା, ପାରାଦୀପ ବନ୍ଦର ଓ ଏକ୍ସପ୍ରେସ୍ ସଡ଼କ ନିର୍ମାଣଜନିତ ଦୁର୍ନୀତି ଓ କଳାହାଣ୍ଡି, କୋରାପୁଟ ଦୁର୍ଭିକ୍ଷ । ତା' ପୂର୍ବରୁ ଭାରତ ପାକିସ୍ଥାନ ଯୁଦ୍ଧ ବ୍ୟାପାର ତୁଟି ଯାଇଥାଏ । ପ୍ରଧାନମନ୍ତ୍ରୀ ଲାଲବାହାଦୂର ଶାସ୍ତ୍ରୀଙ୍କ ପରଲୋକ ସଦ୍ୟ ଘଟଣା ଥିଲା ।

ମୁଖ୍ୟମନ୍ତ୍ରୀ ଦଶଟା ବେଳେ ରୁଟି ସନ୍ତୁଳା ଖାଇ ଏସେମ୍ବ୍ଲିକୁ ଚାଲିଯାଆନ୍ତି । ଗୋଟାଏ ବେଳେ ଚାକର ଗୁଣନିଧି କିଛି ଭାତ, ତରକାରୀ ଆଦି ନେଇ ଏସେମ୍ବ୍ଲିକୁ ଯାଏ ଏବଂ ତା' ମୁଖ୍ୟମନ୍ତ୍ରୀଙ୍କ ଆହାର । ଗୋଟିଏ ବିଶେଷ ଆଇଟମ୍ ମୋର ଦୃଷ୍ଟିକୁ ଆସିଲା । ତାହା ହେଉଛି କାକୁଡ଼ି ରସ । କାକୁଡ଼ିକୁ ଟିକିଟିକି କାଟି ଗ୍ରାଇଣ୍ଡରରେ ପେଶାଯାଏ । ଯେଉଁ ରସ ବାହାରେ ତାକୁ ସଂଗ୍ରହ କରାଯାଏ । ପ୍ରାୟ ପନ୍ଦରଟି ମଧ୍ୟମ ଧରଣର କାକୁଡ଼ି ପେଶିଲେ ତିନି ଚାରି ଗ୍ଲାସ୍ ରସ ବାହାରିବ ।

ଦିନେ ଗୁଣକୁ ପଚାରିଲି, 'ଏ ରସ ତକ କ'ଣ ହେଉଛି ?'

'ଏହାକୁ ଏସେମ୍ବ୍ଲିରେ ମଧ୍ୟାହ୍ନ ଭୋଜନ ପରେ ମୁଖ୍ୟମନ୍ତ୍ରୀ ଓ ବିଜୁ ପଟ୍ଟନାୟକ ପିଅନ୍ତି ।'

'ସତେ ? କାଲିଠାରୁ ମୁଁ ମଧ ଯିବି ଏସେମ୍ବ୍ଲିକୁ । ଦେଖିବା କେମିତି ଦୁଇଜଣ ଏକାଠି ବସି ପିଉଛନ୍ତି । ବାହାରେ ତ ଶୁଣାଯାଉଛି ବିଜୁବାବୁ ଆଉ ସଦାଶିବଙ୍କର ପଡୁନାହିଁ । ଏକାଠି କିପରି ବସି ପିଉଛନ୍ତି ?'

ଗୁଣ କହିଲା, 'କିଏ କ'ଣ କହୁଛନ୍ତି ମୁଁ ଜାଣି ନାହିଁ । ବିଜୁବାବୁ ତ ବେଳେ ବେଳେ ଆମ ବସାକୁ ଆସି ବାବୁଙ୍କ ସହିତ ତାଙ୍କ ବେଡ଼ରୁମ୍‌ରେ ଘଣ୍ଟା ଘଣ୍ଟା କଥା ହୁଅନ୍ତି । ଯେ ବି ତାଙ୍କ ଘରକୁ ଯିବା ଆମେ ଜାଣୁ ।'

'ହଉ ତେବେ ମୁଁ କାଲି ବାରଟା ବେଳେ ଅଫିସ୍‌ରୁ ଚାଲିଆସିବି, ଆମେ ଦୁହେଁ ଏସେମ୍ବ୍ଲିକୁ ଯିବା । ଦେଖିବି କାକୁଡ଼ି ରସର ମାହାତ୍ମ୍ୟ ।'

ତା' ଆରଦିନ ଗୁଣ ଆଉ ମୁଁ ଦିନ ବାରଟା ବେଳେ ଟିଫିନ୍ କ୍ୟାରିଅରରେ ଭୋଜନ ସାମଗ୍ରୀ ଓ ଗୋଟିଏ ଫ୍ଲାସ୍କରେ କାକୁଡ଼ି ରସ ଧରି ଏସେମ୍ବ୍ଲିକୁ ଗଲୁ । ମୁଖ୍ୟମନ୍ତ୍ରୀ ସାଢ଼େ ଗୋଟାଏ ବେଳେ ଆପଣା ଚ୍ୟାମ୍ବରରେ ପ୍ରବେଶ କଲେ । ଖାଉ ଖାଉ ପଚାରିଲେ, 'ତୁ ଦାଶରଥି ଆଜି ଏଠାରେ କିପରି ?'

'ଏସେମ୍ବ୍ଲିରେ ତୁମକୁ କେବେ ଦେଖିନଥିଲି । ଗତ ଘଣ୍ଟାଏ କାଳ ଏସେମ୍ବ୍ଲିର ବିଚାର ଆଲୋଚନା ବାହାରୁ ଶୁଣିଲି । ମୁଁ ଭାବିଥିଲି କୋରାପୁଟିଆ ସି.ଏମ୍.ଙ୍କ ପାଟିରେ ଖଇ ବାଜିଯିବ । କିନ୍ତୁ ତୁମର ଉତ୍ତର ଓ ସ୍ୱରର ତେଜ ଶୁଣି ତାଜୁବ୍ ହେଲି ।'

ସେ ଗମ୍ଭୀର ହୋଇ କହିଲେ, 'କୋରାପୁଟିଆମାନେ ? କିଏ କେଉଁ ଅଞ୍ଚଳରେ କେଉଁଠି ଅଛି ତାହା ତା'ର ସମ୍ୟକ୍ ପରିଚୟ । ସମ୍ପୂର୍ଣ୍ଣ ପରିଚୟ ନୁହେଁ । ଏବେ ତୁ ଭାବୁଛୁ ବୋଧହୁଏ କଟକ, ପୁରୀ, ବାଲେଶ୍ୱର ବାଲାଏ କୋରାପୁଟବାଲାଙ୍କଠାରୁ ଚାଲାକ୍ । କିନ୍ତୁ ଅବସ୍ଥାନଟା କ'ଣ ସବୁବେଳେ ଏକାଠି ଲାଗି ରହିଥାଏ ? ଆଜିର ଏ ସ୍ଥାନରେ ମଣିଷ କାଲିକି ଯେ ଅନ୍ୟ ଏକ ସ୍ଥାନର ଅଧିବାସୀ ନ ହେବ, କିଏ କହିବ । ଆମେମାନେ ତ ପୁଣି ଏକଦା ବହୁ ବର୍ଷତଳେ ଏ ଅଞ୍ଚଳର ଅଧିବାସୀ ଥିଲୁଁ । ହଉ ଏବେ ଖାଇବା ।'

ସେ ମଧ୍ୟାହ୍ନ ଭୋଜନ କଲାବେଳେ ମୁଁ କହିଲି, 'ମୁଁ କିନ୍ତୁ ଆଜି ଆସିଛି, ଆଉ ଏକ ଦୃଶ୍ୟ ଦେଖିବା ପାଇଁ ! ତାହା ହେଉଛି କାକୁଡ଼ି ରସ ଗ୍ରହଣ ।'

'ଏବେ ବିଜୁବାବୁ ଆସିଯିବେ ଯେ, ସେତେବେଳେ ପିଆ ହେବ ।'

ମଧ୍ୟାହ୍ନ ଭୋଜନ ପରେ ଭିତର ରୁମ୍‌ରେ ସେ ବିଶ୍ରାମ ନେଲେ । ଆମେ ସାମ୍ନା ରୁମ୍‌ରେ ବସିଥାଉଁ । ପ୍ରାୟ ତିନିଟା ପନ୍ଦର ବେଳକୁ ବିଜୁ ପଟ୍ଟନାୟକ ଧଡ଼୍‌କରି ରୁମ୍ ଭିତରକୁ ପଶି ଆସିଲେ । ତା' ପୂର୍ବରୁ ସେ ଆସିବେ ବୋଲି ଖବର ପହଞ୍ଚିଲା । ଭିତରେ ଦୁଇଜଣ ପ୍ରାୟ ଦଶ ମିନିଟ୍ କଥା ହେଲାପରେ ମୋତେ ଡକାଗଲା ।

ମୁଁ ଭିତରକୁ ଯାଇ ବିଜୁବାବୁଙ୍କୁ ପ୍ରଥମେ ଦେଖିଲି ଏବଂ ଦଣ୍ଡବତ ହେଲି । ଖୁବ୍ ଡେଙ୍ଗା ମଣିଷଟାଏ ।

ପିଉସା କହିଲେ, 'ଆରେ ବାବୁ, ସେଇଠି ବସ ।'

ବିଜୁବାବୁ କହିଲେ, 'ପିଲାଟାଏ ତାକୁ ବାବୁ ବୋଲି ଡାକୁଛ କ'ଣ ?'

'ଆମେ, ପୁଅ, ପୁତୁରା ଆଦିଙ୍କୁ ବାବୁ ବୋଲି ହିଁ ଡାକୁଁ । ଯେ' ମୋର ପୁତୁରା । ଭାରି ବ୍ରିଲିଏଣ୍ଟ୍ । ପିଲାବେଳେ ସ୍କୁଲରେ ସବୁତକ ପ୍ରାଇଜ୍ ନେଉଥିଲା । ଇଞ୍ଜିନିୟରିଂରେ ଫାଷ୍ଟ ହେଉଛି ।

ଏବେ ଇରିଗେସନ୍ ପ୍ଲାନିଂରେ ଆସିଷ୍ଟାଣ୍ଟ ଇଞ୍ଜିନିୟର । ମୋ ବସାରେ ମୋ' ସହିତ ରହୁଛି ।'

'ଜଳସେଚନର କି ପ୍ଲାନିଂ କରୁଛ ?' ବିଜୁ ପଚାରିଲେ ।

ମୁଁ ଡରି ଡରି କହିଲି, 'ମଣିଭଦ୍ରା ବ୍ୟାରେଜ୍ । ଡଃ ଖୋସଲା ଆମକୁ ଦିଗ୍‌ଦର୍ଶନ ଦେଉଛନ୍ତି ତଥା ଗାଇଡ୍ କରୁଛନ୍ତି ।'

'ଟିକରପଡ଼ାର ଅବସ୍ଥା କ'ଣ ?'

'ତା' ପାଇଁ ମଧ ଗୋଟିଏ ଡିଭିଜନ୍ କାମ କରୁଛି । ନୀଳକଣ୍ଠ ମିଶ୍ର ତା'ର ନିର୍ବାହୀ ଯନ୍ତ୍ରୀ । ବୁଡ଼ି ଅଞ୍ଚଳ ସର୍ଭେ ତଥା ଡ୍ୟାମ୍ ତଳ ଡ୍ରିଲିଂ ଚାଲୁଥିବା ମୁଁ ଜାଣିଛି ।'

'ହଁ ବିଜୁବାବୁ, ସେ ଆସିବାର ଉଦ୍ଦେଶ୍ୟ ହେଉଛି, ସେ ଆମର କାକୁଡ଼ି ରସ ପିଆ ଦେଖିବ ।'

'ଆରେ ମୁଁ ତ ସେଥିପାଇଁ ଆସିଛି । ଆଣ ପିଇବା । ହଇହୋ ବାବୁ କାକୁଡ଼ି ରସ ପାଇଁ ତୁମେ କାହିଁକି ଏଠାକୁ ଆସିଲ ।'

ମୁଁ କହିଲି, 'ବଜାରରେ ଏପଲ୍, ଅଙ୍ଗୁର ଭଳି ଦାମିକିଆ ଫଳ ଥିଲାବେଳେ, ସାମାନ୍ୟ କାକୁଡ଼ି ପାଇଁ କାହିଁକି ରାଜ୍ୟ ମୁଖ୍ୟଦ୍ୱୟ ଆଗ୍ରହୀ ?'

ବିଜୁବାବୁ ହସିଲେ, 'ଆମ ରାଜ୍ୟ ପାଇଁ ସାମାନ୍ୟ କାକୁଡ଼ି । ସେପରି କାଶ୍ମୀର ପାଇଁ ସାମାନ୍ୟ ଏପଲ୍ । କାକୁଡ଼ିରେ ଶୋଷ ମାରିବା ପାଇଁ ବିଶେଷ ଏଲିମେଣ୍ଟ ମାନ ରହିଛି ।'

କାକୁଡ଼ି ରସ ପିଆ ଚାଲିଲା ବେଳେ ସଦାଶିବ ତ୍ରିପାଠୀ କହିଲେ, 'ଏ ପିଲାଟିର ବୈଶିଷ୍ଟ୍ୟ ସେ ନୁହେଁ – ତା' ବଂଶର ଗାରିମା । ଏମାନଙ୍କ ପୂର୍ବପୁରୁଷମାନେ ନନ୍ଦପୁର ରାଜଧାନୀର ରାଜ ପୁରୋହିତ ତଥା ରାଜାଙ୍କ ଅଧିଷ୍ଠାତ୍ରୀ ଦେବୀ ଦୁର୍ଗାଙ୍କର ପୂଜକ ଥିଲେ । ନନ୍ଦପୁରରୁ ଜୟପୁର ରାଜଧାନୀ ପରିବର୍ତ୍ତନ ପରେ ସେମାନେ ତାଙ୍କର ସକଳ ଭୂସମ୍ପତ୍ତି ତ୍ୟାଗ କରି ଜୟପୁର ଚାଲିଆସିଲେ ସେଇ ଦୁର୍ଗାଙ୍କ ଆରାଧନା ପାଇଁ । ୟା'ର ବାପା ମୋର ସମ୍ପର୍କୀୟ ଥିଲେ ମଧ ନୀତିବାନ୍ । ମୋର ମନ୍ତ୍ରିତ୍ୱ କାଳରେ ନିଜ ପାଇଁ କେବେ ବି ମୋତେ ଦେଖା କରିନାହାନ୍ତି । ସେ ଜଣେ ପ୍ରଧାନଶିକ୍ଷକ । ମୋର ନବରଙ୍ଗପୁରରେ ଶିକ୍ଷକତା ସମୟରେ ସେ ମୋର ମଧ ପ୍ରଧାନ ଶିକ୍ଷକ ଥିଲେ । ମୁଁ ସ୍ୱାଧୀନତା ଆନ୍ଦୋଳନବେଳେ କଂଗ୍ରେସରେ ଜଏନ୍ କଲାବେଳେ ତାଙ୍କରିଠାରୁ ହିଁ ପ୍ରେରଣା ପାଇ ଚାକିରି ଛାଡ଼ିଥିଲି । ତାଙ୍କରି ଉଦ୍ୟମ ବଳରେ କୋରାପୁଟ ଜିଲ୍ଲାର ନବରଙ୍ଗପୁର, କୋଟପାଡ଼, ବୋରିଗୁମ୍ମା, ଜୟପୁର ମ୍ୟୁନିସିପାଲିଟି ଉଚ୍ଚବିଦ୍ୟାଳୟର ଆରମ୍ଭ ହୋଇପାରିଛି । ମୋର ଯୁବକାବସ୍ଥାର ଅନେକ ସମୟ ଜୟପୁରରେ ଅତିବାହିତ ହୋଇଛି । ମୁଁ ଲକ୍ଷ୍ୟ କରିଛି, ନନ୍ଦବଂଶର କେତେକଙ୍କଠାରେ ଦୈବୀକୃପା ରହିଛି ।...'

ସଦାଶିବ ଆଉ କ'ଣ କହିଥାନ୍ତେ ! କିନ୍ତୁ ବିଜୁବାବୁ ତା'ର ପୂର୍ଣ୍ଣଚ୍ଛେଦ ପକାଇ କହିଲେ, 'ହଉ ଏବେ ଚାଲ ଯିବା ଆସେମ୍ଳିକୁ ।'

ମୋତେ ଦେଖି କହିଲେ, 'ଦରକାର ପଡ଼ିଲେ ମୋତେ ଦେଖା କରିବ ।'

ଦୁହେଁ କୋଠରୀରୁ ତୁରନ୍ତ ନିଷ୍କାସିତ ହେଲେ ।

ମୁଁ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀଙ୍କ ସହିତ ତାଙ୍କ କୋଠରୀରେ ମାତ୍ର ଚାରିପାଞ୍ଚ ମାସ ଅବସ୍ଥାନ କରିଥିଲି । ଖବର କାଗଜରେ ଓ ବାହାରେ ରାଜ୍ୟର ନାନା ଚାଞ୍ଚଲ୍ୟକର ଖବର ଶୁଣା ଯାଉଥିଲେ ମଧ ମୁଖ୍ୟମନ୍ତ୍ରୀ ବାସଭବନଟିରେ ଶାନ୍ତି ହିଁ ବିରାଜୁଥିଲା । ମୁଖ୍ୟମନ୍ତ୍ରୀ ପ୍ରାୟତଃ ତାଙ୍କ ନିଜ ବେଡ଼ରୁମ୍‌ରେ ହିଁ ନିବଦ୍ଧ ରହୁଥିଲେ । ସେ ଏପରି ଗମ୍ଭୀର ଓ ଉଦାସୀନ ଥିଲେ ଯେ ମୁଁ ମଧ (ଏକମାତ୍ର ପାରିବାରିକ ସଦସ୍ୟ) ତାଙ୍କୁ ଦେଖା କରିବାକୁ ଡରୁଥିଲି ।

ମୁଖ୍ୟମନ୍ତ୍ରୀଙ୍କ କୋଠାର ଦୈନନ୍ଦିନ କାର୍ଯ୍ୟ ପ୍ରବାହ ନିମ୍ନପ୍ରକାରେ ଥିଲା । ମୁଖ୍ୟମନ୍ତ୍ରୀଙ୍କ ପାଖରେ ସେତେବେଳେ ତାଙ୍କରି ପତ୍ନୀ ବା ପୁତ୍ର କେହି ରହୁ ନ ଥିଲେ । ସେ ଏକୁଟିଆ । ମାସେ ଦୁଇ ମାସରେ ତାଙ୍କରି ଦ୍ୱିତୀୟ ପୁତ୍ର ପ୍ରଫୁଲ୍ଲ ଆସନ୍ତି । ସେ ଦିନେ ଦୁଇଦିନ ରହି ଚାଲିଯାଆନ୍ତି । ବଡ଼ ପୁଅ ଶରତ ଜଣେ ପାଗଳ । ସେ ନବରଙ୍ଗପୁରରେ ଗୃହବନ୍ଦୀ । ସାନ ପୁଅ ସୁବାସଙ୍କୁ ମୁଁ କେବେ ତାଙ୍କ ଘରେ ଦେଖିନାହିଁ ।

ଅନ୍ଧାରିଆ ସକାଳରୁ ଚାକର ଗୁଣନିଧି ସବୁ ବଖରା ତଥା ବଗିଚାକୁ ଅଣ୍ଡାଳି ନିଏ । ତା'ର କିଛି ସମୟ ପରେ ଆସନ୍ତି ଏ.ଏନ୍. ତିୱାରୀ (ଏବେ ସେ ସ୍ୱର୍ଗରେ) । ସେ ତତ୍କାଳୀନ ଇଷ୍ଟେଟ ଅଫିସର । ଓ.ଏ.ଏସ୍.ରୁ ଆଇ.ଏ.ଏସ୍. ହେବାରେ ସେ ଅନେକ ଅଗ୍ରଜଙ୍କୁ ଭୂଶାୟୀ କରିଛନ୍ତି । ଖୁବ୍ ପାରଙ୍ଗମ ଅଫିସର । ସ୍ମାର୍ଟ ଦିଶିବା ପାଇଁ ଗରମ ଦିନରେ ମଧ କୋଟ୍ ଓ ନେକଟାଇ ପରିଧାନ କରନ୍ତି । ଖଡ଼ିଆଳ ଅଞ୍ଚଳର ଖାନଦାନୀ ପରିବାରର ଲୋକ ସିଏ । ସକାଳୁ ଆସି ମୋ ଖଟ ନିକଟରେ ହାଜର ହୁଅନ୍ତି । ମୁଁ ଡେରିରେ ଶୁଏ । ତେଣୁ ସକାଳେ ଉଠିବାରେ ମୋର ବିଳମ୍ବ ହୁଏ । ତିୱାରୀ ମହାଶୟ ହିଁ ମୋତେ ସକାଳୁ ଉଠାନ୍ତି । ଉଠାଇବାର କାରଣ

ହେଉଛି, ମୋର ଖଟରେ ବ୍ୟବହୃତ ମଶାରୀ ବାଡ଼ିଟିକୁ ଉଠାଇ ନେବା । ମଶାରି ବାଡ଼ି ଦୁଇଟିକୁ ନେଇ ସେ ମୁଖ୍ୟମନ୍ତ୍ରୀଙ୍କ ଶୟନକକ୍ଷ ସମ୍ମୁଖରେ ଉଭା ହୁଅନ୍ତି ।

ତା'ର କିଛି ସମୟପରେ ମୁଖ୍ୟମନ୍ତ୍ରୀଙ୍କ କେତେକ ବନ୍ଧୁ ଦେଖାଯାଆନ୍ତି । ମୁଖ୍ୟମନ୍ତ୍ରୀ ଟିକିଏ ଡେରିରେ ଉଠନ୍ତି । ସେ ଉଠିଲାପରେ ତିୱାରୀ ସାହେବ ତାଙ୍କ କକ୍ଷରେ ପ୍ରଥମେ ପ୍ରବେଶ କରି ଗତକାଲିର ମଶାରୀବାଡ଼ିକୁ କାଢ଼ି ତା' ସ୍ଥାନରେ ମୋ ଖଟରୁ ନେଇଥିବା ମଶାରୀବାଡ଼ିକୁ ଖୁବ୍ ଜୋର୍‌ରେ ଠେସି ଦିଅନ୍ତି । କାରଣ ମୁଖ୍ୟମନ୍ତ୍ରୀ ଶେଯର ମଶାରି ବାଡ଼ିକୁ ଆଉଜି ଫାଇଲ କାମ କରନ୍ତି ।

କିଛି ସମୟ ପରେ ଆଗନ୍ତୁକ ବନ୍ଧୁଙ୍କ ସହିତ ଆଲୋଚନା ଚାଲେ । ସେଥିରେ ମୁଖ୍ୟ ଭାଗୀଦାର ଥାଆନ୍ତି ଜୟପୁରର ଜଷ୍ଟିସ୍ ବାଳକୃଷ୍ଣ ପାତ୍ର । ସେ ଆଇନ୍ ସଚିବ ପଦବୀରୁ ଅବସର ଗ୍ରହଣ କରିଛନ୍ତି । ଆଉ ଯେଉଁମାନେ ତାଙ୍କ ସହିତ ସାକ୍ଷାତ୍ କରୁଥିଲେ ସେମାନେ କୋରାପୁଟର ଏମ୍.ଏଲ୍.ଏ., ନବରଙ୍ଗପୁରର ହବିବୁଲ୍ଲା ଖାଁ, ଡମ୍ବରୁ ମାଝୀ, ଗଙ୍ଗାଧର ମାଢ଼ି ଆଦି । ଥରେ ଦୁଇଥର ନନ୍ଦନୀ ଶତପଥୀ ଓ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଦେଖିଛି । ସେମାନେ ବୋଧହୁଏ ରାଜ୍ୟସଭା ସଦସ୍ୟ ପାଇଁ ଆଶାୟୀ ଥିଲେ ।

ମୁଁ ଲକ୍ଷ୍ୟ କରେ ଯେ ସଦାଶିବ ତ୍ରିପାଠୀଙ୍କ ଦୁର୍ବଳତା ଥିଲା ତାଙ୍କରି ନାତି ମଧୁସୂଦନ ତ୍ରିପାଠୀଙ୍କ ପାଇଁ । ସେ ସେତେବେଳେ ସୈନିକ ସ୍କୁଲର ଛାତ୍ର । ତାଙ୍କରି ବଡ଼ ପୁଅ ପାଗଳ ଶରତଙ୍କର ବଡ଼ ପୁଅ । ସେ ମୋର ମଧ୍ୟ ଭଣଜା ହେବ । ତା' ମା' ମୋର ଲେଖା ଯୋଖା ଭଉଣୀ । ମଧୁ ଭଣଜା ସହ ମୁଁ ଥରେ ଜୟପୁର ଯାଇଥିଲି ସଦାଶିବଙ୍କ କାର୍‌ରେ । ମୋ ସହିତ ଥିଲେ କଂଗ୍ରେସ କର୍ମୀ କୁମୁଲିର ବୃନ୍ଦାବନ ତ୍ରିପାଠୀ । ଆମେ ଦୁଇଜଣ ଆମ୍ବାସଡ଼ର କାର୍‌ର ଆଗ ସିଟ୍‌ରେ ଜାକିଜୁକି ହୋଇ ବସିଲୁ । ମୋ' ଭଣଜା ମଧୁ ମହାଶୟ ପଛ ସିଟ୍‌ରେ ଶୋଇ ଥାଆନ୍ତି ସମଗ୍ର ଛ'ଶହ କିଲୋମିଟର ପର୍ଯ୍ୟନ୍ତ । ସଦାଶିବ ବାବୁ ଆପଣା ନାତିର ଔଦ୍ଧତ୍ୟ ବିଷୟରେ ଜ୍ଞାତ । କିନ୍ତୁ ପାରିବାରିକ ସମସ୍ୟା ଯୋଗୁଁ ସେ ନାଚାର ।

ସଦାଶିବ ତ୍ରିପାଠୀଙ୍କ ଘରେ ସେତେବେଳେ ପ୍ରତି ସପ୍ତାହରେ ପୁରୀରୁ ଜଗନ୍ନାଥଙ୍କ ମହାପ୍ରସାଦ ଆସେ । ନାନା ରକମର ରସାଳ ଭୋଗ । ଏଥିରେ ଯୋଗ ଦିଅନ୍ତି ରାଜସ୍ୱ ସଚିବ ବିମଳ ମିଶ୍ର, ଏ.ଏନ୍. ତିୱାରୀ, ପ୍ରାଇଭେଟ୍ ସେକ୍ରେଟାରୀ ରାଘବନ୍, ଜଷ୍ଟିସ୍ ବାଳକୃଷ୍ଣ ପାତ୍ର ଆଦି ।

ଭୋଜନ ବେଳେ ଆଲୋଚନା ଚାଲେ, କିପରି ଓଡ଼ିଶାର ସମସ୍ତ ବ୍ରାହ୍ମଣ ପରିବାର ଜଗନ୍ନାଥ ଧାମ ପୁରୀରୁ ଆନୀତ । ତା' ପୂର୍ବରୁ ଏମାନେ ଯାଜପୁର ନିବାସୀ ଥିଲେ । ପରେ ପୁରୀ, ତା'ପରେ ଗଞ୍ଜାମ ଓ ତପ୍‌ରେ କୋରାପୁଟ ଓ କଳାହାଣ୍ଡି ପରି ଗଡ଼ଜାତକୁ ଗଲେ ।

କିଛି ମାସ ପରେ ମୋର ଏବଂ ଏ.ଏନ୍. ତିୱାରୀଙ୍କ ସହିତ କିଛିଟା ମନୋମାଳିନ୍ୟ ଘଟିଲା । ଏହା ପ୍ରତ୍ୟକ୍ଷ ନୁହେଁ ବରଂ ପରୋକ୍ଷ । ମୋତେ ପ୍ରତିଦିନ ସକାଳୁ ଉଠାଇବା ତାଙ୍କୁ ବିରକ୍ତିଜନକ ବୋଧ ଦେଲା । ଅପରନ୍ତୁ ମୁଁ ଜଣେ ଆସିଷ୍ଟାଣ୍ଟ ଇଞ୍ଜିନିୟର, ସେ ସେକ୍ରେଟାରୀ ପାହ୍ୟାର ।

ଦିନେ ସେ ପ୍ରଶ୍ନ କଲେ, 'ତୁମେ ଜଣେ ଏ.ଇ. । ଏମିତି ସି.ଏମ୍. ଘରେ ରହିବା କ'ଣ ସୁନ୍ଦର ? ତୁମେ ତ ସବୁବେଳେ ଏଠାରେ ରହିପାରିବନି । ବରଂ ତୁମେ ଘରଟିଏ ପାଇଁ ଆବେଦନ କର । ମୁଁ ଅଛି, ଯେଉଁ ୟୁନିଟ୍‌ରେ ଯେଉଁ ଟାଇପ୍ କ୍ୱାଟର ଦରକାର ଏ ସବୁ କରିବି ।'

ମୁଁ ତୁନି ରହିଲି ।

ତା' ଆରଦିନ ସେ କହିଲେ, 'କେବଳ କ୍ୱାର୍ଟର ନୁହେଁ । ଏବେ ପ୍ରତି ୟୁନିଟ୍‌ରେ ଖାଲି ଜାଗା ଅଛି । ସରକାରୀ ମୂଲ୍ୟ ଖୁବ୍ କମ୍ । ସେଥିରୁ ଗୋଟିଏ ପାଇଁ ଆପ୍ଲାଇ କର । ଭବିଷ୍ୟତ ପାଇଁ କାମରେ ଲାଗିବ । ମୁଁ ଏତେ କହୁଛି, ତୁମ ପିଉସା ସି.ଏମ୍. ହୋଇ ମଧ୍ୟ ରାଜି ହେଉନାହାନ୍ତି । ଏହା ମୂର୍ଖାମୀ ନୁହେଁ ତ ଆଉ କ'ଣ ?'

ମୁଁ ସେଦିନ ପିଉସାଙ୍କ ସହିତ ଭୁବନେଶ୍ୱରରେ ଜମି ଗ୍ରହଣ ପାଇଁ କଥା ହେଲି । ସେ କହିଲେ, ଶାସ୍ତ୍ର କହୁଛି ପରଦେଶୀ ହେବା ଦୁଃଖଦାୟକ । ମୁଁ ଏଠାରେ ଜମି କିଣିବି । କୋଠା କରିବି । ନିଜେ ତ ରହି ପାରିବିନି । ଭଡ଼ାରେ ଘର ଦେବି । ଭଡ଼ାଟିଆ ଭଡ଼ା ଦେଉଛି କି ନାହିଁ ତା' ପାଇଁ ଚିନ୍ତା କରିବି । ଛ' ଶହ କିଲୋମିଟର ନବରଙ୍ଗପୁରରେ ରହି ଭଡ଼ା ପାଇଁ ଛଟପଟ ହେବି । କିମ୍ବା ଶେଷର ସେ ଜମିକୁ ବା ଘରକୁ ବିକିବା ପାଇଁ ୟା'ଦ୍ୱାର ତା' ଦ୍ୱାର ହେବି । ଲୋଡ଼ା ନାହିଁ ସେ ଯାତନା । ମୁଁ କଦାପି ଭୁବନେଶ୍ୱରରେ ଘର କରିବି ନାହିଁ ।

ମୁଁ ମଧ୍ୟ ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହେଲି । ତିୱାରୀ ସାହେବଙ୍କୁ ମୋ' ମତ ଜଣାଇଲି ଏବଂ କହିଲି ମୁଁ ଏକୁଟିଆ । ମୋତେ ଏକ ଛୋଟଘର ଦିଆଯାଉ । ଶେଷରେ ୟୁନିଟ୍ ତିନିର ଟାଇପ୍ ଡି-୧୬/୧ (ଦୁଇ ବଖରିଆ) ଘର ମୋ ପାଇଁ ସ୍ଥିରୀକୃତ

ହେଲା ଏବଂ ମୁଁ ସେଠାକୁ ୧୯୬୬ ଏପ୍ରିଲ୍ ମାସରେ ସ୍ଥାନାନ୍ତରିତ ହେଲି ।

ଏଠି ମୁଁ କହିବା ଆବଶ୍ୟକ ଯେ ମୁଖ୍ୟମନ୍ତ୍ରୀ ହୋଇ ମଧ ସେ କାହିଁକି ଭୂମି ଗ୍ରହଣ କଲେ ନାହିଁ ? ଅନେକେ କରିଛନ୍ତି ଏବଂ କେମିତି ହୋଇଛନ୍ତି । କିନ୍ତୁ ତଦ୍ୱାରା ମାତୃଭୂମି ତ୍ୟାଗ କରିଛନ୍ତି । ସଦାଶିବ ଏକମାତ୍ର ବ୍ୟକ୍ତି ତାର ବ୍ୟତିକ୍ରମ । କିନ୍ତୁ ମୋତେ ଆତ୍ମସନ୍ତୋଷ ଲାଭ ହୁଅନ୍ତା କି ? ସଦାଶିବଙ୍କ ପଦାଙ୍କ ଅନୁସରଣ କରି ମୁଁ କୋରାପୁଟକୁ ମାତା ରୂପେ ପୁଟାକି ଧରିଲି । ମଣିଷର ସମସ୍ତ ଐଶ୍ୱର୍ଯ୍ୟ ତା'ର ଲୋକ ଓ ଲୋକସଂସ୍କୃତିକୁ ସଜାଗ କରିବା ଦିଗରେ ଧାବମାନ ହେବା ଉଚିତ ।

ସେତେବେଳକୁ ଦୀର୍ଘ ମନ୍ତ୍ରିତ୍ୱ ପ୍ରାପ୍ତି ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀର ଆସନ ଲାଭ କରିବାରେ ସାମାନ୍ୟ ଶିକ୍ଷକ ସ୍ତରରୁ ଆନୀତ ଜଣେ କର୍ମନିଷ୍ଠ ବ୍ୟକ୍ତି ବିରଳ ଥିଲା । ମୁଖ୍ୟମନ୍ତ୍ରୀତ୍ୱ ପ୍ରାପ୍ତି ପରେ ସେ ବହୁ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି ଏବଂ ତାର ସଫଳ ମୁକାବିଲା କରିଛନ୍ତି । ରାଜନୈତିକ ସ୍ତରରେ ଦୁର୍ବଳତା ଯୋଗୁଁ ଏସେମ୍ବ୍ଲିରେ ନା ନା କଟୁକ୍ତିର ସମ୍ମୁଖୀନ ହୋଇଛନ୍ତି । କିନ୍ତୁ ନିଜର ଆନ୍ତରିକତା ଯୋଗୁଁ ତାକୁ ବ୍ୟାହତ କରି ପାରିଛନ୍ତି । ତାହା କଳାହାଣ୍ଡି ମରୁଡ଼ି ପରିସ୍ଥିତି ସଂପର୍କୀୟ ଆଲୋଚନାରେ ପ୍ରତିଫଳିତ ହୋଇଛି, ଆପଣା ବ୍ୟକ୍ତିତ୍ୱର ମହାର୍ଘ୍ୟ ଓ ପ୍ରତିକୂଳ ପରିସ୍ଥିତିର ମୁକାବିଲା ପାଇଁ ତାଙ୍କର ଆହ୍ୱାନ ଆମକୁ ପ୍ରେରଣା ଦେଇଥିଲା ।

> ଛ' ଶହ କିଲୋମିଟର ନବରଙ୍ଗପୁରରେ ରହି ଭଡ଼ା ପାଇଁ ଛଟପଟ ହେବି । କିମ୍ବା ଶେଷର ସେ ଜମିକୁ ବା ଘରକୁ ବିକିବା ପାଇଁ ୟା'ଦ୍ୱାର ତା' ଦ୍ୱାର ହେବି । ଲୋଡ଼ା ନାହିଁ ସେ ଯାତନା । ମୁଁ କଦାପି ଭୁବନେଶ୍ୱରରେ ଘର କରିବି ନାହିଁ ।

ଜୟନଗର
ଜୟପୁର

---

## ଅତୀତର ଫଟୋଚିତ୍ର



ବ୍ରହ୍ମପୁରସ୍ଥିତ ମେଡ଼ିକାଲ କଲେଜର ନୂତନ ଗୃହକୁ ଉଦ୍‌ଘାଟନ କରୁଛନ୍ତି
ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ

# ମୋ' ମାଟିର ଶ୍ରେଷ୍ଠ ନାୟକ

ସୁବାସ ହୋତା

'ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧାରିବା ପାଇଁ କଲେ ତନୁକ୍ଷୟ,
ମାନବ ଜୀବନ ହୁଅଇ ସଫଳ
ଏ ମହାଦୀକ୍ଷାକି ବୁଝିବ ଉତ୍କଳ ?'

ଏ କଥା ମୋ ମନରେ ବହୁବାର ଆନ୍ଦୋଳିତ ହେଉଥିଲା । ମୋ' ମାଟିର ଶ୍ରେଷ୍ଠ ନାୟକର କାହାଣୀ ଯଦିଓ ଓଡ଼ିଶାର ଇତିହାସ, ତଥାପି ଲୁକ୍କାୟିତ । ଜନ ଜୀବନରେ ଏହି ପଦଟି ପ୍ରେରଣାଦାୟକ ।

ଡଃ ସଦାଶିବ ତ୍ରିପାଠୀଙ୍କୁ ମୋ' ଜୀବନରେ ବହୁବାର ମିଶିବାର ସୁଯୋଗ ପାଇଛି । ମୋର ବାପା ଅନନ୍ତ ହୋତାଙ୍କ ସହ ସେ ଖୁବ୍ ସମ୍ପର୍କୀୟ । ଏ ମାଟିର ଜଣେ ବ୍ୟକ୍ତି, ସେ ପୁଣି ମୁଖ୍ୟମନ୍ତ୍ରୀ । ତାଙ୍କୁ ଦେଖିବାକୁ ଯେପରି ମୋର ବ୍ୟାକୁଳତା ଓ ଶୁଣିବାକୁ ସେଭଳି ଉତ୍କଣ୍ଠା । କଲେଜ ଜୀବନରେ ତାଙ୍କ ସହ ମିଶିବାକୁ ବହୁଚେଷ୍ଟା କରିଛି । ଏସବୁ ଇତିହାସର ମାଇଲଖୁଣ୍ଟ ପାଲଟି ଗଲାଣି ।

ସଦାଶିବ ତ୍ରିପାଠୀଙ୍କ କେତେକ ଉଦାର କଥା ମୋର ମନେପଡ଼େ । ଯେତେବେଳେ ସେ ମୁଖ୍ୟମନ୍ତ୍ରୀ ହୋଇଥାନ୍ତି ଓଡ଼ିଶା ସରକାରଙ୍କ ତରଫରୁ ତାଙ୍କ ଘରେ ଇଲେକ୍ଟ୍ରିଫିକେସନ୍ ପାଇଁ ଖବର ଆସିଲା । ସେ ତୁରନ୍ତ ନୋଟ ଦେଲେ ପ୍ରଥମେ ଶ୍ରୀଜଗନ୍ନାଥ ମନ୍ଦିର ଇଲେକ୍ଟ୍ରିଫିକେସନ୍ ହେଲାପରେ ମୁଖ୍ୟମନ୍ତ୍ରୀଙ୍କ ବାସଭବନ କର । ସରକାରୀ ଅର୍ଡ଼ର ହେଲା– ନବରଙ୍ଗପୁର ଜଗନ୍ନାଥ ମନ୍ଦିର ପରେ ତାଙ୍କ ବାସଭବନରେ ଆଲୁଅ ଜଳିଲା ।

ଦକ୍ଷିଣ ଓଡ଼ିଶାର ଯୁବକଙ୍କ ପାଇଁ ତାଙ୍କ ଦାନ ଅତୁଳନୀୟ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଓ ଏମ୍.କେ.ସି.ଜି. ମେଡ଼ିକାଲ କଲେଜର ସେ ଥିଲେ ପ୍ରତିଷ୍ଠାତା । ଡୁଡୁମା ଜଳ ବିଦ୍ୟୁତ୍ ପ୍ରକଳ୍ପ, ଦଣ୍ଡକାରଣ୍ୟ ଯୋଜନା, ସୁନାବେଡ଼ା ମିଗ୍ ବିମାନ କାରଖାନା ସେ ରାଜସ୍ୱ ମନ୍ତ୍ରୀ ଥିବା ସମୟରେ ପ୍ରତିଷ୍ଠିତ ।

ସବୁଠାରୁ ତାଙ୍କ ଦାନ ଥିଲା ଭୂସଂସ୍କାର ଓ ଜମିଦାରୀ ପ୍ରଥାର ଉଚ୍ଛେଦ । ସେ ଥିଲେ ବହୁ ଜମିର ମାଲିକ ଏଣୁ ତାଙ୍କୁ କାଳେ ନିନ୍ଦା ଅପବାଦ ଆସିବ ଏଥିପାଇଁ ସେ ଜମିଦାରୀ ପ୍ରଥା ଉଚ୍ଛେଦ ପୂର୍ବରୁ ବହୁ ଜମିକୁ ବାଣ୍ଟି ଦେଇଥିଲେ । ପ୍ରାୟ ୫୦୦ ଏକର ଜମିକୁ ରୟତ ପ୍ରଜାଙ୍କୁ ବାଣ୍ଟି ଭୁବନେଶ୍ୱର ଯାଇ ସେ ନୋଟସିଟ୍‌ରେ ଦସ୍ତଖତ କରିଥିଲେ ।

ଜୟପୁରଠାରେ ଉଡ଼ାଜାହାଜ ଓହ୍ଲାଇବାର ବ୍ୟବସ୍ଥା ନଥାଏ । ବର୍ତ୍ତମାନ ଛତିଶଗଡ଼ର ଜଗଦଲପୁରଠାରେ ସେ ଓହ୍ଲାଇ ନବରଙ୍ଗପୁର ଯାଆନ୍ତି ଆମ ଗାଁ କୋଟପାଡ଼ ଦେଇ । ଏଣୁ ଆମ ଗାଁର ସମସ୍ତଙ୍କ ସହ ତାଙ୍କର ସହ ଗଭୀର ସଂପର୍କ । ପାରିବାରିକ ବନ୍ଧନ ଭଳି ।

ସ୍ୱାଧୀନତାର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଇତିହାସ । ଗୋଟିଏ ପଟେ ଗୋରା ସରକାରର ହୃଦସ୍ପନ୍ଦନ ବ୍ୟକ୍ତିତ୍ୱ, ଅନ୍ୟପଟେ ପ୍ରଶାସନର ମୁଖ୍ୟ । ନୂତନ ରାଜଧାନୀରେ ଜମି ଚିହ୍ନଟର ମୁଖ୍ୟ ରାଜସ୍ୱ ମନ୍ତ୍ରୀ । ସେ ଚାହିଁଥିଲେ ଆଜି ସର୍ବଶ୍ରେଷ୍ଠ ଜମି ମାଲିକ ସାଜି ରାଜଧାନୀର ସାଜିଥାନ୍ତେ, ମାତ୍ର ଯିଏ ଆଜି ନବରଙ୍ଗପୁର ଯାଇଛି ଦେଖିଛି ତାଙ୍କ ପରିବାର ସାଧାରଣ ଚଳଣି । ସଂଗ୍ରାମୀ ସାନୁ ମାଝୀ, ପୂର୍ବତନ ମନ୍ତ୍ରୀ ରବିସିଂ ମାଝୀ, ପୂର୍ବତନ ବିଧାୟକ ଜଗନ୍ନାଥ ତ୍ରିପାଠୀ ବା ଶହୀଦ ଲକ୍ଷ୍ମଣ ନାଏକଙ୍କ ଦାୟାଦମାନେ ଆଜି ବି ସ୍ୱରାଜ୍ୟର ସ୍ୱାଦ ସତେ ଯେପରି ପାଇ ପାରି ନାହାନ୍ତି । ତଥାପି ମଣିଷପଣିଆ ନେଇ ସେମାନେ ବଞ୍ଚିଛନ୍ତି ।

ସମଗ୍ର ଓଡ଼ିଶାର ବାଉଁଶ ପାଇଁ ଯେତେବେଳେ ଟେଣ୍ଡର୍ ଦିଆଯାଇଥିଲା, ସେ ଜଙ୍ଗଲ ମନ୍ତ୍ରୀ ଥିବା ସମୟରେ ତାହାକୁ ପ୍ରତ୍ୟାଖ୍ୟାନ କରିଥିଲେ । ସେ କହିଥିଲେ ଯଦି ବାଉଁଶ ଟେଣ୍ଡର୍ ଦିଆଯିବ, ତେବେ ହିନ୍ଦୁ ଶବ କେଉଁ କାଠରେ ଶ୍ମଶାନକୁ ଯିବ ? ଅନ୍ୟାୟକୁ ସମର୍ଥନ କଲେ ନାହିଁ ବୋଲି ମୁଖ୍ୟମନ୍ତ୍ରୀ ପଦରୁ ସେ ହଟିବାକୁ ପଡ଼ିଥିଲା । ସମଗ୍ର ଜୀବନରେ ଆଦର୍ଶବାଦୀକୁ ବଞ୍ଚାଇ ରଖିବାକୁ ସେ ଉଦ୍ୟମ କରି ଆସିଥିଲେ ।

ମୋର ତାଙ୍କ ସହ ଶେଷ ସାକ୍ଷାତ ହୋଇଥିଲା କଟକ ବଡ଼ ଡାକ୍ତରଖାନାରେ । ବିଧାୟକ ସ୍ୱର୍ଗତଃ ଗଙ୍ଗାଧର ମାଢ଼ୀଙ୍କ ସହ ଶେଷ ସାକ୍ଷାତ ପାଇଁ ଯାଇଥିଲି । ସେ ଚିହ୍ନି ମୋର ବାପାଙ୍କ ଉପରେ ଟିପ୍ପଣୀ ଦେଇଥିଲେ । ମୁଁ ଭୀଷ୍ମଙ୍କ ଶରଶଯ୍ୟାଙ୍କୁ ମନେ ମନେ ଆକଳନ କରୁଥିଲି ଜଣେ ମହାନ ଯୋଦ୍ଧା ଆଜି ଧରାଶାୟୀ, ଜାତିର ସେବାରେ ସେ ଆଜି ନିଃସହାୟ ।

୧୯୮୦ ସେପ୍ଟେମ୍ବର ୯ରେ ସେ ବିଦାୟ ନେଲେ ସବୁଦିନ ପାଇଁ କୋରାପୁଟିଆର ନାଁ, ଭାରତବର୍ଷର ଗଣତନ୍ତ୍ର ଓ ପ୍ରଶାସନ ଇତିହାସରେ ଲେଖି ଦେଇଗଲେ ।

ଜି.ଏ.–୬୪୫, ସୁକୃତି ନିବାସ, ଶୈଳଶ୍ରୀ ବିହାର, ଭୁବନେଶ୍ୱର–୧୪

# କୋରାପୁଟ ସ୍ୱରାଜ୍ୟ ସଂଗ୍ରାମରେ ତିନି ମହାନାୟକ

ମନୋରଂଜନ ତ୍ରିପାଠୀ

**ଅ**ନ୍ଧାରି ମୂଳକ କୋରାପୁଟରେ ବ୍ରିଟିଶ ସାମ୍ରାଜ୍ୟର ଅତ୍ୟାଚାରକୁ ବନ୍ଦ କରି ମହାତ୍ମା ଗାନ୍ଧୀଙ୍କ ଡାକରାକୁ ସିଦ୍ଧି ମନ୍ତ୍ର କରି ଆଦିବାସୀ ଜନଜାତିଙ୍କ ମଧ୍ୟରେ ଆତ୍ମବଳିଦାନ କରିବାର ପ୍ରେରଣାକୁ ଯେଉଁ ତିନି ମହାରଥୀ ମୁଖ୍ୟ ପୁରୋଧା ସାଜିଥିଲେ, ସେମାନେ ହେଲେ ସ୍ୱର୍ଗତଃ ରାଧାମୋହନ ସାହୁ, ସ୍ୱର୍ଗତଃ ରାଧାକୃଷ୍ଣ ବିଶ୍ୱାସରାୟ ଓ ସ୍ୱର୍ଗତଃ ଡଃ ସଦାଶିବ ତ୍ରିପାଠୀ ।

ଜୟପୁର ମହାରାଜା ବିକ୍ରମଦେବ ବର୍ମା ଥିଲେ ଜଣେ ପ୍ରଜାବତ୍ସଳ ଓ ଦେଶପ୍ରେମୀ । ମହାରାଜା ଉତ୍କଳ ସମ୍ମିଳନୀ ପାଇଁ ବହୁ ଅର୍ଥ ଦାନ କରିଥିଲେ । ଏପରିକି ଅବିଭକ୍ତ କୋରାପୁଟ ଜିଲ୍ଲା ଆଜି ଯଦି ଉତ୍କଳରେ ସାମିଲ ହୋଇଛି, ତାହାର ପ୍ରଧାନ ପୃଷ୍ଠପୋଷକ ଥିଲେ ମହାରାଜା ବିକ୍ରମଦେବ ରାଜର୍ଷି ବର୍ମା । ନଚେତ୍ ଆଜି ସମଗ୍ର ଭୂଖଣ୍ଡ ଆନ୍ଧ୍ରପ୍ରଦେଶର ବିଜୟାନଗରମ୍‌ରେ ସାମିଲ ହୋଇଥାନ୍ତା । ରାଜର୍ଷି ବର୍ମା ଥିଲେ ଏକାଧାରରେ ଜଣେ ସ୍ୱାଧୀନତା ସଂଗ୍ରାମୀ, ସୁବକ୍ତା, ଲେଖକ ଓ ବାଗ୍ମୀ । ତେଲୁଗୁ ଭାଷାରେ ସେ ଥିଲେ ଜଣେ ପ୍ରବୀଣ ଜ୍ଞାନୀ । ଏଣୁ ଆନ୍ଧ୍ରପ୍ରଦେଶର ବିଶାଖାପାଟଣମ୍ ଜିଲ୍ଲାରୁ ଅର୍ଥାତ୍ ତତ୍କାଳୀନ ମାନ୍ଦ୍ରାଜ ପ୍ରଦେଶରୁ ଏ ଗଡ଼ଜାତ ଅଞ୍ଚଳକୁ ସାମିଲ କରିବାରେ ସେ ଉତ୍ତରଦାୟୀ ଥିଲେ । ଜଣେ ମହାରାଜା ପ୍ରଚୁର ଅର୍ଥ, ସ୍ୱର୍ଣ୍ଣ, ଜମି ମାଲିକାନା ଓ ଶିକ୍ଷାରେ ପାରଦର୍ଶୀ ହୋଇ ମଧ୍ୟ ସେ ବ୍ରିଟିଶ ସାମ୍ରାଜ୍ୟ ପାଖରେ ମୁଣ୍ଡ ନଇଁ ନଥିଲେ । ପରବର୍ତ୍ତୀ ସମୟରେ ମହାରାଜାଙ୍କ ଅନୁଗତ ଓ ଭାରତୀୟ ଜାତୀୟ କଂଗ୍ରେସ ପ୍ରାର୍ଥୀଙ୍କ ମଧ୍ୟରେ ନିର୍ବାଚନ ଯୁଦ୍ଧ ହୋଇଥିଲା ସତ, ମାତ୍ର ତାହାଙ୍କ ପ୍ରଭାବ ଏହି ତିନି ମହାରଥୀଙ୍କ ଉପରେ ଜୟପୁର ରହଣିକାଳରେ ପଡ଼ିଥିଲା, ସେମାନେ ଏ ବିଷୟ ନେଇ ବହୁ ସଭାସମିତିରେ କହିବା ଲୋକମୁଖରୁ ମଧ୍ୟ ଶୁଣାଯାଏ ।

ସବୁଠାରୁ ଆଦ୍ୟ ଓ ବରିଷ୍ଠ ଥିଲେ ସ୍ୱର୍ଗତଃ ରାଧାମୋହନ ସାହୁ । ସ୍ୱାଧୀନତା ଆନ୍ଦୋଳନରେ ସେହି ନେତାଙ୍କୁ ସମସ୍ତେ ଭଗବାନ ସଦୃଶ ଭକ୍ତି କରୁଥିଲେ । ସେ ଥିଲେ ଶାନ୍ତ, ସରଳ ଓ ଅମାୟିକ । ବିଚକ୍ଷଣ ବୁଦ୍ଧି ଓ ସାହସ ଯୋଗୁଁ ତାଙ୍କୁ ଏ ଜିଲ୍ଲାର ସର୍ଦ୍ଦାର ପଟେଲ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ପ୍ରଥମେ ପ୍ରାଥମିକ ସ୍କୁଲରେ ଶିକ୍ଷକତା କରୁଥିଲେ । ପରବର୍ତ୍ତୀ ସମୟରେ ସେ ହୋମିଓ ଚିକିତ୍ସା ଶିକ୍ଷାକରି ଏକ ଛୋଟ କ୍ଲିନିକ୍ ଖୋଲି ଥିଲେ । ସେ ହୋମିଓପାଥିକ ଡାକ୍ତର ଭାବେ ମଧ୍ୟ ବେଶ୍ ସୁନାମ ଅର୍ଜନ କରିଥିଲେ । ଗୋପୀନାଥ ପୂଜାରୀଙ୍କ ଏହି ଜ୍ୟେଷ୍ଠ ପୁତ୍ର ୧୯୦୨ ଅକ୍ଟୋବର ୪ ତାରିଖ ଦିନ ଜୟପୁରଠାରେ ଜନ୍ମ ଗ୍ରହଣ କରିଥିଲେ । ସେ ବହୁଦିନ କୋରାପୁଟ ଓ ବ୍ରହ୍ମପୁର ଜେଲ୍‌ରେ ସ୍ୱାଧୀନତା ଆନ୍ଦୋଳନ ପାଇଁ କାରାବରଣ କରିଥଲେ । ୧୯୩୭ ମସିହାର ପ୍ରଥମ ନିର୍ବାଚନରେ ଓ ୧୯୪୫ ମସିହାର ବିଧାନସଭା ନିର୍ବାଚନରେ ସେ ନିର୍ବାଚିତ ହୋଇଥିଲେ ଓ ସଚ୍ଚୋଟ ସ୍ୱଭାବର ନେତାଭାବେ ସେ ଆଦୃତ ଥିଲେ । ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ଥିଲା । ତତ୍କାଳୀନ ସ୍ୱାଧୀନତା ସଂଗ୍ରାମୀ ନନ୍ଦ ପରିବାର ସହ ବୈବାହିକ ସମ୍ପର୍କ ସ୍ଥାପନ କରାଇବାରେ ସ୍ୱର୍ଗତଃ ସାହୁ ପରିବାର ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ରାଧାମୋହନ ସାହୁଙ୍କ ସାନ ଭାଇ ଥିଲେ ନୀଳକଣ୍ଠ ସାହୁ । ସେ ୧୧ ବର୍ଷ ସାନ ଥିଲେ । ସେ କେନ୍ଦ୍ରସ୍ତରୀୟ ନେତାଙ୍କ ସହ ତାଙ୍କ ଭଲ ସଂପର୍କ ଥିଲା । ୧୯୩୬ ଉତ୍କଳ ସମ୍ମିଳନୀର ପୂର୍ବରୁ ସେ ଏହାର ସଭ୍ୟ ଥିଲେ । ସେ କୋରାପୁଟ ଜିଲ୍ଲାର କଂଗ୍ରେସ ସଭାପତି ଥିବା ସମୟରେ ପଣ୍ଡିତ ନେହେରୁଙ୍କ ସହ ତାଙ୍କ ନିବିଡ଼ ସମ୍ପର୍କ ଥିଲା । ସେ କେନ୍ଦ୍ରସ୍ତରୀୟ / ରାଜ୍ୟସ୍ତରୀୟ ନେତାଙ୍କ ସହ ଉତ୍ତମ ସଂପର୍କ ରଖିଥିଲେ । ୨୩ ଅକ୍ଟୋବର ୧୯୧୩ରେ ଏହି ମହାନ୍ ସ୍ୱାଧୀନତା ସଂଗ୍ରାମୀ ନୀଳକଣ୍ଠ ସାହୁ ଜନ୍ମ ଗ୍ରହଣ କରିଥିଲେ ।

୧୯୬୫ ମସିହା ମେ ୫ ତାରିଖରେ ରାଧାମୋହନ ସାହୁଙ୍କ ମୃତ୍ୟୁ ହେଲା । ସ୍ୱାଧୀନତାର ପରବର୍ତ୍ତୀ ଜନପ୍ରିୟ ସାପ୍ତାହିକ

ପତ୍ରିକା, 'ଜନସଖା' ଯାହାର ପ୍ରତିଷ୍ଠାତା ଥିଲେ ବିପ୍ଳବୀ ଲକ୍ଷ୍ମୀଚନ୍ଦ୍ର ଦାସ, ସେଥିରେ ଡଃ ସଦାଶିବ ତ୍ରିପାଠୀ ଲେଖିଥିଲେ – 'ଏ କୋରାପୁଟିଆ ଜାତିର ହୃଦସ୍ପନ୍ଦନ ବନ୍ଦ ହେଲା । ଯଦି କେହି ଗରିବ ମଣିଷର ସ୍ନେହକୁ ଓ ଦରଦକୁ ଚିହ୍ନି ପାରୁଥିଲେ, ସେ ଥିଲେ ରାଧାମୋହନ ବାବୁ ।

ଦ୍ୱିତୀୟ ସେନାନାୟକ ଥିଲେ ସ୍ୱର୍ଗତଃ ରାଧାକୃଷ୍ଣ ବିଶ୍ୱାସରାୟ, ସେ ଥିଲେ ରାଧାମୋହନବାବୁଙ୍କଠାରୁ ୩ ବର୍ଷ ସାନ । ସେ ୧୯୦୫ ଅପ୍ରେଲ ୩ରେ ବର୍ତ୍ତମାନ ଆନ୍ଧ୍ରପ୍ରଦେଶର ପାର୍ବତୀପୁରଠାରେ ଦିଗାମ୍ବର ସାହୁଙ୍କ ପୁତ୍ରଭାବେ ଜନ୍ମ ଗ୍ରହଣ କରିଥିଲେ । ଜୟପୁର ତହସିଲ କାର୍ଯ୍ୟାଳୟରେ ଦିଗାମ୍ବର ବାବୁ ଆନ୍ଧ୍ରପ୍ରଦେଶରୁ ଆସି ୧୯୧୫ରେ କିରାଣି ଭାବେ ଯୋଗ ଦେଲେ । ୧୯୧୫ରୁ ୧୯୨୪ ପର୍ଯ୍ୟନ୍ତ ପାଠପଢ଼ା ସାରି ୧୯୨୫ ମସିହାରେ ବିଶ୍ୱାସରାୟ ଜୟପୁର ତହସିଲ କାର୍ଯ୍ୟାଳୟରେ କିରାଣି ଭାବେ ଯୋଗଦେଲେ ।

ସେ ସମୟରେ ମୋର ଅଜା ସ୍ୱର୍ଗତଃ ରାମଚନ୍ଦ୍ର ମିଶ୍ର ଥିଲେ ତାଙ୍କ ଘନିଷ୍ଠ ସହଯୋଗୀ । ଉଭୟେ ପରବର୍ତ୍ତୀ ସମୟରେ ମୁଖ୍ୟ କିରାଣି ଭାବେ ମଧ୍ୟ ପ୍ରତିଷ୍ଠା ଅର୍ଜନ କରିଥିଲେ । ୧୯୨୯ ମସିହାରେ ବିଶ୍ୱାସରାୟ ଚାକିରିରୁ ଇସ୍ତଫା ଦେଲେ । ପଣ୍ଡିତ ନୀଳକଣ୍ଠ ଦାସ ଓ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସହ ତାଙ୍କ ସାକ୍ଷାତ ହେଲା, କୋରାପୁଟ ଜିଲ୍ଲାରେ ସତ୍ୟାଗ୍ରହକୁ ଆରମ୍ଭ କରିବାରେ ସେଥିଲେ ପ୍ରଧାନ ସେନାନାୟକ, ବିଶ୍ୱାସରାୟଙ୍କ ବାର୍ତ୍ତା ଅବିଭକ୍ତ କୋରାପୁଟ ଜିଲ୍ଲାରେ କୋଣ ଅନୁକୋଣରେ ପହଞ୍ଚିଥିଲା । ଏଣୁ, କୋରାପୁଟିଆ ଗାନ୍ଧୀ ଭାବେ ତାଙ୍କୁ ସମସ୍ତେ ମାନୁଥିଲେ ।

୧୯୩୧ ସେପ୍ଟେମ୍ବର ୧୪ରୁ କଂଗ୍ରେସର ପଦଯାତ୍ରା କରି ପ୍ରାୟ ୧୭ ଶହ କିଲୋମିଟର ପାଦରେ ଚାଲି ଚାଲି କଂଗ୍ରେସର ୪ ଜଣିଆ ସଦସ୍ୟ ସେ କରିପାରିଥିଲେ । ତାଙ୍କ ସଭା ଓ ପଦଯାତ୍ରାରେ ଲୋକେ ଏତେ ଆକୃଷ୍ଟ ଥିଲେ ଯେ ଭାରତବର୍ଷର ସବୁଠାରୁ ସହସ୍ରାଧିକ କଂଗ୍ରେସକର୍ମୀ ଏ ଜିଲ୍ଲାରେ ଗ୍ରହଣ ହୋଇପାରିଥିଲା । ପାଠକ ଶୁଣିଲେ ଆଶ୍ଚର୍ଯ୍ୟ ହେବେ କୋରାପୁଟରେ କୋଟି କୋଟି ଟଙ୍କାର ସମ୍ପତ୍ତି ବର୍ତ୍ତମାନ ମଧ୍ୟ କଂଗ୍ରେସ ଦଳର ରହିଛି (ବିଶେଷ କରି ସ୍ଥାବର ସମ୍ପତ୍ତି) ଯାହାକି ଏହି ୪ ଜଣିଆ ସଦସ୍ୟରେ କିଣା ଯାଇଥିଲା । ଓଡ଼ିଶାର ଏକମାତ୍ର ଜିପ୍ ଗାଡ଼ି କୋରାପୁଟ ଜିଲ୍ଲା କଂଗ୍ରେସ କିଣିଥିଲା ପରବର୍ତ୍ତୀ ସମୟରେ ପ୍ରଦେଶ କଂଗ୍ରେସକୁ ଏହା ଦାନ କରାଯାଇଥିଲା । ୧୯୪୨ ପ୍ରଦେଶ କଂଗ୍ରେସର ସଭାପତି ଭାବେ ବିଶ୍ୱାସରାୟ ଅବସ୍ଥାପିତ ହେଲେ । ଭାରତଛାଡ଼ ଆନ୍ଦୋଳନ ବେଳେ ସମଗ୍ର ଓଡ଼ିଶାର ପ୍ରଦେଶ କଂଗ୍ରେସ କାର୍ଯ୍ୟ ତୁଲାଇବା କେତେ କଷ୍ଟସାଧ୍ୟ ପାଠକେ ଅନୁମାନ କରିପାରୁଥିବେ ।

୧୯୪୨ ମସିହାରେ କେଉଁମାନେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବେ, ତାହାର ଏକ ବିବରଣୀ ତିଆରି ହୋଇ ସାବରମତୀ / ୱାର୍ଦ୍ଧା ପଠାଯାଉଥିଲା ।

ମହାତ୍ମା ଗାନ୍ଧୀ ଯାହାକୁ ଠିକ୍ ଭାବୁଥିଲେ, ସେ ଏଥିରେ ଭାଗନେବାର ସୌଭାଗ୍ୟ ଅର୍ଜନ କରିପାରୁଥିଲେ । ଏହି ତାଲିକା ନୂଆପୁଟ ତାଲିମ କେନ୍ଦ୍ରରୁ ବିଶ୍ୱାସରାୟଙ୍କ ଦସ୍ତଖତରୁ ତିଆରି ହେଉଥିଲା, ଯାହାକି ୧୯୩୭ରେ ବିଶ୍ୱାସରାୟ ପ୍ରତିଷ୍ଠା କରିଥିଲେ ।

ଯେଉଁମାନଙ୍କ ତାଲିକା ସ୍ୱରାଜ୍ୟ ଆଶ୍ରମରୁ ବାଦ୍ ପଡୁଥିଲା, ସେମାନେ ସତ୍ୟାଗ୍ରହ କରିବାର ସୁଯୋଗ ପାଉନଥିଲେ । ୧୯୪୨ ଅଗଷ୍ଟ ୮ର ବମ୍ବେ ଅଧିବେଶନର ଗୁପ୍ତପତ୍ର ବିଶ୍ୱାସରାୟ ନେଇ ଆସୁଥିବା ସମୟରେ ସିକାକୁଲମ୍ (ଆନ୍ଧ୍ରପ୍ରଦେଶ)ଠାରେ ଗିରଫ ହେଲେ । କିନ୍ତୁ ଚତୁରତାର ସହିତ ବିଶ୍ୱାସରାୟ ଗାଡ଼ିରେ ପଟାଙ୍ଗିକୁ ଏହି ପତ୍ର ପଠାଇଥିଲେ । ପଟାଙ୍ଗିଠାରେ ବିପ୍ଳବୀ ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ବଡ଼ ଭାଇ ରାମଚନ୍ଦ୍ର ଦାସ ଏହା ଗ୍ରହଣ କରି ନବରଙ୍ଗପୁର ପଠାଇଥିଲେ ଯାହା ଲକ୍ଷାଧିକ ଷ୍ଟାଇକେଲ ଷ୍ଟାଇଲ ପତ୍ର ଏ ଜାତିର ମହାନ୍ ଆନ୍ଦୋଳନକୁ ତୀବ୍ର କରିଥିଲା । ପରବର୍ତ୍ତୀ ସମୟରେ ରାମଚନ୍ଦ୍ର ଦାସଙ୍କୁ ସରକାରୀ ଚାକିରିରୁ ବହିଷ୍କାର କରାଯାଇଥିଲା ।

ସ୍ୱାଧୀନତା ଆନ୍ଦୋଳନର ଇତିହାସ ଏକ ଲମ୍ବା କାହାଣୀ ଯାହାର ବର୍ଣ୍ଣନା କରିବାକୁ ମୁଁ ବର୍ତ୍ତମାନ ଠିକ୍ ମନେ କରୁ ନାହିଁ । ସ୍ୱର୍ଗତଃ ବିଶ୍ୱାସରାୟ, ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳରେ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ଭାବେ ରହି ଓଡ଼ିଶା ଗଠନରେ ପ୍ରମୁଖ ଭୂମିକା ଗଠନ କରିଥିଲେ ।

ଡଃ ହରେକୃଷ୍ଣ ମହତାବଙ୍କ ଅତି ଘନିଷ୍ଠ ଭାବେ ସେ ଆଦୃତ ଥିଲେ । ତାଙ୍କ ମନ୍ତ୍ରିମଣ୍ଡଳରେ ସେ ଥିଲେ ସଦସ୍ୟ । ଅବିଭକ୍ତ କୋରାପୁଟ ଜିଲ୍ଲାର ସେ ଥିଲେ ପ୍ରଥମ ମନ୍ତ୍ରୀ । ଜଣେ ନିଷ୍କଳଙ୍କ ଗାନ୍ଧୀବାଦୀ ଭାବେ ସେ ଥିଲେ ଜନାଦୃତ । ୧୯୮୪ ଫେବୃଆରୀ ୫ରେ ସେ ଇହଲୀଳା ତ୍ୟାଗ କଲେ । ପ୍ରବାଦ ପୁରୁଷ ସ୍ୱର୍ଗତଃ ବିଜୁ ପଟ୍ଟନାୟକ ଏକ ସିଂହ ପୁରୁଷ ଭାବେ ତାଙ୍କୁ ଚିତ୍ରଣ କରିଥିଲେ ।

ତୃତୀୟ ସେନାନାୟକ ଥିଲେ ଡଃ ସଦାଶିବ ତ୍ରିପାଠୀ । ସେ ଥିଲେ ଏକ ଅନୁଷ୍ଠାନ ଓ ବିରଳ ବ୍ୟକ୍ତିତ୍ୱ । ଜଣେ ଉଚ୍ଚ

ଜମିଦାରୀ ଓ ବୈଭବଶାଳୀ ପରିବାରରେ ଜନ୍ମ ହୋଇ ମଧ ନେହେରୁଙ୍କ ଭଳି ସେ ଥିଲେ ସାଧାରଣ ମଣିଷଙ୍କ ଆତ୍ମୀୟ ବ୍ୟକ୍ତି । **ଗଞ୍ଜାମ ଜିଲ୍ଲାର ତାରାତାରିଣୀ ପୀଠ ଦିବ୍ୟସିଂହପୁର ବ୍ରାହ୍ମଣ ଶାସନରୁ ତାଙ୍କ ଜେଜେ ଆସି ନବରଙ୍ଗପୁରରେ ବସତି ସ୍ଥାପନ କରିଥିଲେ । ମହାରାଜାଙ୍କ ତରଫେ ଓ ନିଜ ପରିଶ୍ରମରେ ସେ ପରିବାର ବହୁ ଜମି ମାଲିକାନାର ଅଧିକାରୀ ଥିଲେ ।** ନବରଙ୍ଗପୁର ପାଖ ଅଗ୍ନିପୁର ପଞ୍ଚାୟତର ୭୦୦ରୁ ଊର୍ଦ୍ଧ୍ୱ ଏକର ଜମି ତାଙ୍କର ବାପାଙ୍କ ନାମରେ ରହିଥିଲା । ସେ ଥିଲେ ପିତା ରାମନାଥ ଓ ମାତା ରାଧାମଣିଙ୍କ ଏକ ମାତ୍ର ସନ୍ତାନ । ମାତ୍ର ବିଡ଼ମ୍ବନା, ରାଧାନାଥଙ୍କ ଭାଇ ଲିଙ୍ଗରାଜ ଓ ତାଙ୍କ ଧର୍ମପତ୍ନୀ, ସୁନ୍ଦରମଣି ଥିଲେ ଅପୁତ୍ରିକ । ଏଣୁ ସେ ତାଙ୍କ ପୌଷ୍ୟପୁତ୍ର ହୋଇଥିଲେ । ବଡ଼ଭାଇ ନାରାୟଣ ତ୍ରିପାଠୀ ଥିଲେ ଜଣେ ଉଚ୍ଚମନା, ସେ ସମୟରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପ୍ରତି ଆକୃଷ୍ଟ ହୋଇ ଦୈନିକ 'ସମାଜ' ଓ ଖଦଡ଼ ଦୋକାନର ସେ ଥିଲେ ପୃଷ୍ଠପୋଷକ । ୧୯୧୦ ମସିହା ଅପ୍ରେଲ ୨୧ରେ ଜନ୍ମ ହୋଇ ସଦାଶିବ ତ୍ରିପାଠୀ ମାତ୍ର ୧୯ ବର୍ଷ ବୟସରେ ମେଟ୍ରିକ୍ୟୁଲେସନ ଓ ପି.ୟୁ./ପି.ପି. ପାସ୍ କରି ରାଜା ଚୈତନ୍ୟ ଦେବ ହାଇସ୍କୁଲରେ ଶିକ୍ଷକତା କରୁଥିଲେ ।

ସେ ସମୟରେ ତାଙ୍କ ବହୁ ଛାତ୍ର ସମାଜରେ ପ୍ରତିଷ୍ଠିତ ଜଣେ ଦୁଇଜଣଙ୍କ ଉଦାହରଣ ଦେଲେ ଯଥେଷ୍ଟ ହେବ । ଶ୍ରୀ ଖଗପତି ପ୍ରଧାନୀ ୯ଥର ପାର୍ଲିଆମେଣ୍ଟିଆନ ଓ ସ୍ୱର୍ଗତଃ ଜଗନ୍ନାଥ ତ୍ରିପାଠୀ ବହୁବାର ବିଧାୟକ ଓ ତାଙ୍କ ମନ୍ତ୍ରିମଣ୍ଡଳର ସହକର୍ମୀ । ବହୁ ପ୍ରଶାସନ ଓ ରାଜନୈତିକ ପଦରେ ତାଙ୍କ ଛାତ୍ରମାନେ ପରବର୍ତ୍ତୀ ସମୟରେ ପ୍ରତିଷ୍ଠିତ ହୋଇଥିଲେ ।

**ଜୟପୁର ରହଣି ସମୟରେ ଏହି ତିନିନଦୀର ସଂଗମ ହୋଇଥିଲା । ରାଧାକୃଷ୍ଣ, ରାଧାମୋହନ ଓ ସଦାଶିବଙ୍କ ମିଳନରୁ ମହାସଂଗ୍ରାମର ଅୟମାରମ୍ଭ ।**

୧୯୩୬ ମସିହାରୁ ୧୯୭୧ ମସିହା ପର୍ଯ୍ୟନ୍ତ ସେ ଥିଲେ ବିଧାୟକ ଓ ପରେ ମୁଖ୍ୟମନ୍ତ୍ରୀ । ୧୯୭୧ ମସିହାରେ କଂଗ୍ରେସ ଦୁଇଭାଗ ହେଲା । ମୋର ବାପା ଜଗନ୍ନାଥ ତ୍ରିପାଠୀ ଜାତୀୟ ଇନ୍ଦିରା କଂଗ୍ରେସର ପ୍ରାର୍ଥୀ ହେଲେ ଓ ସଦାଶିବ ତ୍ରିପାଠୀ ସଂଗଠନ କଂଗ୍ରେସର ପ୍ରାର୍ଥୀ । ଗୋଟିଏ ପରିବାର, ଗୋଟିଏ ଦଳ ଓ ତ୍ରିପାଠୀ ଉଭୟଙ୍କ ରାଜନୀତିରୁ ସ୍ୱତନ୍ତ୍ର ଦଳ ଏ ମାଟିରେ ଜନ୍ମ ନେଲା ।

ତାଙ୍କ ସମଗ୍ର ମନ୍ତ୍ରୀ ସମୟ ଥିଲା ରାଜସ୍ୱ ବିଭାଗ । ସେ ରାଜସ୍ୱ ବିଭାଗକୁ ପୁରୁଷ ମନ୍ତ୍ରୀ ପଦ ଭାବେ ବହୁବାର କହିବାର ନଜର ଅଛି । **ଭାରତର ପ୍ରଥମ ବଡ଼ଲାଟ ଚକ୍ରବର୍ତ୍ତୀ ରାଜ ଗୋପାଳଚାରୀ ତାଙ୍କୁ ରାଜସ୍ୱ ସନ୍ତାନଭାବେ ବର୍ଣ୍ଣନା କରିଥିଲେ ।** ପଣ୍ଡିତ ନେହେରୁଙ୍କ ଏହି ସହକର୍ମୀ, ଇନ୍ଦିରା ଗାନ୍ଧୀଙ୍କ ସହ ମତାନ୍ତର ହୋଇଥିଲା, ଯାହାଫଳରେ ସେ ଆନ୍ଧ୍ରପ୍ରଦେଶର ଗଭର୍ଣ୍ଣର ପଦକୁ ମଧ ପ୍ରତ୍ୟାଖ୍ୟାନ କରିଥିଲେ । ଆଜିର ଭୁବନେଶ୍ୱରର ଯେଉଁ ଐତିହ୍ୟ ଆମେ ଦେଖୁଛୁଁ ତାହାର ନିର୍ମାତା ଥିଲେ ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର ଓ ସଦାଶିବ ତ୍ରିପାଠୀ । ମାତ୍ର ରାଜସ୍ୱ ବିଭାଗର ଏତେ ତହସିଲଦାର ଓ ଆର୍.ଆଇ. ତାଙ୍କ ଆଦେଶରେ ଭୂମି ବାଣ୍ଟି ଥିଲେ ମଧ ଇଞ୍ଚେ ଜାଗା ନିଜ ପାଇଁ ଡଃ ତ୍ରିପାଠୀ ଗ୍ରହଣ କରିନଥିଲେ । ତାଙ୍କ ଶିଷ୍ୟ ସ୍ୱର୍ଗତଃ ଜଗନ୍ନାଥ ତ୍ରିପାଠୀ ମଧ ତାଙ୍କ ଆଦର୍ଶରେ ଆଜିର କୋଟି କୋଟି ଟଙ୍କା ମୂଲ୍ୟର ଜାଗାକୁ ମଧ ପ୍ରତ୍ୟାଖ୍ୟାନ କରିଥିଲେ । ୧୯୭୫ରୁ ୧୯୮୦ ମସିହା ପର୍ଯ୍ୟନ୍ତ ଶାରୀରିକ ଅସୁସ୍ଥତା ତାଙ୍କୁ କାଳ ହେଲା । ୧୯୮୦ ସେପ୍ଟେମ୍ବର ୯ରେ ସେ ଏ ଜାତିର ଲମ୍ବା ଇତିହାସକୁ ପଛରେ ପକାଇ ଆମ ସମସ୍ତଙ୍କଠାରୁ ବିଦାୟ ନେଲେ ।

ଶଙ୍ଖରି ସାହି
ନବରଙ୍ଗପୁର



# ନୀରବକର୍ମୀ ସଦାଶିବ ତ୍ରିପାଠୀ

ଅଭୟ ମହାପାତ୍ର

**ଗୋ**ପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହର ଦାସଙ୍କ ପ୍ରେରଣାରେ ସଦାଶିବବାବୁ ଓ ତାଙ୍କର ଦୁଇ ବନ୍ଧୁ ରାଧାମୋହନ ସାହୁ ଏବଂ ରାଧାକୃଷ୍ଣ ବିଶ୍ୱାସରାୟ କୋରାପୁଟ ଜିଲ୍ଲା କଂଗ୍ରେସର ମିଳିତ ନେତୃତ୍ୱ ନେଇଥିଲେ । ଓଡ଼ିଶାରେ ଗଞ୍ଜାମ ଓ କୋରାପୁଟ ଜିଲ୍ଲା ୧୯୩୬ ମସିହାରେ ମିଶିଥାଏ ଏବଂ ସେତେବେଳେ ବିଶ୍ୱନାଥ ଦାସ ରାଜ୍ୟର ପ୍ରଧାନମନ୍ତ୍ରୀ ହୋଇଥାଆନ୍ତି । ମହାତ୍ମା ଗାନ୍ଧୀ ଡେଲାଙ୍ଗ ବେରବୋଇରେ ଏକ ସର୍ବଭାରତୀୟ ସମ୍ମିଳନୀ କରିବା ସ୍ଥିର ହେଲା । ଏହି ସମ୍ବାଦ କୋରାପୁଟ ଜିଲ୍ଲାରେ କଂଗ୍ରେସକୁ ମଜବୁତ୍ କରିବ ବୋଲି ଉପରୋକ୍ତ ୫ ଜଣ ଜିଲ୍ଲାର ବିଭିନ୍ନ ଅଞ୍ଚଳ ଗସ୍ତ କରିଥିଲେ । ସଦାଶିବବାବୁ ବହୁତ ଜମିର ମାଲିକ ହୋଇଥିଲେ ମଧ୍ୟ ସାଧାରଣ ଲୋକଙ୍କ ଦାରିଦ୍ର୍ୟଜନିତ ଦୁର୍ଦ୍ଦଶାକୁ ବୁଝିସାରିଥିଲେ । ତେଣୁ ଜୟପୁର ଜମିଦାର ଓ ବ୍ରିଟିଶ ଶାସନକୁ ବିରୋଧ କରିବାରେ ସେ ଲକ୍ଷ୍ମଣ ନାଏକ, ସୂର୍ଯ୍ୟ ନାରାୟଣ ମାଝୀ, ରବିସିଂ ମାଝୀ, ମହମ୍ମଦ ବାଜୀ, ଭଗବାନ ଖେମୁଣ୍ଡୁ, ନୀଳକଣ୍ଠ ସାହୁ, ଲକ୍ଷ୍ମୀ ଚନ୍ଦ୍ର ଦାସ, ବିଶ୍ୱନାଥ ପଟ୍ଟନାୟକ ଇତ୍ୟାଦିଙ୍କୁ ସାହାଯ୍ୟ କରୁଥିଲେ ।

୧୯୪୬ ମସିହା ପୂର୍ବର କଥା । ଏ ଲେଖାରେ ବିଶେଷ ଆଲୋଚନା ନକରି ମୁଁ ୧୯୪୬ରୁ ୧୯୬୭ ମସିହା ମଧ୍ୟରେ ତାଙ୍କର କାର୍ଯ୍ୟାବଳୀର ସୂଚନା ଦେଉଛି । ବିଶ୍ୱାସରାୟ ମନ୍ତ୍ରୀ ହେଲେ, କିନ୍ତୁ ଜିଲ୍ଲାଯାକର କଂଗ୍ରେସ କର୍ମୀଙ୍କ ସହଯୋଗ ନେବେ ବୋଲି ସ୍ଥିର କଲେ । ବଳି ପୂଜାରୀଙ୍କଠାରୁ ଆରମ୍ଭ କରି କୃଷ୍ଣଚନ୍ଦ୍ର ବକ୍ସିପାତ୍ର ଯାଏଁ ସମସ୍ତେ କହିଲେ କେବଳ ବ୍ରିଟିଶ୍ ନୁହେଁ, ରାଜା ଜମିଦାର ସାଧାରଣ ଲୋକଙ୍କ ଶତ୍ରୁ, କଟକରେ ସଦାଶିବବାବୁଙ୍କ ବସାରେ ଜିଲ୍ଲାଟାଯାକର କଂଗ୍ରେସ କର୍ମୀ ଏକାଠି ହୁଅନ୍ତି । ସଦାଶିବବାବୁ ପାନଖଣ୍ଡିଏ ଖାଉ ଥାଆନ୍ତି, କିଛି କଥା ନକହି ସମସ୍ତଙ୍କ କଥା ଶୁଣନ୍ତି । କାଗଜ ନାହିଁ, କଲମ ନାହିଁ, ଟିପା ନାହିଁ, ଲେଖା ନାହିଁ । ରେଭେନ୍ସା କଲେଜର ବଡ଼ହଲ୍‌ରେ ଆସେମ୍ବ୍ଲି ହେଉଥାଏ । ସରକାରୀ ଦଳରୁ ସଦାଶିବବାବୁ ଜୟପୁର ଜମିଦାରୀରେ ଲୋକଙ୍କ ଦୁର୍ଦ୍ଦଶା ବିଷୟରେ ଯାହା କହନ୍ତି ତାହା ହରେକୃଷ୍ଣ ମହତାବଙ୍କୁ ମଧ୍ୟ ଆଶ୍ଚର୍ଯ୍ୟ କରେ । ଆସେମ୍ବ୍ଲି ଡିବେଟ୍‌ରୁ ତାହା ଜଣା ପଡ଼ିଯିବ, ସେତେବେଳେତ ଆସେମ୍ବ୍ଲି କାର୍ଯ୍ୟକ୍ରମ ତ ଇଂରେଜୀରେ ଚାଲୁଥାଏ । ସଦାଶିବବାବୁଙ୍କ ଭାଷଣ ମଧ୍ୟ ଇଂରାଜୀ ଭାଷାରେ ଥାଏ । ଅଧିକାଂଶ ସରଳ ଶବ୍ଦରେ ସେ ଲୋକଙ୍କ ସମସ୍ୟା ଠିକ୍ ଭାବେ ଉପସ୍ଥାପିତ କରି ପାରନ୍ତି । ମହତାବବାବୁ ରାଜାରାଜୁଡ଼ାଙ୍କ ଶାସନ ଯାଉ ବୋଲି ସର୍ଦ୍ଦାର ପଟେଲ୍‌ଙ୍କ ସହ ଘନ ଘନ ଆଲୋଚନା କରୁଥିବାବେଳେ ସଦାଶିବବାବୁ ସମସ୍ତପ୍ରକାର ମଧ୍ୟ ସ୍ୱତ୍ତ୍ୱାଧିକାରୀ ପ୍ରଥା ଉଚ୍ଛେଦ ପାଇଁ ନବକୃଷ୍ଣ ଚୌଧୁରୀଙ୍କ ନିକଟରେ ଦାବି କରୁଥାଆନ୍ତି । ମହାତ୍ମା ଗାନ୍ଧୀଙ୍କ ମୃତ୍ୟୁ ପରେ ରଚନାତ୍ମକ କର୍ମୀମାନେ କଂଗ୍ରେସ୍ ଦଳରୁ ଅଲଗା ହୋଇଗଲେ । ଖୁବ୍‌କମ୍ ଲୋକ କଂଗ୍ରେସ୍‌ରେ ରହି ରଚନାତ୍ମକ କାମରେ ମାତିଲେ । ବିନୋବା ଭାବେ ଏହି ଦୁଇଶ୍ରେଣୀର କର୍ମୀଙ୍କୁ ଏକଜୁଟ୍ କଲେ । ପ୍ରଥମ ସମ୍ମିଳନୀ ବମ୍ବେ ରାଜ୍ୟରେ ହେଲା, ତା'ପର ସମ୍ମିଳନୀ ଓଡ଼ିଶାର ଅନୁଗୁଳରେ ହେବ ବୋଲି ସ୍ଥିର ହେଲା । ସେତିକିବେଳେ ସଦାଶିବବାବୁଙ୍କୁ ନିଷ୍ପତ୍ତି ନେବାକୁ ପଡ଼ିଲା, ପଟେଲ୍‌ଙ୍କୁ ସମର୍ଥନ କରି ଆଚାର୍ଯ୍ୟ ହରିହର ଇତ୍ୟାଦିଙ୍କ ରାସ୍ତାରୁ ଓହରିଯିବେ କି ନାହିଁ । ସମାଜବାଦ ଶବ୍ଦ ଉଚ୍ଚାରଣ ନକରି ସେ ଓଡ଼ିଶାର ନିମ୍ନ ମଧ୍ୟବିତ୍ତ ଓ ଦରିଦ୍ର ଲୋକଙ୍କ ପାଇଁ ଆଇନ ସମ୍ମତପନ୍ଥା କଥା ଚିନ୍ତା କଲେ । ଅନୁଗୁଳ ସମ୍ମିଳନୀର ସଫଳତା ପାଇଁ ସେ ଯଥାସାଧ୍ୟ ସହଯୋଗ କଲେ । ବିଶ୍ୱାସରାୟ ଓଡ଼ିଶା ମନ୍ତ୍ରିମଣ୍ଡଳରୁ ଗଲାପରେ ତାଙ୍କୁ ମନ୍ତ୍ରୀ କରାଗଲା । ସେତେବେଳକୁ ପୂର୍ବାଞ୍ଚଳ ଗଡ଼ଜାତରେ ଓଡ଼ିଶା ରାଜ୍ୟ ଶାସନ ପ୍ରଚଳିତ ହୋଇ ସାରିଲାଣି । ନବବାବୁ କେତେ ମାସ ପାଇଁ ମୌଳିକ ଶିକ୍ଷାର ପ୍ରସାର ପାଇଁ ମନ୍ତ୍ରିମଣ୍ଡଳରୁ ଓହରି ଯାଇ ଥାଆନ୍ତି । ରାଧାନାଥ ରଥ ଓ ସଦାଶିବ ତ୍ରିପାଠୀ ଏହି ପରିବର୍ତ୍ତିତ ପରିସ୍ଥିତିରେ ଅକ୍ଳାନ୍ତ ପରିଶ୍ରମ କରି ଶାସନ କଳକୁ ନିୟନ୍ତ୍ରଣ କରିବା ଶିଖିଲେ । ଆଇ.ସି.ଏସ୍. ଅଫିସର୍ ୧୯୪୨ କଂଗ୍ରେସ୍ ଆନ୍ଦୋଳନ ବେଳେ ଯେଉଁ ମନୋବୃତ୍ତି ରଖିଥିଲେ

ଓଡ଼ିଶାରେ ୧୯୪୬ରୁ ୧୯୫୬ ମସିହା ପର୍ଯ୍ୟନ୍ତ ତା'ର କିଛି ପରିବର୍ତ୍ତନ ହୋଇ ନଥାଏ, ରାଜାମାନଙ୍କ ଅଫିସର୍‌ମାନେ ମଧ୍ୟ ଓଡ଼ିଶା ଶାସନରେ ନିଯୁକ୍ତ ହେଲେ । ସାଧାରଣ ଲୋକେ ଭାବୁଥାଆନ୍ତି ଏ ଶାସନ କଳର ସବୁ ପଦବୀରୁ ରାତାରାତି ଅନ୍ୟାୟକାରୀ ଅଫିସର୍‌ମାନଙ୍କୁ ନିକାଲି ଦିଆଯାଉ ।

ଋଷିଆ ଓ ଚାଇନା ପରି ନୂଆ ଲୋକେ ଚଉକିରେ ବସନ୍ତୁ । ସଦାଶିବବାବୁ ଅଫିସର୍‌ଙ୍କ କଥା ଶୁଣନ୍ତି, ଏମ୍‌ଏଲ୍‌.ଏ. ଓ କଂଗ୍ରେସ କର୍ମୀଙ୍କ କଥା ଶୁଣନ୍ତି, କିଛି ପଦେ ବି କହନ୍ତି ନାହିଁ । ବୋର୍ଡ଼ ଅଫ୍ ରେଭନ୍ୟୁରର କାର୍ଯ୍ୟ ପଦ୍ଧତିରେ ପରିବର୍ତ୍ତନ ଆଣନ୍ତି । ଲୋକାଲ୍ ବୋର୍ଡ଼, ଜିଲ୍ଲାବୋର୍ଡ଼ ପଦ୍ଧତିରେ ସଂସ୍କାର କରନ୍ତି । ବହୁ ପ୍ରକାର ପ୍ରତିକୂଳ ପରିସ୍ଥିତିରେ ଦୀନବନ୍ଧୁ ସାହୁଙ୍କ ସହ ମିଶି ଖଣିରୁ ମିଳୁଥିବା ରାଜସ୍ୱ ବଢ଼ାନ୍ତି । ଖଳଲୋକଙ୍କ ସମାଲୋଚନାର ଶରବ୍ୟ ହୁଅନ୍ତି, କିନ୍ତୁ ରାଜ୍ୟର ଆୟ ଯଥେଷ୍ଟ ବଢ଼ିଯାଏ । ରାଧାନାଥବାବୁ ସିନା ଅର୍ଥ ମନ୍ତ୍ରୀ କିନ୍ତୁ ଆୟ ବଢ଼ିବା ବ୍ୟବସ୍ଥା ସଦାଶିବବାବୁଙ୍କ ଦାୟିତ୍ୱ ।

ଜମିଦାର ଉଚ୍ଛେଦ ଆଇନ ତିଆରି ଓ ତାହାକୁ ଓଡ଼ିଶାରେ ପ୍ରଚଳନ କରିବାରେ ସଦାଶିବବାବୁ ମୁଖ୍ୟମନ୍ତ୍ରୀଙ୍କୁ ଯଥେଷ୍ଟ ତଥ୍ୟ ଯୋଗାଇ ଦେଇଥିଲେ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଭାରତୀୟ ସମାଜବାଦୀ ଗୋଷ୍ଠୀର ପ୍ରତିଷ୍ଠାତା ସଭ୍ୟ । ସଦାଶିବବାବୁ ସମାଜବାଦୀ କିମ୍ବା ପୁଞ୍ଜିବାଦୀ ନୁହନ୍ତି, ତାଙ୍କର ଲକ୍ଷ୍ୟଥାଏ ମାଟିଲି ଗାଁର ସାଧାରଣ ଆଦିବାସୀ ସ୍ୱାଧୀନତାର ସୁଫଳ ପାଉ । ମହାତ୍ମା ଗାନ୍ଧୀ ଦେଶର ଦରିଦ୍ରତମ ଲୋକଟିକଥା ଚିନ୍ତା କରୁଥିଲେ, ତାଙ୍କରି ରାସ୍ତାକୁ ବାଛି ନେଇଥିବା ସଦାଶିବବାବୁ ଜମିଦାରୀ ପ୍ରଥାର ଦରିଦ୍ରତମ ପ୍ରଜାକଥା ସବୁଦିନେ ଆଖିରେ ଦେଖୁଥିଲେ । ଓଡ଼ିଶାର ଜୟପୁର ଜମିଦାରୀ ଦଶହଜାର ବର୍ଗ ମାଇଲରୁ ଅଧିକ ଥିଲା, ତାହାଛଡ଼ା ଖରିଆର, ପାରଳା, ଖଲିକୋଟ, କନିକା, ଆଳି, ସୁକିନ୍ଦା ଇତ୍ୟାଦି ବଡ଼ ଜମିଦାରୀର ଦରିଦ୍ର ପ୍ରଜାମାନେ ବିଭିନ୍ନ ସ୍ତରରେ ହଇରାଣ ହେଉଥିଲେ । ଅନେକ ଲୋକଙ୍କର ଘରଡିହ ଉପରେ ମଧ୍ୟ ଆଇନ ଗତ ଅଧିକାର ନଥିଲା, ତାଙ୍କୁ ମିନା ପ୍ରଜା କୁହାଯାଉଥିଲା, ପାହାଡ଼ିଆ ଅଞ୍ଚଳରେ ଥିବା ଜମିଦାରୀର ଆଦିବାସୀ ପ୍ରଜାଟିର ତା'ଠାରୁ ଖରାପ ଅବସ୍ଥା । ସେ ଜମିଦାରଙ୍କ ଖଜଣାଖାନାକୁ ସମୃଦ୍ଧ କରୁଥିଲା କିନ୍ତୁ ତା' ନାମରେ କିଛି ଜମି ରେକର୍ଡ଼ ଅଧିକାଂଶ ଗ୍ରାମରେ ନଥିଲା, ତଙ୍ଗର ଚାଷୀଙ୍କ ଅବସ୍ଥା ତ କହିଲେ ନସରେ । ନବକୃଷ୍ଣ ଚୌଧୁରୀଙ୍କର ସମ୍ମୁଖରେ ସମସ୍ୟା ଅନେକ, ମହାଭାରତୀୟ ସ୍ରୋତରେ ଓଡ଼ିଶାକୁ ମିଶାଇବାକୁ ହେବ, ଇସ୍ପାତ କାରଖାନା, ଜଳ ବିଦ୍ୟୁତ୍ କେନ୍ଦ୍ର, କାରଖାନାଭିତ୍ତିକ ମଧ୍ୟମ, କ୍ଷୁଦ୍ର ଓ କୁଟୀର ଶିଳ୍ପର ପ୍ରସାର ହେବ, ନୂଆ ରାଜଧାନୀ ନିର୍ମାଣ ଓ ବନ୍ୟା ନିୟନ୍ତ୍ରଣ ଇତ୍ୟାଦି ହଜାରେ କାମ । ତେଣୁ ସେ ରାଧାନାଥ ରଥ ଓ ସଦାଶିବବାବୁଙ୍କ ଉପରେ ପୂରା ବିଶ୍ୱାସ ରଖିଥିଲେ । ଭୂମି ସମସ୍ୟାର ସମାଧାନ ପାଇଁ ଜମିଦାରୀ ଉଚ୍ଛେଦ ହେଲା । ଆହୁରି ତଳକୁ ମକଦ୍ଦମି, ସରବରାକାରୀ, ଦେବୋତ୍ତର, ପୀରୋତ୍ତର, ଗଉନ୍ତି, ମୁଠାଦାରୀ ଇତ୍ୟାଦି ବିଭିନ୍ନ ପ୍ରକାର ମଧ୍ୟ ସ୍ୱତ୍ତ୍ୱାଧିକାର । ଆଇ.ସି.ଏସ୍. ଏବଂ ଆଇ.ଏ.ଏସ୍. ଅଫିସର୍‌ମାନେ ୧୯୫୨ରୁ ୧୯୬୦ ମସିହା ମଧ୍ୟରେ କେତେଦୂର ତା' ଭିତରେ ମୁଣ୍ଡ ପୂରାଇବେ ସେ ବିଷୟରେ ସଦାଶିବବାବୁଙ୍କର ସନ୍ଦେହ ଥାଏ । ମୁଖ୍ୟମନ୍ତ୍ରୀଙ୍କୁ ସେ ପରାମର୍ଶ ଦେଲେ ଆମ ଲୋକଙ୍କ କଥା ବୁଝି ପାରୁଥିବା ଲୋକେ ରାଜସ୍ୱ ବିଭାଗ କଥା ବୁଝନ୍ତୁ । ବ୍ରଜ ସୁନ୍ଦର ମହାନ୍ତି, ଭବକୃଷ୍ଣ ମହାନ୍ତି, ଦୟାନିଧି ଦାଶଙ୍କଠାରୁ ଆରମ୍ଭ କରି ନୃସିଂହ ବେହୁରିଆ, ଗୋପୀନାଥ ମହାନ୍ତି ଓ କାହ୍ନୁଚରଣ ମହାନ୍ତି ଇତ୍ୟାଦି ଓଡ଼ିଆ ପ୍ରଶାସକ ରାଜସ୍ୱ ଶାସନରେ ରହିଲେ । ସବାତଳକୁ ରହିଲେ ଅଞ୍ଚଳ ଅଧିକାରୀ । ୧୯୪୮ଠାରୁ ୨୦ ବର୍ଷ ମଧ୍ୟରେ ଓଡ଼ିଶାରେ ପ୍ରଜାମାନଙ୍କ ପାଇଁ ସେହି ଫେଡ଼ାଣ ମିଶାଣର ଧାରାକୁ ଭବିଷ୍ୟତର ଗବେଷକମାନେ ଆଲୋଚନା କଲେ ଜାଣିପାରିବେ ବେଶୀ ଭାଷଣ ଦେଉନଥିବା ସଦାଶିବବାବୁ କ'ଣ କରିଯାଇଛନ୍ତି । ନିମ୍ନ କେତୋଟି ବିଷୟ ସେହି ଗବେଷଣାରେ ସହାୟକ ହେବ ।

୧. ଆସେମ୍ଲି ବିବରଣୀ ପୁସ୍ତକାବଳୀ

୨. ଓଡ଼ିଶା ଗେଜେଟ୍

୩. ଓଡ଼ିଶା ସିଭିଲ୍ ଲିଷ୍ଟ

୪. ସେହି ସମୟର ସଦାଶିବବାବୁଙ୍କ ଅଧୀନରେ ଥିବା ବିଭାଗମାନଙ୍କର ଆଇନ ଓ ଉପବିଧି (Rules & Acts)

ସଦାଶିବବାବୁ ସମାଜବାଦୀ କିମ୍ବା ପୁଞ୍ଜିବାଦୀ ନୁହନ୍ତି, ତାଙ୍କର ଲକ୍ଷ୍ୟଥାଏ ମାଟିଲି ଗାଁର ସାଧାରଣ ଆଦିବାସୀ ସ୍ୱାଧୀନତାର ସୁଫଳ ପାଉ । ମହାତ୍ମା ଗାନ୍ଧୀ ଦେଶର ଦରିଦ୍ରତମ ଲୋକଟିକଥା ଚିନ୍ତା କରୁଥିଲେ, ତାଙ୍କରି ରାସ୍ତାକୁ ବାଛି ନେଇଥିବା ସଦାଶିବବାବୁ ଜମିଦାରୀ ପ୍ରଥାର ଦରିଦ୍ରତମ ପ୍ରଜାକଥା ସବୁଦିନେ ଆଖିରେ ଦେଖୁଥିଲେ ।

୫. ସେ ସଂପର୍କୀୟ ରେଗୁଲେସନ୍

୬. ଭୂଦାନ ଯଜ୍ଞ ସମିତିର କାର୍ଯ୍ୟ ବିବରଣୀ

୭. ଗ୍ରାମସେବକ ପତ୍ରିକା ଓ 'ସମାଜ' ସମ୍ବାଦପତ୍ର

୮. ମାଡ୍ରାସ୍, ସେଣ୍ଟ୍ରାଲ୍ ପ୍ରଭିନ୍ସ, ବେଙ୍ଗଲ ପ୍ରେସିଡ଼େନ୍ସି ଓ ବିହାର ଓଡ଼ିଶାର ବିଭିନ୍ନ ରାଜସ୍ୱ ବିଭାଗ ଆଇନର ସଂଶୋଧିତ ଅଂଶ

୯. ଓଡ଼ିଶା ସରକାରଙ୍କ ରାଜସ୍ୱ ବିଭାଗ ଓ ବୋର୍ଡ଼ ଅଫ୍ ରେଭେନ୍ୟୁର ସେହି ବର୍ଷମାନଙ୍କର ବାର୍ଷିକ କାର୍ଯ୍ୟ ବିବରଣୀ

୧୦. ଦଣ୍ଡକାରଣ୍ୟ ପ୍ରତିଷ୍ଠା ସଂପର୍କରେ ତାଙ୍କର ଦୃଢ଼ ମତ

୧୧. କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କ କୋରାପୁଟ ଜିଲ୍ଲାରେ ଆଦିବାସୀ ସମ୍ମିଳନୀ ଓ ତହିଁରେ ସଦାଶିବବାବୁଙ୍କ ଭାଷଣ

୧୨. ୧୯୬୧ରୁ ୧୯୬୭ ମସିହା ମଧ୍ୟରେ ବିଜୁ ପଟ୍ଟନାୟକ ଓ ଜବାହରଲାଲ ନେହେରୁଙ୍କ ଦୃଷ୍ଟି ଆକର୍ଷଣ କରି କୋରାପୁଟ ଜିଲ୍ଲା ତଥା ଓଡ଼ିଶାର ଉନ୍ନତି ପାଇଁ ପ୍ରସ୍ତାବ ।

୧୩. ନୃସିଂହ ଚରଣ ବେଉରିଆଙ୍କଦ୍ୱାରା କୋରାପୁଟ ଜିଲ୍ଲାର ସେଟଲ୍‌ମେଣ୍ଟ୍ ରିପୋର୍ଟ ।

ରାଜ୍ୟ ପ୍ରଶାସନ ସଂପର୍କରେ ସଦାଶିବବାବୁଙ୍କର ମତ ଥିଲା ଓଡ଼ିଶା ବାହାରୁ ଆସିଥିବା ଆଇ.ସି.ଏସ୍. ଏବଂ ଆଇ.ଏ.ଏସ୍. ଅଫିସରମାନେ ସରକାରଙ୍କୁ ନୀତି ନିର୍ଦ୍ଧାରଣରେ ସାହାଯ୍ୟ କରିବେ । ଗାଁ ଗହଳର ସମସ୍ୟା ବୁଝୁଥିବା ପ୍ରଶାସନିକ କର୍ମଚାରୀ ତଥା ଅଫିସର୍‌ମାନଙ୍କ କାର୍ଯ୍ୟ ତଦାରଖ କରିବା ଆଳରେ ସେମାନଙ୍କ କାର୍ଯ୍ୟ କରିବା ସ୍ୱାଧୀନତାକୁ କ୍ଷୁଣ୍ଣ କରିବା ଠିକ୍ ହେବ ନାହିଁ । ଅଞ୍ଚଳ ଶାସନର ଅଞ୍ଚଳ ଅଧିକାରୀଟି ନିଜ ବୁଦ୍ଧି ଖଟାଇ ଲୋକଙ୍କ ସମସ୍ୟା ସମାଧାନ କରୁ । ଆମେ କେହି ଶାସନ କରିବାର ମନ୍ତ୍ର ଜନ୍ମ ବେଳୁ ଶିଖି ନଥିଲୁ । ଆମ ବିଚାର ବୁଦ୍ଧିରେ ଯାହା ଭଲ, ତାହା ଆମ ଅଞ୍ଚଳରେ ପ୍ରୟୋଗ ହେଉ । ଭୁଲ୍ ହେଲେ ଆମ ପରେ ଆଉ ଜଣେ ଭଲ ପ୍ରଶାସକ ଆମରି ଗାଦିରେ ବସି ଭୁଲ୍‌ଟାକୁ ସଂଶୋଧନ କରିନେବ ନାହିଁ ?

ସଦାଶିବ ତ୍ରିପାଠୀଙ୍କର ଏକ ଉଲ୍ଲେଖନୀୟ ଅବଦାନ ହେଲା ଭୂଦାନ ଯଜ୍ଞ ଓ ଗ୍ରାମଦାନ ଆଇନର ମୂଳପିଣ୍ଡ ତିଆରି କରାଇ ଆସେମ୍ବ୍ଲିଦ୍ୱାରା ଅନୁମୋଦନ କରାଇବା । ଏ ସବୁ କାର୍ଯ୍ୟରେ ନବକୃଷ୍ଣ ଚୌଧୁରୀ ତାଙ୍କର ପଥପ୍ରଦର୍ଶକ ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । କେବଳ ଓଡ଼ିଶାର ଆଦିବାସୀ ନୁହନ୍ତି, ଭାରତର ପ୍ରତ୍ୟେକ ଅଞ୍ଚଳରେ ଆଦିବାସୀ ଓ ବନବାସୀଙ୍କର ମାନସିକ ପ୍ରତିକ୍ରିୟା ଉଣା ଅଧିକେ ସମାନ । ତଥାକଥିତ ସଭ୍ୟ ଶିକ୍ଷିତ ଲୋକ ବନବାସୀଙ୍କ ସହ ଜିନିଷ କିଣାବିକା ବେଳେ ନିଜ ସ୍ୱାର୍ଥକୁ ଆଗେ ଦେଖନ୍ତୁ, ସମ୍ମୁଖରେ ଥିବା ନିରୀହ, ସରଳବିଶ୍ୱାସୀ ଲୋକଟିର ସ୍ୱାର୍ଥ ପଛେ ହାଣକୁ ଯାଉ । ଆଦିବାସୀଟି ପ୍ରଥମ ସ୍ତରରେ ସହିଯାଏ, ତା'ପରେ ଅତ୍ୟନ୍ତ ନୀରବତାର ସହ ଶୋଷକଠାରୁ ଦୂରେଇବାକୁ ଚେଷ୍ଟା କରେ, ଶୋଷକ ତାକୁ ଆଇନର ମିଥ୍ୟା ଜାଲରେ ଗୁଡ଼ାଇ ପକାଇ ଦଣ୍ଡ ଦିଏ, ବନବାସୀଟି ଦଣ୍ଡ ସହିଯାଏ, ପୁଣି ଶୋଷଣ ଅବ୍ୟାହତ ରହିଲେ ବନବାସୀକୁଳ ବନାଗ୍ନିପରି ନିଜର ଜୀବନକୁ ବାଜି ଲଗାଇ ସଶସ୍ତ୍ର ବିଦ୍ରୋହ କରନ୍ତି । ସଦାଶିବବାବୁ ଜୟପୁର ଜମିଦାରୀର ୮ ଲକ୍ଷ ଆଦିବାସୀଙ୍କୁ ଅତି ନିକଟରୁ ଦେଖିଥିଲେ । ଶିକ୍ଷକତା କରୁଥିବା ସମୟରୁ ୧୯୫୦ ମସିହା ପର୍ଯ୍ୟନ୍ତ ସେ ଆଦିବାସୀଙ୍କ ସମସ୍ୟାର ସମାଧାନ ଖୋଜି ଲାଗିଥିଲେ । ସେତେବେଳେ ମଧ୍ୟ ଆଦିବାସୀମାନେ ହିଂସାକାଣ୍ଡ ଘଟାଇବା, ସାହୁକାରର ଅତ୍ୟାଚାର ନ ସହିବା ଘଟଣା ଚାଲୁଥିଲା । ସଦାଶିବବାବୁ ବୁଝିଥିଲେ ୧୯୩୬ରୁ କଂଗ୍ରେସ ଅକୁଣ୍ଠ ସମର୍ଥନ ପାଇବା ପଛରେ ଆଦିବାସୀମାନଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ କମ୍ୟୁନିଷ୍ଟମାନେ ଗାନ୍ଧିଜୀଙ୍କ ନୀତିର ବିରୋଧ କରି ଭାରତରେ ସଶସ୍ତ୍ର ବିପ୍ଳବ ପାଇଁ ଆହ୍ୱାନ ଦେଉଥିଲେ । ଚୀନରେ କମ୍ୟୁନିଷ୍ଟମାନେ ଚ ଚ୍ୟାଙ୍ଗ-କା-ଇ-ସେଙ୍ଗଙ୍କୁ ବିଭିନ୍ନ କ୍ଷେତ୍ରରେ ପରାସ୍ତ କରି ଆସୁଥିଲେ । ଗାନ୍ଧିଜୀଙ୍କ ମହାପ୍ରୟାଣ ପରେ ଜମିର ମାଲିକାନାକୁ ନେଇ ବିନୋବା ଭାବେଙ୍କ ଅହିଂସ ସମାଜବାଦ ଚିନ୍ତାଧାରା ସଦାଶିବବାବୁଙ୍କୁ ଅତ୍ୟନ୍ତ ଅନିର୍ବାର୍ଯ୍ୟ ଆବଶ୍ୟକତା ବୋଲି ଜଣାଗଲା । ଓଡ଼ିଶାରେ ଗୋପବନ୍ଧୁ ଚୌଧୁରୀ ଏହିପରି ଲୋକଙ୍କ ଆଗଧାଡ଼ିରେ ଥିଲେ, ଗୋପବାବୁ କହିଲେ ସମଭାବାପନ୍ନ ଲୋକେ କିଛିକାଳ କ୍ଷମତା ବାହାରେ ରହିଲେ ଲୋକଙ୍କ ନିକଟକୁ ବାରମ୍ବାର ଯିବେ ଓ ତାଙ୍କ ଭଲମନ୍ଦରେ ଅଂଶୀଦାର ହେବେ । ସେହି ଅବସରରେ ସଦାଶିବବାବୁ ଓଡ଼ିଶା ଭୂଦାନ ଯଜ୍ଞ ସମିତିର କର୍ମକର୍ତ୍ତା ହେଲେ । ୧୯୫୫ ମସିହାରେ ବିନୋବା ଭାବେ କୋରାପୁଟ ଜିଲ୍ଲାରେ ବହୁଦିନ ପଦଯାତ୍ରା କରି ଶୋଷକ ଓ ଶୋଷିତ ଉଭୟ ଶ୍ରେଣୀର ଲୋକଙ୍କୁ ଗୋଟିଏ ଗୋଟିଏ ସଭାରେ ଠୁଳ କଲେ । ଆଦିବାସୀକୁ ଶୋଷଣ କଲେ ନିଜେ ବିପଦକୁ ଡାକି ଆଣିବ ବୋଲି ଲୋକଙ୍କୁ ବୁଝାଇଲେ । ବିଶ୍ୱନାଥ ପଟ୍ଟନାୟକଙ୍କ ଅକ୍ଲାନ୍ତ ଚେଷ୍ଟା ଫଳରେ ଗାଁ ଲୋକଙ୍କ ପାଖରେ ଏ ଖବର ପହଞ୍ଚିଲା । ବିଶ୍ୱନାଥ ବୟସରେ ସାନ, ୧୯୪୬ ମସିହାରୁ କଂଗ୍ରେସ ଦଳରୁ ଅଲଗା ହୋଇ ଆଦିବାସୀ ଉନ୍ନୟନ କାମରେ ଲାଗିଥିଲେ । ସବୁ ଭୂଦାନ

କର୍ମୀଙ୍କୁ ପୃଷ୍ଠପୋଷକତା କରିବାରେ ସଦାଶିବବାବୁ ମୁକ୍ତହସ୍ତ ଥିଲେ । **୧୯୬୧ରୁ ୧୯୬୭ ମସିହା ମଧ୍ୟରେ ଓଡ଼ିଶାରେ ଗ୍ରାମଦାନ ବିଲ୍ ପାଶ୍ ହୋଇ ଆଇନରେ ପରିଣତ ହେବାରେ ସଦାଶିବବାବୁଙ୍କ ଅବଦାନକୁ କେହି ଭୁଲି ପାରିବ ନାହିଁ ।**

ଜୟପୁର ଜମିଦାରୀଟି ଅବିଭକ୍ତ କୋରାପୁଟ ଜିଲ୍ଲା ହୋଇଥାଏ । ସେହି ଜମିଦାରୀର ପ୍ରଜାମାନଙ୍କ ମଧ୍ୟରୁ ଶତକଡ଼ା ଏକ ଭାଗ ଜମି ଆଦିବାସୀଙ୍କ ନାମରେ ଥାଏ । ରାଜାଙ୍କ ସଂସ୍ଥାନ ଶାସନ ପକ୍ଷରୁ ପଣାଦାର ଅମୀନ ଯେଉଁ ଜମି ଯାହାର ବୋଲି ଲେଖି ଦେଲେ ତାହା ବେଦରଗାର । ବିକ୍ରମଦେବଙ୍କ ମୃତ୍ୟୁ ପରେ ଜମିଦାରୀର ଉଚ୍ଚ ଅଫିସର୍‌ମାନେ ମନୋମୁଖୀ ଶାସନ କରିବା ସୁବିଧା ହେଲା । ତାହାର ପ୍ରତିକାର ପାଇଁ କୋରାପୁଟ ଜିଲ୍ଲାରେ ବିଧିବଦ୍ଧ ଜମିଜମା ମାପ ହୋଇ ଆଦିବାସୀ ଓ ଅଣଆଦିବାସୀ ପ୍ରଜାମାନଙ୍କ ନାମରେ ରେକର୍ଡ଼ କରିବା ଦିଗରେ ସଦାଶିବବାବୁଙ୍କ ଉଦ୍ୟମ ଭୁଲି ହେବ ନାହିଁ । ଡୋୟାକା ସାଙ୍ଗାନାଙ୍କଠାରୁ ଆରମ୍ଭ କରି ଜାଜୁରୁ ଝୁରିଆଙ୍କ ପର୍ଯ୍ୟନ୍ତ ବହୁ ଆଦିବାସୀ ନେତାଙ୍କୁ ସେ ବୁଝାଇଦେଲେ ଯେ ଆଦିବାସୀମାନଙ୍କ ଚାଷ ଜମି ଅଣଆଦିବାସୀ କିଣି ପାରିବ ନାହିଁ ବୋଲି ରେଗୁଲେସନ୍ ୧ (୧୯୪୮ ମସିହାର) ଏବଂ ୧୯୫୬ ମସିହାର ରେଗୁଲେସନ୍ ୨ରେ ବ୍ୟବସ୍ଥା ହୋଇଛି । ସେଟଲ୍‌ମେଣ୍ଟ୍ ଅଫିସର୍ ଭାବେ ସେ ନୃସିଂହଚରଣ ବେହୁରିଆଙ୍କୁ ଉପଯୁକ୍ତ ବୋଲି ବିବେଚନା କଲେ । ସ୍ୱର୍ଗତଃ ବେଉରିଆ ଓଡ଼ିଶା କ୍ୟାଡ଼ର୍‌ର ସ୍ୱାଧୀନତା ପରେ ନିଯୁକ୍ତି ପାଇଥିବା ପ୍ରଶାସନିକ ଅଫିସର୍, ଓଡ଼ିଆ ପ୍ରଜାଙ୍କର ଅସୁବିଧା ସଂପର୍କରେ ସେ ବାଲ୍ୟକାଳରୁ ଦେଖି ଆସିଥିଲେ । ଜଙ୍ଗଲକୁ ଗୋଷ୍ଠୀଗତ ଭାବେ ବ୍ୟବହାର କରୁଥିବା ଆଦିବାସୀଙ୍କୁ ସେ କିପରି ସ୍ଥାୟୀ ବସତିରେ ରଖାଇବେ ଏହା ତାଙ୍କର ମୁଖ୍ୟ ସମସ୍ୟା ଥିଲା । ତଥାପି ସଦାଶିବବାବୁଙ୍କ ରାଜନୈତିକ ସମୀକରଣ, ବିଧାନସଭା ଓ ବାହାରେ ଥିବା ତାଙ୍କର ସୁନାମ, ଭୂଦାନ କାର୍ଯ୍ୟକ୍ରମର କୋରାପୁଟରେ ବହୁଥିବା ଚକ୍ରବାତ ସେଟଲ୍‌ମେଣ୍ଟ୍ କାର୍ଯ୍ୟକୁ ସାହାଯ୍ୟ କଲା । କୋରାପୁଟ ଜମିଜମା ବ୍ୟବସ୍ଥାରେ ସଂସ୍କାରରେ ନବକୃଷ୍ଣ ଚୌଧୁରୀ, ସଦାଶିବ ତ୍ରିପାଠୀ ଓ ନୃସିଂହଚରଣ ବେଉରିଆ ମୁଖ୍ୟତଃ ଦାୟୀ ।

ଦଣ୍ଡକାରଣ୍ୟ ଶରଣାର୍ଥୀ ପୁନର୍ବାସ ବ୍ୟବସ୍ଥା କୋରାପୁଟ ଜିଲ୍ଲାରେ ହେବାବେଳେ ସଦାଶିବବାବୁ ମନ୍ତ୍ରୀ ଥିଲେ । ସେ ଆଦିବାସୀମାନଙ୍କର ବିସ୍ଥାପନ ବିରୋଧରେ ଥିଲେ । ତାଙ୍କର ବାସସ୍ଥାନଠାରୁ ଅଳ୍ପ ଦୂରରେ ଉମରକୋଟରେ ଶରଣାର୍ଥୀମାନଙ୍କ ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ ହେବାବେଳେ ଆଦିବାସୀ ଓ ଅନ୍ୟ ବିସ୍ଥାପିତମାନଙ୍କ ପାଇଁ ସେପରି କିଛି ବ୍ୟବସ୍ଥା ହୋଇପାରିଲା ନାହିଁ । ସେ ପୂର୍ବରୁ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କୁ ଆଦିବାସୀମାନଙ୍କୁ ସ୍ଥାୟୀ ବସତିରେ ରଖିବା ପାଇଁ ଅନୁରୋଧ କରିଥିଲେ । ଦଣ୍ଡକାରଣ୍ୟ ହେବାବେଳେ ପଣ୍ଡିତ ନେହେରୁଙ୍କୁ ଆଦିବାସୀଙ୍କ ପୁନର୍ବାସ ପାଇଁ ଯଥେଷ୍ଟ ଅର୍ଥ ବ୍ୟବସ୍ଥା କରିବାକୁ ରାଜ୍ୟ ସରକାରଙ୍କୁ କହିଥିଲେ । ସେହି ମର୍ମରେ କେନ୍ଦ୍ର ସରକାରଙ୍କୁ ପତ୍ର ଯାଇଥିଲା । କିନ୍ତୁ ବିଧାନଚନ୍ଦ୍ର ରାୟଙ୍କର କେନ୍ଦ୍ରରେ ବିଶେଷ କରି ପଣ୍ଡିତ ନେହେରୁଙ୍କ ନିକଟରେ ଏପରି ଖାତିର୍ ଥିଲା ଯେ ଓଡ଼ିଶାର ଦାବି ନିଷ୍ପ୍ରଭ ହୋଇ ପଡ଼ିଥିଲା । ମଧ୍ୟପ୍ରଦେଶର ମଧ୍ୟ ତଦ୍ରୂପ ସମସ୍ୟା ଅସମାହିତ ହୋଇରହିଲା ।

୧୯୬୧ ମସିହା ଜୁଲାଇରୁ ୧୯୬୭ ମସିହା ଆରମ୍ଭ ପର୍ଯ୍ୟନ୍ତ ସଦାଶିବବାବୁ ମନ୍ତ୍ରୀ ରୂପେ ଯେଉଁ ଯେଉଁ ବିଭାଗ ଦାୟିତ୍ୱରେ ଥିଲେ ତାହାକୁ ଅତ୍ୟନ୍ତ ନିଷ୍ଠାର ସହ ସମ୍ପାଦନ କରିଥିଲେ । ପାର୍ଲାମେଣ୍ଟାରୀ ଗଣତନ୍ତ୍ରରେ ବିରୋଧ ରହିବା ସ୍ୱାଭାବିକ । କଂଗ୍ରେସର ଏକ ଗୋଷ୍ଠୀ ଓ ପ୍ରଜାସମାଜବାଦୀ ଦଳର ନେତାମାନେ ତତ୍କାଳୀନ ଶାସନକଳ ବିରୋଧରେ ଆନ୍ଦୋଳନ କରୁଥିଲେ ମଧ୍ୟ ସଦାଶିବବାବୁଙ୍କ ବିରୋଧରେ କିଛି ଅଭିଯୋଗ କରିପାରୁନଥିଲେ । ଏହାର ଅର୍ଥ ନୁହେଁ ଯେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ନଥିବାରୁ ସମାଲୋଚନାର ପରିସରକୁ ଆସୁ ନଥିଲେ । ଅଧିକନ୍ତୁ, ଗୁରୁତ୍ୱପୂର୍ଣ୍ଣ ବିଭାଗରେ ଥାଇ ମଧ୍ୟ ସେ ନିୟମ ବହିର୍ଭୂତ କାମ କରୁନଥିଲେ । ଯେଉଁଠାରେ ସାଧାରଣ ଜନତା ଲାଭ ପାଇବେ ସେ କ୍ଷେତ୍ରରେ ଆଇନକୁ ଜନତା ସପକ୍ଷରେ ବ୍ୟାଖ୍ୟା କରିବାକୁ ତାଙ୍କ କଲମରେ ଭାଷା ଥିଲା । ମୁଖ୍ୟମନ୍ତ୍ରୀ ଥିବାବେଳେ ମଧ୍ୟ ତାଙ୍କ ଆଦେଶ ଓ ଅନୁମୋଦନଗୁଡ଼ିକ ପ୍ରଚଳିତ ଆଇନକୁ ଅବଜ୍ଞା କରୁନଥିଲା । ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ସେ କମ୍ ଭାଷଣ ଦେଉଥିଲେ, ଏହା ରେକର୍ଡ଼ରୁ ଜଣାପଡ଼ିବ । ତାଙ୍କ ସମୟରେ ପାରିତ ହୋଇଥିବା ବିଧେୟକଗୁଡ଼ିକର ଏବେ ମଧ୍ୟ ଜାଣିବାର ଆବଶ୍ୟକତା ଅଛି । ଆଗାମୀ ଯୁଗର ମନ୍ତ୍ରୀ ଓ ପ୍ରଶାସକମାନେ ତାଙ୍କ କାର୍ଯ୍ୟ ପଦ୍ଧତିରୁ ଅନେକ କଥା ଶିଖିବାର ଅଛି ।

ତଳତେଲେଙ୍ଗା ବଜାର
କଟକ-୭୫୩୦୦୯

■■■■■■■■■

# ଅନେକ ବ୍ୟତିକ୍ରମ, ଅନନ୍ୟ ବ୍ୟକ୍ତିତ୍ୱ

ଲଳିତ ମୋହନ ପଟ୍ଟନାୟକ

ନବରଙ୍ଗପୁରର ମାଟିରେ ଅନେକ ଯଶସ୍ୱୀ କବି, କଳାକାର, ସଙ୍ଗୀତଜ୍ଞ, ସାହିତ୍ୟିକ, ନାଟ୍ୟକାର, ଅଭିନେତା, ଶିକ୍ଷାବିତ୍, ପ୍ରଶାସକ, ରାଜନେତା, ସ୍ୱାଧୀନତା ସଂଗ୍ରାମୀ ପ୍ରମୁଖ ଜନ୍ମଗ୍ରହଣ କରି ଏହି ମାଟିକୁ ଧନ୍ୟ କରିଛନ୍ତି । ସେମାନଙ୍କ ମଧ୍ୟରୁ ସ୍ୱର୍ଗତଃ ଡକ୍ଟର ସଦାଶିବ ତ୍ରିପାଠୀ ଅନ୍ୟତମ ।

ଡଃ ସଦାଶିବ ତ୍ରିପାଠୀ ନିଜସ୍ୱ ପ୍ରତିଭା ବଳରେ ଆଜି ପ୍ରାତଃ ସ୍ମରଣୀୟ ହୋଇପାରିଛନ୍ତି । ସେ ଥିଲେ ଏକାଧାରରେ ଜଣେ ଉତ୍ତମ ଛାତ୍ରବତ୍ସଳ ଆଦର୍ଶ ଶିକ୍ଷକ, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ନିଷ୍କଳଙ୍କ ମୁଖ୍ୟମନ୍ତ୍ରୀ, ପରୋପକାରୀ ରାଜନେତା ଓ ଚରିତ୍ରବାନ ବ୍ୟକ୍ତି ।

ସେ ଥିଲେ ମଣିଷ ଭଳି ମଣିଷଟିଏ । ଗରିବ, ଦୁଃଖୀ ଓ ରଙ୍କିଙ୍କ ପେଟ ଚିହ୍ନିବା ଲୋକ ଥିଲେ ସେ । ମଣିଷର ସେବା ଥିଲା ତାଙ୍କ ଜୀବନର ବ୍ରତ । ଗରିବ ଛାତ୍ରଛାତ୍ରୀଙ୍କୁ ଆର୍ଥିକ ସହାୟତା ଦେଇ ପାଠପଢ଼ାରେ ସାହାଯ୍ୟ କରୁଥିଲେ । ନିଜ ଆୟରୁ ହିଁ ସେ ଏହି ପ୍ରକାର ଦାନ କରୁଥିଲେ । ବାଇବେଲ୍‌ରେ ଲେଖାଅଛି – 'ଦକ୍ଷିଣ ହସ୍ତ ଦାନ କଲେ ବାମ ହାତ ଯେପରି ଜାଣିବ ନାହିଁ ।' ସେ ଥିଲେ ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଦାନ ବା ସାହାଯ୍ୟ ଦେଇ ସେ ଏକଥା କାହାକୁ କହିବାକୁ ମନା କରୁଥିଲେ । ସାଂପ୍ରତିକ ସମାଜରେ ଲୋକେ ଟଙ୍କାଟିଏ ଦେଇ ଶହେ ଟଙ୍କାର ବିଜ୍ଞପ୍ତି ପ୍ରକାଶ କରି ନିଜର ଦାନୀପଣକୁ ପ୍ରସାରିତ କରିଥାନ୍ତି । କିନ୍ତୁ ପୂଜ୍ୟ ସଦାଶିବ ତ୍ରିପାଠୀ ଥିଲେ ଏକ ବ୍ୟତିକ୍ରମ । ଦେଖା ହେବାର ଗୁଣ ତାଙ୍କର ଥିଲା । ମଣିଷ ସମାଜକୁ, ମଣିଷ ପଣିଆକୁ ସେ ଭଲ ପାଉଥିଲେ ।

ସଦାଶିବ ତ୍ରିପାଠୀ ଥିଲେ ଅନେକ ବ୍ୟତିକ୍ରମର ସମାହାର ।

ତାଙ୍କ ଜନ୍ମ ହୁଏ ୧୯୧୦ ମସିହା ଏପ୍ରିଲ ୨୧ ତାରିଖରେ । ପିତା ରାମନାଥ ତ୍ରିପାଠୀ । ମାତା ରାଧାମଣି ତ୍ରିପାଠୀ । ସମ୍ଭ୍ରାନ୍ତ ଜମିଦାର ବଂଶରେ ତାଙ୍କର ଜନ୍ମ । ଜନ୍ମ ପରଠାରୁ ହିଁ ଆରମ୍ଭ ହୁଏ ବ୍ୟତିକ୍ରମ । ପିତା ରାମନାଥ ନିଜ ସାନଭାଇ ଲିଙ୍ଗରାଜଙ୍କ ଅନୁରୋଧରେ ସଦାଶିବଙ୍କୁ ପୋଷ୍ୟପୁତ୍ର ଭାବେ ଟେକି ଦିଅନ୍ତି । ସଦାଶିବଙ୍କ ଶୈଶବ ଲିଙ୍ଗରାଜଙ୍କ ତତ୍ତ୍ୱାବଧାନରେ କଟିଯାଏ । ସଦାଶିବ କିନ୍ତୁ ଉଭୟଙ୍କୁ ଜୀବନ ତମାମ ସମାନ ଭାବେ ଭକ୍ତି କରୁଥିଲେ ।

ପିଲାଦିନରୁ ସେ ଥିଲେ ଜିଦ୍‌ଖୋର । ପାଠପଢ଼ାରେ ତାଙ୍କର ଥିଲା ଅଗାଧ ଶ୍ରଦ୍ଧା, ଅଧ୍ୟବସାୟ ଓ ନିଷ୍ଠା । ସାଧାରଣ ଛାତ୍ରଠାରୁ ସେ ଥିଲେ ବହୁ ଊର୍ଦ୍ଧ୍ୱରେ । ସେ ଥିଲେ ପରିଶ୍ରମୀ । ଶ୍ରଦ୍ଧୟା ଲଭ୍ୟତେ ଜ୍ଞାନମ୍ – ସଦୃଶ୍ୟ ତାଙ୍କ ପଢ଼ାପ୍ରତି ଆଗ୍ରହ ଥିଲା ଅନ୍ୟତମ ବ୍ୟତିକ୍ରମ । ହାଇସ୍କୁଲରେ ଛାତ୍ରଥିବା ସମୟରେ ସ୍ୱାଧୀନତା ଆନ୍ଦୋଳନ ସକ୍ରିୟ ଥିଲା । ଛାତ୍ର ଥାଇ ମଧ୍ୟ ସେ ଭାବୁଥିଲେ – ସ୍ୱାଧୀନତା ଆନ୍ଦୋଳନରେ ସାମିଲ ହେବାକୁ ଏବଂ ଜେଲ ଯିବାକୁ । ଏ ପ୍ରକାର ମାନସିକତା କେତେ ଜଣ ଛାତ୍ରଙ୍କର ଥାଏ ? ଦେଶପ୍ରୀତିର ପ୍ରଥମ ଶୁଭଶଙ୍ଖ ବାଜିଥିଲା ତାଙ୍କ ଛାତ୍ର ଜୀବନରୁ ।

ସ୍ୱାଧୀନତା ପ୍ରୀତିର ଅଙ୍କୁରୋଦଗ୍ମ ଧୀରେ ଧୀରେ ବୃଦ୍ଧି ହେବାରେ ଲାଗିଲା । ସେ ବ୍ରହ୍ମପୁରରେ ଶିକ୍ଷକ ତାଲିମ ଗ୍ରହଣ କରୁଥିବା ସମୟରେ ମଧ୍ୟ ସେ ଦେଶର କଥା ଭାବୁଥିଲେ । ସ୍ଥାନୀୟ ସ୍ୱାଧୀନତା ପ୍ରେମୀ ଲୋକଙ୍କ ସହ ପ୍ରତ୍ୟକ୍ଷ ଯୋଗାଯୋଗ ରଖିଥିଲେ ।

ଶିକ୍ଷକ ତାଲିମ ଗ୍ରହଣ କରି ଜୟପୁରରେ ଶିକ୍ଷକତା କଲେ । ଅଳ୍ପ ଦିନରେ ସେ ହୋଇଉଠିଲେ ଉତ୍ତମ, ଆଦର୍ଶ, ଛାତ୍ରବତ୍ସଳ ଶିକ୍ଷକ । ସେ ଥିଲେ ଜଣେ ଉତ୍ତମ ବକ୍ତା । ସଭାସମିତିରେ ତାଙ୍କ ଭାଷଣ ଶୁଣିବା ପାଇଁ ଅଜସ୍ର ଜନସମାଗମ ହେଉଥିଲା । ଏତିକିବେଳେ ସମଗ୍ର ଓଡ଼ିଶାରେ ମଧ୍ୟ ସ୍ୱାଧୀନତା ଆନ୍ଦୋଳନର ବହ୍ନି ତେଜିୟାନ୍ ହୋଇ ଉଠୁଥିଲା । ମହାତ୍ମା ଗାନ୍ଧୀଙ୍କ 'ବିଦେଶୀ ଜିନିଷ ବର୍ଜନ– ସ୍ୱଦେଶୀ ଜିନିଷ ବ୍ୟବହାର', 'କର ବା ମର' ଇତ୍ୟାଦି ମନ୍ତ୍ରବତ୍ ଧ୍ୱନିରେ ଆକୃଷ୍ଟ ହେଲେ ଶିକ୍ଷକ

ସଦାଶିବ । ଶିକ୍ଷକ ଚାକିରି ତାଙ୍କୁ ବାନ୍ଧି ରଖି ପାଇଲାନି । ସ୍ୱାଧୀନତା ସଂଗ୍ରାମରେ ନିଜକୁ ପ୍ରତ୍ୟକ୍ଷ ଭାବେ ସାମିଲ କରିବାକୁ ସେ ଇସ୍ତଫା ଦେଲେ । ତାଙ୍କ ଇସ୍ତଫା ପତ୍ର ଦେଖି ଓ ତାଙ୍କ ମୁଖରୁ ଇସ୍ତଫା ଦେବାର କାରଣ ଶୁଣି ପ୍ରଧାନଶିକ୍ଷକଙ୍କ ହତବାକ୍, କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ସ୍ତମ୍ଭୀଭୂତ ହୋଇଗଲେ । ସାଂପ୍ରତିକ ସମୟରେ ଶିକ୍ଷକ ଚାକିରିଟିଏ ମିଳିବା କାଠିକର ପାଠ, କେତେ ଇଣ୍ଟରଭ୍ୟୁ, କେତେ ଧରାଧରି, କେତେ ଲାଞ୍ଚ ମିଛ ଆବଶ୍ୟକ ହେଉଥିବାବେଳେ ସଦାଶିବବାବୁ ଶିକ୍ଷକ ଚାକିରିକୁ କେବଳ ଦେଶର ସ୍ୱାଧୀନତା ଲାଗି ପ୍ରତ୍ୟାଖ୍ୟାନ କରିବା ଏକ ଅନନ୍ୟ ବ୍ୟତିକ୍ରମ ନୁହେଁ କି ?

ଘାଇଲା ବ୍ୟାଘ୍ର ଭଳି ସେ ସ୍ୱାଧୀନତା ଆନ୍ଦୋଳନରେ ଅତି ଜୀବନ୍ତ ସକ୍ରିୟ ଭାବେ ସାମିଲ ହୋଇଗଲେ । ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ଲକ୍ଷ୍ମଣ ନାଏକ, ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ବାଜୀ, ସୀମାଞ୍ଚଳ ବେହେରା, ରଘୁନାଥ ଚୌଧୁରୀ, ଜଗନ୍ନାଥ ତ୍ରିପାଠୀ, ସଦାନନ୍ଦ ମହାନ୍ତି, ରବି ସିଂ ମାଝୀ, ସନୁ ମାଝୀ ପ୍ରମୁଖ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମରେ ଜେଲ୍ ବରଣ କରିଥିଲେ । ସେ ଥିଲେ ଯଥାର୍ଥ ବିପ୍ଳବୀ ।

ଦେଶ ସ୍ୱାଧୀନ ହେଲା ପରେ ଓଡ଼ିଶାର ସାଧାରଣ ନିର୍ବାଚନରେ କଂଗ୍ରେସ ତରଫରୁ ପ୍ରାର୍ଥୀ ହୋଇ ବିପୁଳ ସଂଖ୍ୟାରେ ଭୋଟ ପାଇ ବିଧାନସଭାକୁ ବିଧାୟକ ଭାବେ ନିର୍ବାଚିତ ହେଲେ । ଜମିଦାର ଘରର ପୁଅ ହୋଇ ମଧ୍ୟ ତାଙ୍କ ମନରେ ଗର୍ବ ବା ଅହଙ୍କାରର ଲେଶମାତ୍ର ଚିହ୍ନ ନଥିଲା । ନିଜକୁ ଜନତାର ସେବକ ବୋଲି ମନେ କରୁଥିଲେ । ବିଧାନସଭାରେ ନିଜ ଅଞ୍ଚଳର ଲୋକମାନଙ୍କ ସମସ୍ୟା ଉପଯୁକ୍ତ ଭାବେ ଉପସ୍ଥାପନ କରୁଥିଲେ । ନିଜର ନିର୍ବାଚନ ମଣ୍ଡଳୀ ବାରମ୍ବାର ଗସ୍ତ କରି ଲୋକମାନଙ୍କ ସମସ୍ୟା ସମାଧାନ କରୁଥିଲେ । ବିଧାୟକ ଭାବେ ତାଙ୍କର ନିର୍ମଳ ଭାବମୂର୍ତ୍ତି, ସଚ୍ଚୋଟ ମନୋଭାବ, ପ୍ରଶାସନିକ ସାଧୁତା ସାଂପ୍ରତିକ ସମୟର ଏକ ବିରଳ ବ୍ୟତିକ୍ରମ ।

ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ସଦାଶିବ ଥିଲେ ରାଜସ୍ୱ, ଯୋଗାଣ ଓ ପରିବହନ ବିଭାଗର ମନ୍ତ୍ରୀ । ନବକୃଷ୍ଣ ଚୌଧୁରୀ, ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ରଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ମଧ୍ୟ ସେ ରାଜସ୍ୱ ମନ୍ତ୍ରୀ ଭାବେ ଦାୟିତ୍ୱ ତୁଲାଇଥିଲେ । ଅବକାରୀ, ଉନ୍ନୟନ, ଜଙ୍ଗଲ, ଯୋଜନା ଓ ସମନ୍ୱୟ ଭଳି ବହୁ ଗୁରୁତ୍ୱପୂର୍ଣ୍ଣ ବିଭାଗର ମଧ୍ୟ ସେ ବିଭିନ୍ନ ସମୟରେ ମନ୍ତ୍ରୀ ଥିଲେ । ବୀରେନ୍ ମିତ୍ରଙ୍କ ପରେ ସେ ଓଡ଼ିଶାର ସପ୍ତମ ମୁଖ୍ୟମନ୍ତ୍ରୀ ଭାବେ ଦୁଇ ବର୍ଷ ପାଇଁ ଗୁରୁଦାୟିତ୍ୱ ବହନ କରିଥିଲେ । ସେତେବେଳେ ସେ ନିଜ ହାତରେ ଅର୍ଥ, ଶିଳ୍ପ, ଖଣି ଓ ଭୂତତ୍ତ୍ୱ, ଶକ୍ତି, ଜଳସେଚନ, ଯୋଜନା ଓ ସମନ୍ୱୟ, ପଞ୍ଚାୟତିରାଜ, ଜଙ୍ଗଲ, ଶିଶୁମଙ୍ଗଳ, ରାଜସ୍ୱ ଭଳି ଅନେକ ଗୁରୁତ୍ୱପୂର୍ଣ୍ଣ ବିଭାଗ ରଖିଥିଲେ । ଏହି ସମସ୍ତ ଦାୟିତ୍ୱ ସେ ଅତି ନିଷ୍ଠାର ସହ ସମ୍ପାଦନ କରୁଥିଲେ । ଏଭଳି ବିଭାଗଗୁଡ଼ିକରେ ରହି ମଧ୍ୟ ସେ ଦୁର୍ନୀତି, ଲାଞ୍ଚ ମିଛ, ପ୍ରଭୃତିରୁ ସଂପୂର୍ଣ୍ଣ ମୁକ୍ତ ଥିଲେ । ଏବେବି ସଦାଶିବ ତ୍ରିପାଠୀଙ୍କ ସେହି ପୁରୁଣା ଘରକୁ ଦେଖିଲେ ଯେ କେହି ଏହି ସତ୍ୟକୁ ବିଶ୍ୱାସ କରିବ । ସାଂପ୍ରତିକ ରାଜନୀତି କ୍ଷେତ୍ରରେ ଏହା ଏକ ବିରଳ ବ୍ୟତିକ୍ରମ । ବିତାଉଥିଲାବେଳେ ସଦାଶିବ ତ୍ରିପାଠୀ ବିଧାୟକ ପଦବୀରୁ ମୁଖ୍ୟମନ୍ତ୍ରୀ ପର୍ଯ୍ୟନ୍ତ ପହଞ୍ଚି ମଧ୍ୟ ଯେଉଁ ସଦାଶିବ ତ୍ରିପାଠୀଙ୍କୁ ସେଇ ସଦାଶିବ ତ୍ରିପାଠୀ । ଏଭଳି ମହାନ୍ ବ୍ୟକ୍ତି ଓ ବ୍ୟକ୍ତିତ୍ୱ ନିଶ୍ଚିତ ଭାବେ ଚିର ସ୍ମରଣୀୟ ଓ ଆଦର୍ଶ ସ୍ଥାନୀୟ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଓଡ଼ିଶାର ଭୂ-ସଂସ୍କାର ଆଇନ ତାଙ୍କ ଅମଳରେ ପ୍ରଣୟନ ହୋଇ ଲକ୍ଷ ଲକ୍ଷ ଭୂମିହୀନଙ୍କୁ ଜମି ଯୋଗାଇ ଦିଆଯାଇଥିଲା । ବିଭିନ୍ନ ଖଣିକୁ ମଧ୍ୟ ପଟ୍ଟା ଦେଇ ରାଜସ୍ୱ ଆଦାୟ କରାଯାଉଥିଲା । ସେହି ସମୟରେ କଲିକତାର ଜଣେ ଖଣିମାଲିକ ସଦାଶିବ ତ୍ରିପାଠୀଙ୍କୁ ଗୋଟିଏ ଦାମୀ କାର ଉପହାର ଦେଉଥିଲେ । ଉକ୍ତ କାର୍‌କୁ ସେ ଫେରାଇ ଦେଇଥିଲେ ଏବଂ ଖଣି ପଟ୍ଟାକୁ ରଦ୍ଦ କରି ଦେଇଥିଲେ । ଏହା ତାଙ୍କ ଦୃଢ଼ ସଚ୍ଚୋଟ ପଣିଆର ପ୍ରମାଣ ନୁହେଁ କି ? ସେ କ୍ଷମତା ପାଗଳ ନଥିଲେ କି ପ୍ରଲୋଭନ ପ୍ରତି ଆସକ୍ତ ନଥିଲେ ।

ଆଇନଟିଏ ପ୍ରଚଳନ ହେଲେ, ସେ ନିଜ ଆଡୁ ତା'ର ପ୍ରୟୋଗ କରୁଥିଲେ । ତାଙ୍କ ସମୟରେ ଗୋତିପ୍ରଥା ଉଚ୍ଛେଦ ଆଇନ କାର୍ଯ୍ୟକାରୀ ବେଳେ ସେ ନିଜ ଜମିଦାରୀରେ ଗୋତିମାନଙ୍କୁ ପ୍ରଥମେ ନିଷ୍କୁର ଭାବେ ବିଦାୟ ଦେଇଥିଲେ । ଭୂସଂସ୍କାର ଆଇନ୍ ପ୍ରଣୟନବେଳେ ମଧ୍ୟ ଅନୁରୂପ ଭାବେ ନିଜ ପୈତୃକ ସମ୍ପତ୍ତିର ବଳକା ଜମିକୁ ଛଡ଼ାଇ ଭୂମିହୀନଙ୍କ ମଧ୍ୟରେ ପ୍ରଥମେ ବାଣ୍ଟି ଦେଇ ଉଦାହରଣ ସୃଷ୍ଟି କରିଥିଲେ । ଏଇଭଳି ଅନେକ ବ୍ୟତିକ୍ରମ ଓ ଅନନ୍ୟ ବ୍ୟକ୍ତିତ୍ୱର ସୁନ୍ଦର ସମାହାର ଥିଲେ ଡଃ ସଦାଶିବ ତ୍ରିପାଠୀ ।

ଡଃ ସଦାଶିବ ତ୍ରିପାଠୀଙ୍କ ଅର୍ଥନୈତିକ ଦୃଷ୍ଟିକୋଣ ସୁଦୂରପ୍ରସାରୀ ଥିଲା । ଏହାର ଜ୍ୱଳନ୍ତ ଉଦାହରଣ ହେଉଛି – ତାଙ୍କ ସହଯୋଗରେ ସ୍ଥାପିତ ହୋଇଥିବା ସୁନାବେଡ଼ାର ମିଗ୍ ବିମାନ କାରଖାନା ଓ ରାଉରକେଲାର ଲୌହ ଇସ୍ପାତ କାରଖାନା ପାଇଁ ସରକାରୀ ଜମି ଦାନ କରାଯାଇଥିଲା । ଫଳରେ ଅନେକଙ୍କୁ

କର୍ମସଂସ୍ଥାନ ଯୋଗାଇ ଦିଆଯାଇ ଓ ରାଜସ୍ୱ ବୃଦ୍ଧି ତଦ୍ୱାରା ସମ୍ଭବ ହୋଇପାରିଥିଲା ।

ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ଥିବାବେଳେ ତାଙ୍କ ଉଦ୍ୟମରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇ ଶିକ୍ଷା କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ସମ୍ଭବପର ହୋଇପାରିଥିବା ତାଙ୍କ ଅନନ୍ୟ ବ୍ୟକ୍ତିତ୍ୱର ଅନ୍ୟତମ ଜ୍ୱଳନ୍ତ ଉଦାହରଣ ।

ତାଙ୍କ ଉଦ୍ୟମରେ ଶ୍ରୀମନ୍ଦିରରେ ପ୍ରଥମ ଥର ଲାଗି ୧୯୬୬ ଅକ୍ଟୋବର ୯ ତାରିଖରେ ବିଦ୍ୟୁତ୍ ଆଲୋକ ବ୍ୟବସ୍ଥା ହୋଇପାରିଥିଲା ।

ଏଭଳି ଏକ ଅନନ୍ୟ ବ୍ୟକ୍ତିତ୍ୱର ଅବସାନ ହେଲା – ୧୯୮୦ ମସିହା ସେପ୍ଟେମ୍ବର ୯ ତାରିଖରେ କଟକର ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ । ତାଙ୍କ ଜନ୍ମସ୍ଥାନ ନବରଙ୍ଗପୁରରେ ସେଦିନର ବିରାଟ ଶବ ଶୋଭାଯାତ୍ରା, ଇନ୍ଦ୍ରାବତୀ କୂଳସ୍ଥ ଶ୍ମଶାନ ଘାଟରେ ସମବେତ ଶୋକାକୁଳ ଜନତାର ସମୁଦ୍ର, 'ସଦାଶିବ ତ୍ରିପାଠୀ – ଅମର ରହେ, ଅମର ରହେ' ଜୟଧ୍ୱନି, ଯିଏ ଶୁଣିଛି ସେ ସ୍ତମ୍ଭୀଭୂତ ହୋଇଛି । ଏହା ପୂର୍ବରୁ ନବରଙ୍ଗପୁର ସହରରୁ ଇନ୍ଦ୍ରାବତୀ ଶ୍ମଶାନ ଘାଟ ଯାଏଁ ଏଭଳି ଶୋକ ସନ୍ତପ୍ତ, କରୁଣ ଅଥଚ ବିପୁଳ ଜନସମାବେଶ କେବେ ଦୃଷ୍ଟିଗୋଚର ହୋଇ ନଥିଲା ।

ନବରଙ୍ଗପୁର ଜନ୍ମମାଟିର ଶ୍ରେଷ୍ଠ, ଯୋଗ୍ୟତମ ସନ୍ତାନ ସଦାଶିବ ତ୍ରିପାଠୀ ଆଜି ନାହାନ୍ତି, କିନ୍ତୁ ତାଙ୍କ ଅକ୍ଷୟ କୀର୍ତ୍ତି ତାଙ୍କୁ ଅମର କରିଛି । ତାଙ୍କ ସରଳ ଜୀବନଯାପନ ଶୈଳୀ, ନିର୍ମଳ ଅକପଟ ହୃଦୟ, ସେବାବ୍ରତ, କର୍ତ୍ତବ୍ୟ ପରାୟଣତା, ନିଷ୍ଠା, ଶୃଙ୍ଖଳା, ଉଦାର ମାନସିକତା, ସାଧୁ-ବିଜ୍ଞଜନପ୍ରୀତି ଏବେବି ଅନ୍ୟମାନଙ୍କ ପାଇଁ ଅନୁସରଣୀୟ ହୋଇ ରହିଛି । ତାଙ୍କ ଭଳି ଆଦର୍ଶ, ଚରିତ୍ରବାନ୍ ରାଜନେତା ଆଜି ଏକାନ୍ତ ବିରଳ ।

ସଂପ୍ରତି ଧନ, କାମ, କ୍ଷମତା, ଓ ଅହଙ୍କାର ସମସ୍ତଙ୍କୁ କବଳିତ କରୁଛି । ଏହାଦ୍ୱାରା ସାମାଜିକ, ରାଜନୈତିକ, ସାଂସ୍କୃତିକ ବିଷମତା ଦେଖା ଦେଉଛି । ସଦାଶିବ ତ୍ରିପାଠୀ ସେ କ୍ଷେତ୍ରରେ ଥିଲେ ଏକ ଅନନ୍ୟ ବ୍ୟତିକ୍ରମ । ପ୍ରାଚୁର୍ଯ୍ୟର ସମ୍ଭାବନା ଭିତରେ ଥାଇ ବି ସେ ସରଳତାର ପୂଜାରୀ ଥିଲେ । ଦୀପାଳି ଭଳି ସେ ସମସ୍ତଙ୍କ ସେବା କରି ନିଜ ଜୀବନକୁ ତିଳ ତିଳ କରି ଜାଳି ଦେଇଛନ୍ତି । ଶୂନ୍ୟରୁ ଆସି ଶୂନ୍ୟତାରେ ହିଁ ତାଙ୍କ ଅମର ଆତ୍ମା ହଜିଯାଇଛି । କିନ୍ତୁ ଛାଡ଼ି ଯାଇଛି ଅସୁମାରୀ ଅକ୍ଷୟ ସ୍ମୃତିର କୀର୍ତ୍ତି – ମହାନ୍ କୀର୍ତ୍ତି । 'ଯସ୍ୟ କୀର୍ତ୍ତି ସଃ ଜୀବତି ।'

ଧନ୍ୟ ସଦାଶିବ ତ୍ରିପାଠୀ । ଧନ୍ୟ ନବରଙ୍ଗପୁର । ତୁମ ଜନ୍ମ ଶତବାର୍ଷିକରେ ଆମର କୋଟି କୋଟି ଆନ୍ତରିକ ପ୍ରଣାମ ।

ନୂଆବନ୍ଧ ସାହି
ନବରଙ୍ଗପୁର-୭୬୪୦୫୯

## ପୁରୁଣା ଫାଇଲ ଫଟୋ



ବ୍ରହ୍ମପୁରସ୍ଥିତ ମେଡ଼ିକାଲ କଲେଜର ନୂତନ ଗୃହ ଉଦ୍‌ଘାଟନ କରି ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ଫେରି ଆସୁଛନ୍ତି ।

# ନବଉତ୍କଳର ଅନ୍ୟତମ ବିଧାତା

ଡଃ ପ୍ରସନ୍ନ କୁମାର ସ୍ୱାଇଁ

**ଆ**ଧୁନିକ ଉତ୍କଳର ନବନିର୍ମାତା ପର୍ବରେ ଯେଉଁ ମହାମନୀଷୀମାନେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରେ ଓଡ଼ିଶାର ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ଡଃ ସଦାଶିବ ତ୍ରିପାଠୀ ଥିଲେ ଅନ୍ୟତମ । ସ୍ୱାଧୀନତା ପରକାଳରେ ଜଣେ ନୀତିବାନ୍ ସ୍ୱାଧୀନତା ସଂଗ୍ରାମୀ, ଭୂଦାନ ଆନ୍ଦୋଳନର ମୁଖ୍ୟ ପୁରୋଧା ଓ ନିର୍ମଳ ନିଷ୍କଳଙ୍କ ବ୍ୟକ୍ତିତ୍ୱ ସେ ଥିଲେ । ଦରିଦ୍ର ଜନତାର ଜନନାୟକ, ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ଏବଂ ନିର୍ବିବାଦୀୟ ମୁଖ୍ୟମନ୍ତ୍ରୀ ଭାବରେ ସେ ଥିଲେ ସମଗ୍ର ଉତ୍କଳୀୟ ଜନତାଙ୍କର ଚିର ବନ୍ଦିତ – ପଥିକୃତ ବ୍ୟକ୍ତିତ୍ୱ । ଏହି ପ୍ରଚଣ୍ଡ ପ୍ରତିଭା ୧୯୧୦ ମସିହା ଏପ୍ରିଲ ମାସ ୨୧ ତାରିଖରେ ଅବିଭକ୍ତ କୋରାପୁଟ ଜିଲ୍ଲାର ନବରଙ୍ଗପୁରଠାରେ ଏକ ଜମିଦାର ବ୍ରାହ୍ମଣ ପରିବାରରେ ପିତା ରାମନାଥ ତ୍ରିପାଠୀ ଓ ମାତା ରାଧାମଣୀ ଦେବୀଠାରୁ ଜନ୍ମଗ୍ରହଣ କରିଥିଲେ । ରାମନାଥ ତ୍ରିପାଠୀଙ୍କର ଆତ୍ମୀୟ ଭ୍ରାତା ଲିଙ୍ଗରାଜ ତ୍ରିପାଠୀ ଅପୁତ୍ରିକ ଥିବାରୁ ତାଙ୍କ ଅନୁରୋଧକ୍ରମେ ରାମନାଥ ନିଜର ନବଜାତକକୁ ଭ୍ରାତା ଲିଙ୍ଗରାଜଙ୍କ ହସ୍ତରେ ଟେକି ଦେଇଥିଲେ ଓ ଭ୍ରାତା ଲିଙ୍ଗରାଜ ତ୍ରିପାଠୀଙ୍କ ଗୃହରେ ନବରଙ୍ଗପୁରରେ ହିଁ ସଦାଶିବଙ୍କର ଶୈଶବ ଅତିବାହିତ ହୋଇଥିଲା । ନବରଙ୍ଗପୁରରେ ପିଲାଦିନ କଟିବା ସହିତ ସଦାଶିବ ସେହିଠାରେ ହିଁ ତାଙ୍କର ମଧ୍ୟଇଂରାଜୀ ଶ୍ରେଣୀ ପାଠ ଶେଷ କରିଥିଲେ । ସେତେବେଳକୁ ନବରଙ୍ଗପୁରରେ ଅଧିକ ପାଠ ପଢ଼ିବାର ସୁଯୋଗ ସୁବିଧା ନଥିବାରୁ ସଦାଶିବ ହାଇସ୍କୁଲ ଅଧ୍ୟୟନ ପାଇଁ କୋରାପୁଟ ଜୟପୁରକୁ ଯାଇଥିଲେ । ଜୟପୁରର ଉଚ୍ଚଇଂରାଜୀ ବିଦ୍ୟାଳୟରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେବା ପରେ ସଦାଶିବ କୋରାପୁଟ ପରି ଶିକ୍ଷାକ୍ଷେତ୍ରରେ ଏକ ଅନଗ୍ରସର ଅଞ୍ଚଳରେ ଶିକ୍ଷାର ବିକାଶ ନିମିତ୍ତ ମନ ବଳାଇଥିଲେ । ଇଚ୍ଛା ଥିଲେ ଉପାୟ ବଳେ ବଳେ ଆସିଲା ପରି ସଦାଶିବଙ୍କର ଏହି ଆଶା ସଫଳ ହୋଇଥିଲା । ଶିକ୍ଷକତା କରିବା ପାଇଁ ଶିକ୍ଷକ ତାଲିମ୍ ନେବାକୁ ହୁଏ । ଏହି ତାଲିମ୍ ନେବାକୁ ସଦାଶିବଙ୍କୁ ୧୯୩୧ ମସିହାରେ ବ୍ରହ୍ମପୁରକୁ ଆସିବାକୁ ପଡ଼ିଥିଲା । ବ୍ରହ୍ମପୁରଠାରେ ତାଲିମ୍ ନେବା ଅବସରରେ ସଦାଶିବ ସେଠାକାର ବିଶିଷ୍ଟ ବ୍ୟକ୍ତି ଓ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ଅନନ୍ତ ତ୍ରିପାଠୀ ଶର୍ମା, ଦିବାକର ପଟ୍ଟନାୟକ ପ୍ରମୁଖଙ୍କ ସଂସ୍ପର୍ଶରେ ଆସିଥିଲେ । ବ୍ରହ୍ମପୁରଠାରେ ଅବସ୍ଥାନ ଅବକାଶରେ ସଦାଶିବ ଏହି ମନୀଷୀଙ୍କର ଖୁବ୍ ନିକଟରୁ ସାକ୍ଷାତ ଆଲୋଚନା କରିବାର ସୁବିଧା ପାଇଥିଲେ । ଏହି ସାକ୍ଷାତ ଆଲୋଚନା ମୁଖ୍ୟତଃ ଓଡ଼ିଶା ଓ ଭାରତବର୍ଷର ଉନ୍ନତି, ଦେଶର ସ୍ୱାଧୀନତା, ଭାଷାଭିତ୍ତିକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ବିଦେଶୀ ହଟାଅ ଅଭିଯାନ ଉପରେ ପର୍ଯ୍ୟବସିତ ଥିଲା ।

ସେକାଳରେ ବ୍ରହ୍ମପୁର ଥିଲା ସଦାଶିବଙ୍କ ନିମିତ୍ତ ସ୍ୱାଧୀନତା ସଂଗ୍ରାମ ଓ ରାଜନୀତିରେ ପ୍ରବେଶ କରିବାର ମୁଖ୍ୟ ପ୍ରବେଶଦ୍ୱାର । ତଥାପି ସେଦିନ ବ୍ରହ୍ମପୁରରୁ ଶିକ୍ଷକ ଟ୍ରେନିଂ ସମାପ୍ତ କରି ସଦାଶିବ କୋରାପୁଟକୁ ଫେରିଗଲେ ଓ କୋରାପୁଟ ପରି ଏକ ଅନୁନ୍ନତ ଅଞ୍ଚଳରେ ଶିକ୍ଷା ବିକାଶର ଦାୟିତ୍ୱ ନେଇ ଜୟପୁରରେ ହିଁ ତାଙ୍କର ଶିକ୍ଷକତା ଜୀବନ ଆରମ୍ଭ କଲେ । ଶିକ୍ଷକଭାବେ ଯୋଗଦେବାର ଖୁବ୍ କମ୍ ଦିନ ମଧ୍ୟରେ ନିଜର ଅସାଧାରଣ ପାଣ୍ଡିତ୍ୟ, ବାଗ୍ମିତା, ବିଦ୍ୱତା, ଶିକ୍ଷାଦାନରେ ଅସାଧାରଣ ଦକ୍ଷତା, ନିଜର ସରଳ ଅମାୟିକ ବ୍ୟବହାର ପ୍ରଭୃତି ଯୋଗୁଁ ସେ ସମଗ୍ର କୋରାପୁଟ ଜିଲ୍ଲାରେ ଛାତ୍ର ଓ ଅବିଭକ୍ତ କୋରାପୁଟ ଜିଲ୍ଲାରେ ଯେଉଁଠି ସଭାସମିତି ହେଲା ଶିକ୍ଷକ ସଦାଶିବ ତ୍ରିପାଠୀଙ୍କୁ ସେଠାକୁ ଭାଷଣ ଦେବାପାଇଁ ନିମନ୍ତ୍ରଣ କରାଗଲା । ସଦାଶିବ ତ୍ରିପାଠୀ ସେହି ସୁଯୋଗରେ ପ୍ରତ୍ୟହ କୋରାପୁଟର ବିଭିନ୍ନ ସଭାସମିତିରେ ଭାଷଣ ଦେବା ପ୍ରସଙ୍ଗରେ ଦେଶ ଓ ଜାତି ଗଠନରେ ଛାତ୍ରମାନେ କିପରି ପ୍ରମୁଖ ଭୂମିକା ଗ୍ରହଣ କରିପାରିବେ । ଜଣେ ସରକାରୀ ଚାକିରିଆ ହୋଇମଧ୍ୟ ତାହା ରୋକ୍‌ଠୋକ୍ ଭାବରେ କହିଲେ । ସେହି ମନିଷୀଙ୍କର ସେକାଳରେ ନିର୍ଭୀକ ଓ ଅଗ୍ନିବର୍ଷୀ ଭାଷଣ ନିରକ୍ଷର ଆଦିବାସୀ, ଚାଷୀ–ମୂଲିଆ ସର୍ବୋପରି ସମଗ୍ର ଉତ୍କଳୀୟ ଜନମାନସଙ୍କୁ ଉଦ୍‌ବୁଦ୍ଧ କଲା ସିନା ତାହା ଇଂରେଜ ଶାସକଙ୍କ ବିରୋଧରେ ଗଲା । ସେତିକିବେଳେ ସମଗ୍ର ଦେଶରେ ଅସହଯୋଗ ଆନ୍ଦୋଳନର

ଆହ୍ୱାନରେ ଶିକ୍ଷିତ ଯୁବପିଢ଼ି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଉଥାନ୍ତି । ନିର୍ଭୀକ ସ୍ୱାଧୀନଚେତା ସଦାଶିବ ବା ସରକାରୀ ଚାକିରିରେ କେତେଦିନ ବାନ୍ଧି ହୋଇ ରହନ୍ତେ ? ପୁଣି ସେହି କାଳରେ ସ୍ୱାଧୀନତା ସଂଗ୍ରାମୀ ରାଧାକୃଷ୍ଣ ବିଶ୍ୱାସ ରାୟ, ରାଧାମୋହନ ସାହୁ, ଲକ୍ଷ୍ମୀକାନ୍ତ ଦାସ, ଲକ୍ଷ୍ମଣ ନାୟକ, ସଦାନନ୍ଦ ମହାନ୍ତି, ମାଧବ ପ୍ରଧାନୀଙ୍କ ପରି ନିଜ ଅଞ୍ଚଳର ପ୍ରତିଷ୍ଠିତ ସଂଗ୍ରାମୀମାନଙ୍କ ସଙ୍ଗରେ ତାଙ୍କର ବନ୍ଧୁତା ହେଲା । ପରାଧୀନ ଭାରତବର୍ଷରେ ଏହି ସ୍ୱାଧୀନତା ସଂଗ୍ରାମୀମାନଙ୍କ ଆହ୍ୱାନରେ ସଦାଶିବ ସବୁଦିନ ପାଇଁ ୧୯୩୪ ମସିହାରେ ଚାକିରିର ମୋହ ତ୍ୟାଗ କରି ଦେଶ ପାଇଁ ସଂପୂର୍ଣ୍ଣଭାବରେ ନିଜକୁ ଉତ୍ସର୍ଗ କରିଦେଲେ ।

୧୯୪୨ ମସିହାରେ ସଦାଶିବ କୋରାପୁଟ, ଜୟପୁର, ନବରଙ୍ଗପୁର, ମାଲକାନଗିରି ପ୍ରଭୃତି ଅନଗ୍ରସର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଆଦିବାସୀ କନ୍ଧ, ପରଜା ଲୋକଙ୍କୁ ମେଳିକରି ସେମାନଙ୍କୁ ଇଂରେଜ ଶାସନ ବିରୁଦ୍ଧରେ ଏକଜୁଟ କଲେ । **ସେହି ଆଦିବାସୀମାନଙ୍କୁ ଏକାଠି କରି ସେମାନଙ୍କୁ ଅସହଯୋଗ ଆନ୍ଦୋଳନ ସଂପର୍କରେ ଏପରି ବୁଝାଇଦେଲେ ଯେ କୋରାପୁଟ ପରି ଦୁର୍ଗମ ଆଦିବାସୀ ଅଞ୍ଚଳର ଆଦିବାସୀ ଓ ଚାଷୀ–ମୂଲିଆଙ୍କ ମଧ୍ୟରେ ମଧ୍ୟ ସ୍ୱରାଜ୍ୟ ପାଇଁ ଅଭୂତପୂର୍ବ ଜାଗରଣ ସୃଷ୍ଟି ହେଲା ।** ସତ୍ୟାଗ୍ରହୀମାନଙ୍କର କାର୍ଯ୍ୟ ଦେଖି ପୁଲିସ୍ ମଧ୍ୟ ଭୟ ପାଇ ଯାଇଥିଲେ । ପୁଲିସ୍ ଓ ସାଧାରଣ ଜନତାଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ହୋଇ ବହୁ ସାଧାରଣକର୍ମୀ କ୍ଷତାକ୍ତ ହେଲେ, ଅନେକ କର୍ମୀ ବନ୍ଦୀ ହେଲେ । ଲକ୍ଷ୍ମଣ ନାୟକଙ୍କ ପରି ଆଦିବାସୀ ସଂଗ୍ରାମୀଙ୍କୁ ଜେଲ ହେଲା । ମାତ୍ର ସଦାଶିବ ନିଜର ବିଚକ୍ଷଣ ବୁଦ୍ଧିଯୋଗୁଁ ପୋଲିସ୍ ଆଖିରେ ଧୂଳି ଦେଇ ପ୍ରଥମଥର ପାଇଁ ଖସିଗଲେ । ପରବର୍ତ୍ତୀ କାଳରେ ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିବା ବେଳେ କୋରାପୁଟରେ ପୁଲିସ୍‌ଦ୍ୱାରା ଗିରଫ ହୋଇ ସେ ପ୍ରଥମେ କୋରାପୁଟ ଜେଲ୍ ଓ ପରେ ପରେ ବ୍ରହ୍ମପୁର ଜେଲ୍‌କୁ ସ୍ଥାନାନ୍ତରିତ ହେଲେ । ଏଥିରେ ସଦାଶିବଙ୍କର ସଂଗ୍ରାମୀ ମନ ଦବିଗଲା ନାହିଁ । ବରଂ ଦେଶ ଓ ମଣିଷଙ୍କ ନିମିତ୍ତ ତାଙ୍କ ଦେହ ଓ ମନର ବଳ ବହୁଗୁଣିତ ହୋଇଗଲା । ଦେଶମାତୃକାର ସେବା ନିମିତ୍ତ ସେ ପ୍ରାଣବଳି ଦେବାପାଇଁ ମଧ୍ୟ ପଶ୍ଚାତ୍‌ପଦ ହେଲେ ନାହିଁ ।

ବ୍ରହ୍ମପୁର ଜେଲ୍‌ରେ ବନ୍ଦୀ ଜୀବନ ବିତାଉଥିବାବେଳେ ସଦାଶିବଙ୍କ ଜୀବନରେ ଏକ ସ୍ମରଣୀୟ ଘଟଣା ଘଟିଥିଲା । ଏତିକିବେଳେ ସଦାଶିବଙ୍କର ଅନ୍ୟତମ ସହଯୋଗୀ ସ୍ୱାଧୀନତା ସଂଗ୍ରାମୀ ଏବଂ ପ୍ରଖ୍ୟାତ ଆଦିବାସୀ ନେତା ଲକ୍ଷ୍ମଣ ନାୟକ ମଧ୍ୟ ବ୍ରହ୍ମପୁର ଜେଲ୍‌ରେ ବନ୍ଦୀ ଜୀବନ ବିତାଉଥିଲେ । ବ୍ରିଟିଶ୍ ସରକାରଙ୍କୁ କାଠପାନୁ ବା ରାଜସ୍ୱ, ହାଟପାନୁ, ଲଙ୍ଗଳ ପାନୁ ସହିତ ଅନ୍ୟାନ୍ୟ ପାନୁ ଦେବା ବିରୁଦ୍ଧରେ ପ୍ରତିବାଦ କରି କୋରାପୁଟରେ ହଜାର ହଜାର ଆଦିବାସୀ ଓ ହରିଜନ ଏକତ୍ର ହୋଇଥିଲେ । ଏହି ପ୍ରତିବାଦ ସଭାର ନେତୃତ୍ୱ ନେଇ ଲକ୍ଷ୍ମଣ ନାୟକ ଇଂରେଜ ହଟାଅ ଆନ୍ଦୋଳନରେ ସାମିଲ ହୋଇପଡ଼ିଥିଲେ । ବ୍ରିଟିଶ ଫୌଜଦ୍ୱାରା ପ୍ରଥମେ ଲାଠି ଓ ପରେ ପରେ ଗୁଳିଗୁଳାର ଶିକାର ହୋଇଥିଲେ ଅନେକ ସାଧାରଣ ଆଦିବାସୀ । ଏପରିକି ଜି. ରାମୟା ନାମକ ଜଣେ ଫରେଷ୍ଟ ଗାର୍ଡ଼ ପୁଲିସ୍ ଗୁଳିରେ ମୃତ୍ୟୁ ବରଣ କରିଥିଲା । ଥାନାପୋଡ଼ି ଅଭିଯୋଗରେ ପୁଲିସ୍ ଲକ୍ଷ୍ମଣଙ୍କୁ ବାନ୍ଧି ନେଇ ଜେଲ୍‌ରେ ପୂରାଇ ଦେଇଥିଲା । ତଳକୋର୍ଟରେ ଲକ୍ଷ୍ମଣଙ୍କୁ ଫାଶି ଦଣ୍ଡାଦେଶ ହୋଇଥିଲା । ଏହା ବିରୁଦ୍ଧରେ ସେ ପାଟଣା ହାଇକୋର୍ଟକୁ ଯାଇଥିଲେ । ପାଟଣା ହାଇକୋର୍ଟର ମାନ୍ୟବର ବିଚାରପତି ଏଚ୍.ଆର୍. ମେରେଡ଼ିଥ୍ ଓ ପିଟର୍ ଏଚ୍.ଆର୍. ଗ୍ରୋ ଲକ୍ଷ୍ମଣର ବିଚାର କରି ତଳକୋର୍ଟରେ ସେ ପାଇଥିବା ଦଣ୍ଡାଦେଶକୁ କାଏମ୍ ରଖିଥିଲେ । ଫଳରେ ୧୯୪୩ ମସିହା ମାର୍ଚ୍ଚ ୨୯ ତାରିଖରେ ବ୍ରହ୍ମପୁର ଜେଲ୍‌ରେ ଲକ୍ଷ୍ମଣଙ୍କୁ ଫାଶି ଦିଆଯାଇଥିଲା । '୧୯୪୨ ଅଗଷ୍ଟ ବିପ୍ଳବରେ ଭାରତବର୍ଷରେ ଏକମାତ୍ର ଫାଶି ପାଇଥିବା ଶହୀଦ ହେଉଛନ୍ତି ବୀର ଲକ୍ଷ୍ମଣ ନାଏକ । ଫାଶି ଦିବସର ପୂର୍ବଦିନ ସନ୍ଧ୍ୟାରେ ଜେଲ୍ ମଧ୍ୟରେ ଥିବା ପ୍ରାୟ ଦେଢ଼ ହଜାରରୁ ଊର୍ଦ୍ଧ୍ୱ ରାଜନୈତିକ ବନ୍ଦୀମାନଙ୍କର ଲକ୍ଷ୍ମଣ ନାଏକଙ୍କର ଅମୂଲ୍ୟ ଅମ୍ଳାନ ଜୀବନ ଅବସାନ ହେବାକୁ ଯାଉଥିବା ପରିପ୍ରେକ୍ଷୀରେ ଏକ ସଭା ହୋଇଥିଲା । ସଭା ପୂର୍ବରୁ ଯେଉଁ ବନ୍ଦୀ ସ୍ୱଜନବର୍ଗ ଜେଲ୍ ଭିତରେ ରୁଦ୍ଧ ସେଲ୍ ମଧ୍ୟରେ ଆବଦ୍ଧଥିବା ଲକ୍ଷ୍ମଣ ନାଏକଙ୍କୁ ଶେଷ ଦର୍ଶନ କରିବାକୁ ଯାଇଥିଲେ ସେମାନେ ଥିଲେ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ପଣ୍ଡିତ ପ୍ରାଣକୃଷ୍ଣ ପ୍ରତିହାରୀ, ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ବିଶ୍ୱନାଥ ଦାସ, ସଦାଶିବ ତ୍ରିପାଠୀ, ଜାତୀୟକବି ବୀରକିଶୋର ଓ ଗୌରଚନ୍ଦ୍ର ମହାପାତ୍ର ପ୍ରମୁଖ । ରୁଦ୍ଧ କାରାକକ୍ଷ ମଧ୍ୟରେ ଲକ୍ଷ୍ମଣ ନାଏକ ବସିଛନ୍ତି । ସାକ୍ଷାତ କରିବାକୁ ଚାହିଁଥିବା ବନ୍ଦୀ ପ୍ରମୁଖ ସେଲ୍ ଫାଟକ ବାହାରେ ଯାଇ ଠିଆ ହୋଇଛନ୍ତି । କିଛି କାହାକୁ କ'ଣ କହିବେ ?' (ଜାତୀୟକବି ବୀରକିଶୋର ଗ୍ରନ୍ଥାବଳୀ, ମୁଖବନ୍ଧ, କ୍ଷ, ପୃଷ୍ଠା) ଲକ୍ଷ୍ମଣଙ୍କୁ ଯେତେବେଳେ ଏହି ବନ୍ଦୀ ସହୋଦର ତାଙ୍କର ମୃତ୍ୟୁକାଳୀନ ଶେଷ ଇଚ୍ଛା ପଚାରିଲେ, ସେ କହିଥିଲେ – 'ମୁଇଁ ତ ମରିବି, ଇଟା ଇଂରେଜ ସରକାର ଆଉ ଜଇପୁର ରଜାରକାମ୍ । କପାଲ ଥାନେ ଯେନ୍‌ଟା ଆଛେ ହାଇଟା ହେଇସି । ସ୍ୱରାଜ ହେଇସି,

ମୋର ଦେଶର ଲୋକମନ୍ ଦେଖବାଇବେ । ଗାନ୍ଧୀ ମହାପୁର ରାଜ ହେଇସି । ଯୋନମନ ଜଇଲ ଥାନେ ଆଛନ୍ତ୍ ଭାରବାଇ ।'

ସେଦିନ ସେହି ଜେଲ୍ ପରିସରରେ ସାଥୀ ସଂଗ୍ରାମୀ ଓ ଜାତୀୟକବି ବୀରକିଶୋର ମଧ୍ୟ ଉପସ୍ଥିତ ଥିଲେ । ଏପରି ଏକ ଦୁଃଖଦ ଦୁଃସମ୍ବାଦରେ ସେ ଭାଙ୍ଗି ପଡ଼ି ଲକ୍ଷ୍ମଣ ନାଏକଙ୍କ ଉଦ୍ଦେଶ୍ୟରେ ଯେଉଁ କବିତାଙ୍କ ରଚନା କରିଥିଲେ ତାହାଙ୍କୁ ସେଠାରେ ଉପସ୍ଥିତ ସ୍ୱାଧୀନତା ସଂଗ୍ରାମୀ ଦୋଳଗୋବିନ୍ଦ ପ୍ରଧାନଙ୍କୁ ଆବୃତ୍ତି କରିବାକୁ ଅନୁରୋଧ କରିଥିଲେ । କବିତାଟି ଥିଲା ଏହିପରି –

'ମୋର ଯିବାର ବେଳତ ଆସି ହେଲାଣି,
ଭାଇ, ହସି ହସି ମୋତେ ଦିଅ ମେଲାଣି ।
ମନରେ ରହିଲା ମନର ଯଉଁ କଥା,
କି କହିବି ଭାଇ ମୋ ମରମ ବ୍ୟଥା
ମୁଁ ସ୍ୱାଧୀନ ଭାରତ ଦେଖି ନପାରିଲି
ଯା' ଲାଗି ବାନ୍ଧିଲି ମୋ ଆଶା ନିଶୁଣି ।
ଯେଉଁ ଦିନ ହେଲେ ଯାଆନ୍ତି ତ ଦିନେ
ସେଥିକି ଶୋଚନା ନାହିଁ ମୋର ମନେ
ମୋ ପିଲାପିଲିଙ୍କି କହିବ ଏତିକି
ମୁଁ ସ୍ୱାଧୀନ ଭାରତେ ନିଶ୍ଚେ ଫେରିବି ପୁଣି ।
ମୋର ଯିବାର ବେଳ ହେଲାଣି ।।

ଗୀତଟି ଆବୃତ୍ତି ହେବାଦ୍ୱାରା ଅନ୍ୟମାନଙ୍କ ସହିତ ସେଦିନ ସେଠାରେ ଉପସ୍ଥିତ ସଦାଶିବ ତ୍ରିପାଠୀଙ୍କ ଆଖି ଲୋତକରେ ପରିପୂର୍ଣ୍ଣ ହୋଇଯାଇଥିଲା । ବ୍ରହ୍ମପୁରର ଏହି ଜେଲ୍‌ରେ ଲକ୍ଷ୍ମଣର ଫାଶିଦଣ୍ଡ ଓ ସେଠାରେ ଉପସ୍ଥିତ ସହଯୋଗୀ ସଂଗ୍ରାମୀ ସହକର୍ମୀମାନେ ସଦାଶିବଙ୍କ ଜୀବନରେ ଗଭୀର ଭାବରେ ପ୍ରଭାବ ପକାଇଥିଲେ । ଫଳତଃ ସଦାଶିବ ସେହିଦିନଠାରୁ ନିଜ ଜୀବନକୁ ଜାତି ଉଦ୍ଦେଶ୍ୟରେ ସଂପୂର୍ଣ୍ଣ ଉତ୍ସର୍ଗ କରି ଦେଇଥିଲେ ।

ପ୍ରାକ୍ ସ୍ୱାଧୀନତା କାଳରୁ ୧୯୮୦ ମସିହା ପର୍ଯ୍ୟନ୍ତ ସଂଗ୍ରାମୀ ସଦାଶିବ ତ୍ରିପାଠୀ ଓଡ଼ିଶାର ରାଜନୀତି ସହିତ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସଂପୃକ୍ତ ଥିଲେ । ମହାତ୍ମା ଗାନ୍ଧୀଙ୍କ ନୀତି ଓ ଆଦର୍ଶରେ ପରିଚାଳିତ ହୋଇ ପ୍ରାକ୍ ସ୍ୱାଧୀନତା କାଳରେ ସେ ବାରମ୍ବାର କାରାବରଣ କରି ଅନେକ ଜନହିତକର କାର୍ଯ୍ୟ କରିବା ସହିତ ଆଜୀବନ ଜନସେବାରେ ବ୍ରତୀ ହୋଇଥିଲେ । ଏତିକିବେଳେ ତାଙ୍କର ତିଳୋତ୍ତମାଙ୍କ ସହିତ ବିବାହ ହୋଇଥିଲା । ତିଳୋତ୍ତମା ଥିଲେ ଉଦାର ସ୍ୱଭାବର, ସ୍ୱାଧୀନଚେତା ଏବଂ ଉଚ୍ଚାଭିଳାଷୀ ମହିଳା । ଭାରତବର୍ଷର ଜନସାଧାରଣଙ୍କ ଅବସ୍ଥାରେ କିପରି ଉନ୍ନତି ଆସିବ, ସେଥିପାଇଁ ସେ ସ୍ୱାମୀ ସଦାଶିବଙ୍କ ସହିତ ଜନତାର ସେବାରେ ଆଜୀବନ ବ୍ରତୀ ହୋଇଥିଲେ । ଓଡ଼ିଶାର ସାଧାରଣ ଜନତାଙ୍କ ଅନୁରୋଧ ଓ ସାହାଯ୍ୟରେ ୧୯୩୭ ମସିହାରୁ ୧୯୬୭ ମସିହା ପର୍ଯ୍ୟନ୍ତ ସେ ବାରମ୍ବାର ଓଡ଼ିଶା ରାଜ୍ୟ ବିଧାନସଭାକୁ ନବରଙ୍ଗପୁର ଓ ଉମରକୋଟ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ବହୁ ଜନହିତକର କାର୍ଯ୍ୟ କରିଥିଲେ । ୧୯୫୪ ମସିହାରେ ସେ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ସାମିଲ ହୋଇ ସେ ରାଜସ୍ୱ, ଅବକାରୀ, ଯୋଗାଣ, ଅର୍ଥ ଓ ଶିକ୍ଷା ବିଭାଗର ଦାୟିତ୍ୱ ନେଇଥିଲେ । ୧୯୬୧ ମସିହାରେ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ସଦାଶିବ ବାବୁ ରାଜସ୍ୱ, ଅବକାରୀ, ଉନ୍ନୟନ ଓ ଜଙ୍ଗଲ ବିଭାଗର ମନ୍ତ୍ରୀ ଭାବରେ ଅବସ୍ଥାପିତ ହୋଇଥିଲେ । ୧୯୬୩ ମସିହାରେ ବୀରେନ୍ ମିତ୍ରଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ସେ ପୁନର୍ବାର ରାଜସ୍ୱ, ଅବକାରୀ, ସମବାୟ ଓ ଜଙ୍ଗଲ ବିଭାଗର ମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ୧୯୬୫ ମସିହାରେ ସମଗ୍ର ଓଡ଼ିଶାରେ ଛାତ୍ର ଆନ୍ଦୋଳନର ସାମ୍ନା କରିନପାରି ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ପଦରୁ ଆକସ୍ମିକ ଭାବରେ ଇସ୍ତଫା ଦେବା ଫଳରେ ଓଡ଼ିଶାରେ ରାଜନୀତିର ଅସ୍ଥିରାବସ୍ଥା ମଧ୍ୟରେ ସଦାଶିବ ତ୍ରିପାଠୀଙ୍କ ଉପରେ ରାଜ୍ୟର ଶାସନଭାର ନ୍ୟସ୍ତ କରାଯାଇଥିଲା । ୧୯୬୫ ଫେବୃଆରୀ ୧୯ ତାରିଖରେ ଓଡ଼ିଶାରେ ରାଜନୀତିର ଅସ୍ଥିରାବସ୍ଥା ସମୟରେ ସେ କଂଗ୍ରେସ ବିଧାୟକ ଦଳର ନେତା ଭାବରେ ନିର୍ବାଚିତ ହୋଇଥିଲେ । ତତ୍କାଳୀନ ବିଧାୟକ ପବିତ୍ରମୋହନ ପ୍ରଧାନଙ୍କୁ ସେ ୫୧ ଖଣ୍ଡ ଭୋଟ ବ୍ୟବଧାନ (ପବିତ୍ର ମୋହନ ପ୍ରଧାନ ୧୫ଟି ଭୋଟ ପାଇଥିବା ବେଳେ ସଦାଶିବ ତ୍ରିପାଠୀ ୬୬ଟି ଭୋଟ ପାଇଥିଲେ)ରେ ପରାସ୍ତ କରି ୧୯୬୫ ମସିହା ଫେବୃଆରୀ ୨୧ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ସେ ଶପଥ ଗ୍ରହଣ କରିଥିଲେ ।

ସଦାଶିବ ତ୍ରିପାଠୀ ଥିଲେ ସ୍ୱାଧୀନତା ପର ଓଡ଼ିଶାର ସପ୍ତମ ମୁଖ୍ୟମନ୍ତ୍ରୀ । ମୁଖ୍ୟମନ୍ତ୍ରୀ ପଦରେ ଅଳଙ୍କୃତ ହୋଇ ସେ ଯେଉଁ ବିଭାଗମାନଙ୍କର ଦାୟିତ୍ୱ ଗ୍ରହଣ କରିଥିଲେ ତାହା ହେଉଛି ଅର୍ଥ, ଶିଳ୍ପ, ଯୋଜନା ଓ ସମବାୟ, ଖଣି ଓ ଭୂତତ୍ତ୍ୱ, ସେଚ ଓ ଶକ୍ତି, ବାଣିଜ୍ୟ, ରାଜସ୍ୱ, ସମବାୟ, ଜଙ୍ଗଲ, ଗୋଷ୍ଠୀ ଉନ୍ନୟନ ଓ ପଞ୍ଚାୟତିରାଜ ପ୍ରଭୃତି । ମୁଖ୍ୟମନ୍ତ୍ରୀ ପଦବୀରେ ସେ ୧୯୬୭ ମସିହା ମାର୍ଚ୍ଚ ୮ ତାରିଖ ପର୍ଯ୍ୟନ୍ତ ପ୍ରାୟ ଦୁଇବର୍ଷରୁ ଊର୍ଦ୍ଧ୍ୱକାଳ ରହି ଓଡ଼ିଶାରେ ଶିକ୍ଷା, ଭିତ୍ତିଭୂମି, ଶିଳ୍ପ ପ୍ରଭୃତିର ବିକାଶ ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ଦୀର୍ଘକାଳ ଧରି ଓଡ଼ିଶାର ରାଜସ୍ୱ ମନ୍ତ୍ରୀ ଭାବରେ ଦାୟିତ୍ୱ ନିର୍ବାହ କରି **ସେ ଓଡ଼ିଶାର ଜମିଜମା କ୍ଷେତ୍ରରେ ଥିବା ଅସଙ୍ଗତି**

**ଦୂର କରିବା ସହିତ ସେ କ୍ଷେତ୍ରରେ କାରଖାନାର ସ୍ଥାନ ନିରୂପଣ କରିବା ତାଙ୍କରି ଏକନିଷ୍ଠ ଉଦ୍ୟମର ଫଳଶ୍ରୁତି ଥିଲା ।** ୧୯୬୭ ମସିହାରେ ପଶ୍ଚିମ ଓଡ଼ିଶା ଓ ଦକ୍ଷିଣ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାକୁ କେନ୍ଦ୍ର କରି ଭୀଷଣ ଛାତ୍ର ଆନ୍ଦୋଳନ ଚାଲିଥିବାବେଳେ ମୁଖ୍ୟମନ୍ତ୍ରୀ ଭାବରେ ସମ୍ବଲପୁର ଓ ବ୍ରହ୍ମପୁରଠାରେ ଦୁଇ ଦୁଇଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରି ଓଡ଼ିଶାରେ ଉଚ୍ଚଶିକ୍ଷାର ବିକାଶ ଦିଗରେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଫଳତଃ ୧୯୬୭ ମସିହା ଜାନୁଆରୀ ୧ ତାରିଖରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓ ୧୯୬୭ ମସିହା ଜାନୁଆରୀ ୨ ତାରିଖରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସମ୍ଭବ ହୋଇପାରିଥିଲା । ପୁନଶ୍ଚ **୧୯୬୬ ମସିହା ଅକ୍ଟୋବର ମାସରେ ପୁରୀ ଶ୍ରୀମନ୍ଦିରରେ ବିଦ୍ୟୁତ୍ ଆଲୋକ ବ୍ୟବସ୍ଥା ହେଉଛି ତାଙ୍କରି ଏକନିଷ୍ଠ ଉଦ୍ୟମର ସୁଫଳ ।** ୧୯୬୭ ମସିହା ସାଧାରଣ ନିର୍ବାଚନରେ ତାଙ୍କ ଦଳକୁ ବହୁମତ ମିଳିଲା ନାହିଁ । ଫଳରେ ସ୍ୱତନ୍ତ୍ର ଦଳ ଓ ଜନକଂଗ୍ରେସ ଓଡ଼ିଶାରେ ଏକତ୍ର ହୋଇ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ସରକାର ଗଠନ କରିଥିଲେ । ସଦାଶିବ ତ୍ରିପାଠୀ ଏତିକିବେଳେ ରାଜ୍ୟ ବିଧାନସଭାର ଥିଲେ ବିରୋଧୀ ଦଳର ନେତା । **ଦୀର୍ଘ ଚାରିବର୍ଷରୁ ଊର୍ଦ୍ଧ୍ୱକାଳ ଧରି ବିରୋଧୀ ଦଳ ନେତା ଭାବରେ ସଦାଶିବ ତ୍ରିପାଠୀ ସର୍ବଦା ଥିଲେ ସଚ୍ଚୋଟ । ଗଠନମୂଳକ ପରାମର୍ଶ ଦେଇ ସେ ସରକାରଙ୍କୁ ଦେଶର ପ୍ରଗତିରେ ସାହାଯ୍ୟ କରୁଥିଲେ । ମାତ୍ର ସରକାରଙ୍କ ଦୋଷ ଓ ଦୁର୍ବଳତାକୁ ସେ କୌଣସିମତେ ପ୍ରଶୟ ନଦେଇ ଖୁବ୍ କଠୋର ଓ କଡ଼ା ଭାଷାରେ ସମାଲୋଚନା କରୁଥିଲେ ।**

୧୯୫୦ ମସିହାରେ ଭାରତବର୍ଷର ସମ୍ବିଧାନ ପ୍ରଣୟନ କାଳରେ ନୂତନ ଓଡ଼ିଶାର ଆବଶ୍ୟକତା ଅନୁଯାୟୀ ଓଡ଼ିଶା ନିମିତ୍ତ ଚିଠା ପ୍ରସ୍ତୁତ କରିବାର ଗୁରୁଦାୟିତ୍ୱ ସଦାଶିବ ତ୍ରିପାଠୀଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଖୁବ୍ କମ୍ ସମୟ ମଧ୍ୟରେ ତାଙ୍କଦ୍ୱାରା ପ୍ରସ୍ତୁତ ଚିଠା ପ୍ରସ୍ତାବକୁ ନେଇ ଭାରତର ତତ୍କାଳୀନ ଜନନେତା ଗୋବିନ୍ଦବଲ୍ଲଭ ପନ୍ଥ ସେଦିନ ତାଙ୍କ ଉପରେ ଖୁବ୍ ଖୁସି ହୋଇ ତାଙ୍କର ତୀକ୍ଷଣ ବୁଦ୍ଧି ଓ ଶାସନ ପ୍ରଣାଳୀକୁ ତାରିଫ୍ କରିଥିଲେ ।

ସଦାଶିବ ତ୍ରିପାଠୀ ଥିଲେ ଜଣେ ପ୍ରତିଭାଧର ବ୍ୟକ୍ତିତ୍ୱ । ପ୍ରତ୍ୟକ୍ଷ ରାଜନୀତିରେ ଯୋଗଦେବା ପୂର୍ବରୁ ସେ ପ୍ରଥମେ 'ସମାଜ' ଓ ପରେ ପରେ 'ପ୍ରଜାତନ୍ତ୍ର'ର ସାମ୍ବାଦିକ ଭାବରେ କାର୍ଯ୍ୟ କରିଥିଲେ । ଖୁବ୍ ଅଳ୍ପଦିନ ଏହି ବୃତ୍ତିରେ ଥିଲେ ମଧ୍ୟ ସେହି ସ୍ୱଳ୍ପକାଳ ମଧ୍ୟରେ ଜଣେ ନିରପେକ୍ଷ ସାମ୍ବାଦିକ ଭାବରେ ସେ ନିଜର କାର୍ଯ୍ୟ ଦକ୍ଷତା ପ୍ରତିପାଦିତ କରିଥିଲେ । ଓଡ଼ିଆ, ହିନ୍ଦୀ, ଇଂରାଜୀ ଏବଂ ତେଲୁଗୁ ଭାଷା ସହିତ ତାଙ୍କ ଅଞ୍ଚଳରେ ପ୍ରଚଳିତ ଆଦିବାସୀ ଭାଷାରେ ସେ ଖୁବ୍ ପାରଙ୍ଗମ ଓ ସୁଦକ୍ଷ ଥିଲେ । ଆଦିବାସୀମାନଙ୍କ ପାଇଁ କେତେଗୁଡ଼ିଏ ପୌରାଣିକ ଗୀତ ସହିତ ନାଟକାଦି ମଧ୍ୟ ସେ ରଚନା କରିଥିଲେ । ତାଙ୍କ ରଚିତ ନାଟକ ମଧ୍ୟରେ ପ୍ରଧାନ ଥିଲା ସୁଭଦ୍ରାହରଣ, କର୍ଣ୍ଣବଧ, ଅଭିମନ୍ୟୁବଧ, ଭୂତକେଳି ପ୍ରଭୃତି । **ସଦାଶିବ ଥିଲେ ନବରଙ୍ଗପୁର ଅଞ୍ଚଳର ନାଟ୍ୟଗୁରୁ ଓ ନାଟ୍ୟ ନିର୍ଦ୍ଦେଶକ । ମାତ୍ର ତାଙ୍କର ଉଚ୍ଚାଙ୍ଗ ରାଜନୀତି ଓ ରାଷ୍ଟ୍ରନେତାର ସଫଳ ନେତୃତ୍ୱ ନିକଟରେ ତାଙ୍କର ନାଟ୍ୟ ରଚନା ମ୍ଳାନ ପଡ଼ିଯାଇଥିଲା ।**

ଓଡ଼ିଶାରୁ ଜମିଦାରୀ ଉଚ୍ଛେଦ କ୍ଷେତ୍ରରେ ତାଙ୍କର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଓଡ଼ିଶା ଭୂସଂସ୍କାର ଆନ୍ଦୋଳନ ତାଙ୍କ ସମୟର ଏକ ଐତିହାସିକ ପଦକ୍ଷେପ । ଭୂଦାନ ଆନ୍ଦୋଳନକୁ ସମର୍ଥନ ଜଣାଇ ସଦାଶିବ ତ୍ରିପାଠୀ ପ୍ରଥମେ ନବରଙ୍ଗପୁରଠାରେ ନିଜର ଏକଶହ ଏକରରୁ ଊର୍ଦ୍ଧ୍ୱ ଜମି ଭୂମିହୀନଙ୍କ ମଧ୍ୟରେ ଦାନ ଓ ବଣ୍ଟନ କରି ଦେଇଥିଲେ । ଗୋତି ପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ନିଜ ଜମିଦାରୀରେ ଗୋତି ଖଟୁଥିବା ମଣିଷମାନଙ୍କୁ ସେ ସବୁଦିନ ପାଇଁ ମୁକ୍ତ କରି ଦେଇଥିଲେ । ତାଙ୍କ ସମୟରେ ସେ ଜଣେ ସଚ୍ଚୋଟ ଓ କର୍ତ୍ତବ୍ୟନିଷ୍ଠ ମନ୍ତ୍ରୀ ଭାବରେ ସରକାରରେ ଥାଇ ଯେଉଁ ଆଇନ ପ୍ରଣୟନ କରୁଥିଲେ, ପ୍ରଥମେ ତାହାକୁ ନିଜେ ପାଳନ କରି କାର୍ଯ୍ୟରେ ପରିଣତ କରୁଥିଲେ । ୧୯୩୮-୧୯୫୫ ମସିହା ପର୍ଯ୍ୟନ୍ତ ସଦାଶିବ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ, ୧୯୫୮-୧୯୬୧ ମସିହା ଯାଏଁ ସର୍ବଭାରତୀୟ କଂଗ୍ରେସ କମିଟିର ସଦସ୍ୟ ଓ କଂଗ୍ରେସର କାର୍ଯ୍ୟକାରୀ କମିଟିର ସଦସ୍ୟ, ଓଡ଼ିଶା ଭୂଦାନ ଯଜ୍ଞ ସମିତିର ସଂପାଦକ, ଓଡ଼ିଶା ରାଜ୍ୟ ରାଜସ୍ୱ ପ୍ରଶାସନର ବିଶେଷଜ୍ଞ ପ୍ରଭୃତି ଭାବରେ ନାନା ପଦପଦବୀରେ ରହି ଓ କାର୍ଯ୍ୟ କରି ଓଡ଼ିଶା ଜାତିର ନମସ୍ୟ ହୋଇପାରିଥିଲେ । ଦେଶ ଓ ଜାତି ପାଇଁ ଜୀବନବ୍ୟାପୀ ସାଧନା ଓ ତପସ୍ୟାର ଫଳସ୍ୱରୂପ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧି ପ୍ରଦାନ କରିଥିଲେ । ଏହି ମହାନାୟକଙ୍କର ସତୁରୀ ବର୍ଷ ବୟସରେ ୧୯୮୦ ମସିହା ସେପ୍ଟେମ୍ବର ମାସ ୯ ତାରିଖରେ ମହାପ୍ରୟାଣ ଘଟିଥିଲା ସତ, ଏ ଜାତି ଓ ଜନତାଙ୍କ ନିମିତ୍ତ ସେ ଯେପରି ଆଜୀବନ ନିଜକୁ ତିଳ ତିଳ କରି ଉତ୍ସର୍ଗ କରିଥିଲେ ସେଥିପାଇଁ କାଳ କାଳକୁ ଓ ଜାତି ନିକଟରେ ସେ ସ୍ମରଣୀୟ ହୋଇ ରହିଥିବେ ।

ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ବ୍ରହ୍ମପୁର-୭

# କର୍ମଯୋଗୀ ସଦାଶିବ

କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

**ଭା**ରତର ମୁକ୍ତି ସଂଗ୍ରାମର କାହାଣୀ ଯେତିକି ରୋମାଞ୍ଚକର, ଯେତିକି ହୃଦୟସ୍ପର୍ଶୀ ଓ ବିସ୍ମୟୋଦ୍ଦୀପକ । ଏହି ଦୀର୍ଘ ସଂଗ୍ରାମର କାହାଣୀ ବିଶ୍ୱ ଇତିହାସରେ ଏକ ଅନନ୍ୟ ଅଧ୍ୟାୟ । ପ୍ରବଳ ପରାକ୍ରାନ୍ତ ବ୍ରିଟିଶ ଶକ୍ତି ବିରୋଧରେ ନିରସ୍ତ୍ର ଭାରତୀୟ ଜନତାର ଦୀର୍ଘକାଳ ଧରି ଯେଉଁ ପ୍ରାଣମୂର୍ଚ୍ଛା ସଂଗ୍ରାମ ତା'ର ତୁଳନା ନାହିଁ । କୋଟି କୋଟି ଭାରତୀୟ ପ୍ରାଣର ମୁକ୍ତି ପାଇଁ ଏହି ସଂଗ୍ରାମରେ ଐକାନ୍ତିକ ଯୋଗଦାନ ଆଜି ଯେ କେହି ଭାରତୀୟଙ୍କୁ ବିସ୍ମିତ କରେ । ଆକୁମାରୀ ହିମାଚଳ ବିଶାଳ ଭାରତର ଅଗଣିତ ବ୍ୟାକୁଳ ପ୍ରାଣକୁ ଐକ୍ୟ ସୂତ୍ରରେ ବାନ୍ଧି ଧରିବାରେ ମହାତ୍ମା ଗାନ୍ଧୀଙ୍କ କାଉଁରୀମନ୍ତ୍ର ଫଳବତୀ ହୋଇଥିଲା ସେ ଦିନ, ଯେଉଁଦିନ ଭାରତର ଆକାଶରେ ସିନ୍ଦୂରାଫାଟି ସ୍ୱାଧୀନତାର ନବୀନ ସୂର୍ଯ୍ୟୋଦୟ ହୋଇଥିଲା । ଓଡ଼ିଶାର ଉପାନ୍ତରେ ଆଦିବାସୀ ଅଧୁଷିତ ତତ୍କାଳୀନ କୋରାପୁଟ ଜିଲ୍ଲାରେ ମଧ୍ୟ ଗାନ୍ଧିଜୀଙ୍କର ମନ୍ତ୍ରଦୀକ୍ଷା ଗ୍ରହଣ କରିବାକୁ ଶହ ଶହ ସଂଖ୍ୟାରେ ଆଦିବାସୀ ଆଗଭର ହୋଇ ଆସିଥିଲେ । ମୁକ୍ତି ସୈନିକ ହେବାପାଇଁ ଏହି ଅଞ୍ଚଳରେ ଆଦିବାସୀଙ୍କ ମଧ୍ୟରେ ଯେଉଁ ଉଦ୍ଦୀପନା ସୃଷ୍ଟି ହୋଇଥିଲା, ତାହା ଆଜି କଳ୍ପନା କରିହେବ ନାହିଁ ।

୧୯୨୦-୨୧ ମସିହାରେ ଗାନ୍ଧିଜୀ ତାଙ୍କର ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ଓଡ଼ିଶାରେ ମଧ୍ୟ ଏହି ଆନ୍ଦୋଳନର ପ୍ରତିଧ୍ୱନି ତୀବ୍ରତର ହୋଇ ଉଠିଥିଲା । ସେତେବେଳର ଓଡ଼ିଶା କଂଗ୍ରେସରେ ନେତୃତ୍ୱ ନେଇଥିଲେ ପଣ୍ଡିତ ଗୋପବନ୍ଧୁ ଦାସ । ସେତେବେଳେ ଗଞ୍ଜାମ ଓ କୋରାପୁଟ ଜିଲ୍ଲା ଦୁଇଟି ମାଡ୍ରାସ ପ୍ରେସିଡେନ୍ସିର ଅନ୍ତର୍ଭୁକ୍ତ ଥିଲା ଏବଂ କୋରାପୁଟ ଥିଲା ବିଶାଖାପାଟଣା ଜିଲ୍ଲାର ମାଳ ଅଞ୍ଚଳ । ସେତେବେଳକୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଦାବି କରି ଉତ୍କଳ ସମ୍ମିଳନୀ କାର୍ଯ୍ୟତତ୍ପର ହୋଇ ଉଠିଥାଏ । ଅତଏବ ଦୁଇଟି ଦିଗରେ ଓଡ଼ିଆ ଭାଷାଭାଷୀଙ୍କୁ ସଂଗ୍ରାମରତ ରହିବାକୁ ପଡୁଥାଏ । ୧୯୩୦ ମସିହାରେ ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ଗାନ୍ଧିଜୀଙ୍କର ଡାକରାରେ ଦେଶର ନାନା ସ୍ଥାନରେ ସମୁଦ୍ର ଉପକୂଳରେ ସତ୍ୟାଗ୍ରହୀମାନେ ଆଇନ ଅମାନ୍ୟ କରି ଲୁଣ ମାରିବାକୁ ବାହାରି ପଡ଼ିଥିଲେ । କୋରାପୁଟ ଅଞ୍ଚଳରୁ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ନେତୃତ୍ୱରେ ବହୁ ସତ୍ୟାଗ୍ରହୀ ଗଞ୍ଜାମକୁ ଯାଇ ଲୁଣ ମାରିଥିଲେ ।

କୋରାପୁଟ ଅଞ୍ଚଳରେ ଜାତୀୟ କଂଗ୍ରେସର ସଭ୍ୟ ହୋଇ ବହୁ ଲୋକ ସ୍ୱାଧୀନତା ସଂଗ୍ରାମରେ ସୈନିକ ହୋଇଥିଲେ ହେଁ ତିନିଜଣ ସେନାପତିଙ୍କ ନେତୃତ୍ୱରେ ସମସ୍ତେ ପରିଚାଳିତ ହେଉଥିଲେ । ଏହି ତିନିଜଣ ହେଲେ ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଏବଂ ସଦାଶିବ ତ୍ରିପାଠୀ । ସ୍ୱର୍ଗୀୟ ବିଶ୍ୱାସରାୟ ଏ ଅଞ୍ଚଳରେ ଗାନ୍ଧୀ ବିଚାରଧାରାର ପ୍ରବର୍ତ୍ତକ ଥିଲେ । ଅନେକ ଲୋକ ତାଙ୍କ ନେତୃତ୍ୱକୁ ସ୍ୱୀକାର କରି କଂଗ୍ରେସରେ ଯୋଗ ଦେଇଥିଲେ । ୧୯୩୬ ମସିହା ଏପ୍ରିଲ୍ ପହିଲା ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା ପରେ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଏକମାତ୍ର ଲକ୍ଷ୍ୟ ହୋଇ ପଡ଼ିଲା ଭାରତର ସ୍ୱାଧୀନତା । ଏତିକିବେଳକୁ ସଦାଶିବ ତ୍ରିପାଠୀ ଜାତୀୟ କଂଗ୍ରେସର ସଭ୍ୟ ହୋଇ ସାରିଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ କୋରାପୁଟ ଅଞ୍ଚଳରେ ତାଙ୍କର ଜନଜାଗୃତି ସଫଳ ହୋଇ ସାରିଥିଲା । ଉପରୋକ୍ତ ତ୍ରିମୂର୍ତ୍ତିଙ୍କ ମଧ୍ୟରେ ସ୍ୱାଧୀନତା ପରବର୍ତ୍ତୀ କାଳରେ ସଦାଶିବ ତ୍ରିପାଠୀ ହିଁ ଦୀର୍ଘକାଳ ଧରି ଓଡ଼ିଶାର ଚଳନ୍ତି ରାଜନୀତିରେ ସକ୍ରିୟ ହୋଇ ପାରିଥିଲେ ।

ଗାନ୍ଧିଜୀ ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନର ଡାକରା ଦେଇଥିଲେ । ସେତେବେଳର ସଂଗ୍ରାମୀ ସଦାଶିବ ତ୍ରିପାଠୀ ଓ ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ନେତୃତ୍ୱରେ ନବରଙ୍ଗପୁର ତାଲୁକାରେ ଇଂରେଜ ବିରୋଧୀ ସଭାସମିତିମାନ ଚାଲିଥାଏ । ସଦାଶିବ ଏହି ଅଞ୍ଚଳର ଅନ୍ୟତମ ଆଦିବାସୀ ନେତା ସନୁ ମାଝୀଙ୍କୁ ସାଙ୍ଗରେ ଧରି ଗାଁ ଗାଁ ବୁଲି ଲୋକଙ୍କୁ ମତାଇଲେ । ପୋଲିସ୍ ରିପୋର୍ଟରୁ ଜଣାଯାଏ ଯେ ସଦାଶିବ ଓ ଲକ୍ଷ୍ମୀଚନ୍ଦ୍ର ସେହି ଅଞ୍ଚଳରେ ଉତ୍ତେଜନା ସୃଷ୍ଟି କରୁଥାନ୍ତି । 'Sadasiva Tripathy, Laxmi Chandra

Das, Md. Baji, G. Ananji Rao and Sadananda Mohanty are most dangerous' (Police Intelligence report, 1942) ୧୯୪୨ର ଆନ୍ଦୋଳନ ଏତେ ତୀବ୍ର ହୋଇ ଉଠିଥିଲା ଯେ ସେହି ବର୍ଷ ଅଗଷ୍ଟ ୨୪ ତାରିଖ ଦିନ ତୁରୀ ନଦୀ କୂଳରେ ସଂଗ୍ରାମୀଙ୍କ ଏକ ସମାବେଶ ଉପରେ ପୋଲିସ୍ ଗୁଳିଚାଳନା କରିଥିଲେ ଏବଂ ଜଣାଯାଏ ୧୯ ଜଣ ସଂଗ୍ରାମୀ ଶହୀଦ୍ ହୋଇଗଲେ । ଆଦିବାସୀମାନଙ୍କୁ ଏକାଠି କରି ଇଂରେଜ ବିରୋଧରେ ସ୍ୱର ଉତ୍ତୋଳନ କରିବାରେ ସଦାଶିବ ତ୍ରିପାଠୀ ହିଁ ମୁଖ୍ୟ କର୍ଣ୍ଣଧାର ଥିଲେ ।

ବ୍ରହ୍ମପୁର ଜେଲ୍‌ରେ ଆଦିବାସୀ ନେତା ଲକ୍ଷ୍ମଣ ନାଏକଙ୍କୁ ଫାଶି ଦିଆଗଲା ବେଳକୁ ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ବ୍ରହ୍ମପୁର ଜେଲ୍‌ରେ ବନ୍ଦୀ ଥାଆନ୍ତି । ଏମାନେ ଏକତ୍ର ହୋଇ ତାଙ୍କର ଫାଶି ଆଦେଶର ପୁନଃ ବିଚାର କରିବା ପାଇଁ ପାଟଣା ହାଇକୋର୍ଟରେ ଅପିଲ୍ କରିବାକୁ ଯୋଜନା କରିଥିଲେ ଏବଂ ତଦନୁସାରେ ଉମାଚରଣ ପଟ୍ଟନାୟକ ଓ ରାଧାଚରଣ ଦାସ କୋର୍ଟରେ ଅପିଲ୍ ଦାଖଲ କରିଥିଲେ । ମାତ୍ର ଏହାର ବିଚାର ହେବା ପୂର୍ବରୁ ୧୯୪୩ ମସିହା ମାର୍ଚ୍ଚ ୨୯ ତାରିଖ ଦିନ ତାଙ୍କୁ ଫାଶୀ ଦିଆଗଲା । ଏହା ପୂର୍ବରୁ ଜେଲ୍ କର୍ତ୍ତୃପକ୍ଷ ଲକ୍ଷ୍ମଣ ନାଏକଙ୍କୁ ଜଣାଇଲେ ଉପରୋକ୍ତ ତିନିଜଣ ତାଙ୍କୁ ସାକ୍ଷାତ କରିବାକୁ ଚାହୁଁଛନ୍ତି । କିନ୍ତୁ ରାଧାକୃଷ୍ଣ ବିଶ୍ୱାସରାୟ ଓ ରାଧାମୋହନ ସାହୁ ଏତେ ମ୍ରିୟମାଣ ହୋଇପଡ଼ିଥିଲେ ଯେ ସେ ଦୁହେଁ ଲକ୍ଷ୍ମଣ ନାଏକଙ୍କୁ ସାକ୍ଷାତ କରିବାକୁ ସାହସ କରିପାରିନଥିଲେ । କିନ୍ତୁ **ସଦାଶିବ ତ୍ରିପାଠୀ ମନରେ ବଳ ସଂଗ୍ରହ କରି ଲକ୍ଷ୍ମଣ ନାଏକଙ୍କ ପ୍ରକୋଷ୍ଠରେ ପ୍ରବେଶ କରିଥିଲେ । ଲକ୍ଷ୍ମଣ ନାଏକଙ୍କ ମୁହଁରେ ଦୁଃଖର ଲେଶ ମାତ୍ର ଚିହ୍ନ ନଥିଲା । ସେ ହସି କହିଥିଲେ, 'ମୋର ଅନେକ ଭାଇ ପ୍ରାଣ ବଳି ଦେଇଛନ୍ତି । ଅନେକେ ଜେଲ୍‌ରେ ସଢୁଛନ୍ତି । ମୋର ଦୁଃଖ ଯେ ମୁଁ ସ୍ୱରାଜ ଦେଖି ପାରିଲି ନାହିଁ । ସେଇତକ ମୋର ଦୁଃଖ ।'**

୧୯୪୭ ମସିହାରେ ଦେଶ ସ୍ୱାଧୀନ ହେଲା । କିନ୍ତୁ ଏହାର ବହୁ ପୂର୍ବରୁ ପ୍ରାକ୍ ସ୍ୱାଧୀନତା କାଳରେ ମହାତ୍ମା ଗାନ୍ଧୀଙ୍କର ଓଡ଼ିଶା ଆଗମନ ବେଳକୁ ସଦାଶିବ ତ୍ରିପାଠୀ ପ୍ରତ୍ୟକ୍ଷ ରାଜନୀତିରେ ପ୍ରବେଶ କରିସାରିଥିଲେ । ଏଇ ଏକ ଶତାବ୍ଦୀ ଶେଷ ହେବାକୁ ଯାଉଛି । ତାଙ୍କର ଜନ୍ମ ହୋଇଥିଲା ୧୯୧୦ ମସିହା ଏପ୍ରିଲ ୨୧ ତାରିଖ ଦିନ ତତ୍କାଳୀନ ନବରଙ୍ଗପୁର ତାଲୁକାରେ ଏକ ଅନାମଧେୟ କ୍ଷୁଦ୍ର ପଲ୍ଲୀରେ । ତାଙ୍କ ପିତାଙ୍କ ନାମ ରାମଚନ୍ଦ୍ର ତ୍ରିପାଠୀ । କିନ୍ତୁ କକା ଲିଙ୍ଗରାଜ ତ୍ରିପାଠୀ ତାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କଲାପରେ ସେ ତାଙ୍କ ପୁତ୍ର ରୂପେ ପରିଚିତି ଲାଭ କରିଥିଲେ । ନବରଙ୍ଗପୁରର ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ପରେ ଜୟପୁର ଉଚ୍ଚଇଂରାଜୀ ବିଦ୍ୟାଳୟ ଥିଲା ତାଙ୍କର ଶିକ୍ଷାସ୍ଥଳୀ । ଏହାପରେ ସେ ଜୟପୁରରେ ଶିକ୍ଷକତା ଆରମ୍ଭ କରିଥିଲେ । ଅଳ୍ପଦିନ ଭିତରେ ଜଣେ ଦକ୍ଷ ଶିକ୍ଷକ ରୂପେ ତାଙ୍କର ଖ୍ୟାତି ବଢ଼ି ଯାଇଥିଲା । ଶିକ୍ଷକତା କରୁଥିବା ଅବକାଶରେ ସେ ଶିକ୍ଷକ ତାଲିମ ନେବାପାଇଁ ବ୍ରହ୍ମପୁର ଯାଇଥିଲେ । ଏହି ସମୟରେ ସେ ଗାନ୍ଧିଜୀଙ୍କୁ ଦର୍ଶନ କରିବା ସୁଯୋଗ ପାଇଥିଲେ । ଗାନ୍ଧୀଙ୍କୁ ଦର୍ଶନ କରିବା ପରେ ତାଙ୍କ ଭିତରେ ଏକ ବିରାଟ ପରିବର୍ତ୍ତନ ସଂଘଟିତ ହୋଇଥିଲା । ସେ ତାଙ୍କର ପୋଷାକ ପରିବର୍ତ୍ତନ କରି ଖଦୀ ପିନ୍ଧିବା ଆରମ୍ଭ କରିଥିଲେ । ଲଣ୍ଡିତ ମସ୍ତକ ହୋଇ ଖଦୀ ପିନ୍ଧି ସେ ଗାଁକୁ ଯେତେବେଳେ ଫେରିଥିଲେ ଲୋକେ ତାଙ୍କୁ ଦେଖିବା ପାଇଁ ଦୌଡ଼ି ଆସିଥିଲେ । ସେହି ସମୟକୁ ଗାନ୍ଧିଜୀଙ୍କ ନେତୃତ୍ୱରେ ଜାତୀୟ କଂଗ୍ରେସର ସିଂହନାଦ ଭାରତର କୋଣେ ଅନୁକୋଣେ ଚହଳ ସୃଷ୍ଟି କରିଥାଏ । ସଦାଶିବ ଆନ୍ଦୋଳନରେ ଝାସ ଦେଲେ । ଇଂରେଜ ବିରୋଧରେ ଆନ୍ଦୋଳନକୁ ତୀବ୍ରତର କରିବା ପାଇଁ ସେ କୋରାପୁଟର ଗାନ୍ଧୀ ରାଧାକୃଷ୍ଣ ବିଶ୍ୱାସରାୟ, ରାଧାକୃଷ୍ଣ ସାହୁ, ଲକ୍ଷ୍ମୀଧର ଦାସ, ମାଧବ ପ୍ରଧାନୀ ପ୍ରଭୃତିଙ୍କ ସହ ଅଣ୍ଟା ଭିଡ଼ି ବାହାରି ପଡ଼ିଥିଲେ । ଥରେ ସଂଗ୍ରାମରେ ଝାସ ଦେଲାପରେ ଆଉ ପଛକୁ ଫେରି ଚାହିଁବାର ଅବକାଶ ନଥିଲା ।

ସଦାଶିବଙ୍କର ନେତୃତ୍ୱରେ ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନ ପାପଡ଼ାହାଣ୍ଡି ଅଞ୍ଚଳରେ ତୀବ୍ରତର ହୋଇଥିଲା । ପାପଡ଼ା ହାଣ୍ଡିଠାରେ ପୋଲିସ୍‌ର ଗୁଳିଚାଳନାରେ ବହୁ ସଂଗ୍ରାମୀ ମୃତାହତ ହୋଇଥିଲେ । ଅନେକେ କାରାବରଣ କରିଥିଲେ । ଏହା ଥିଲା ଇଂରେଜ ଶାସନର ଏକ କଳଙ୍କିତ ଅଧ୍ୟାୟ । ଭୂଦାନ ଆନ୍ଦୋଳନରେ ମଧ୍ୟ ସଦାଶିବଙ୍କ ଭୂମିକା ଅବିସ୍ମରଣୀୟ । କିଛିକାଳ ସେ ଭୂଦାନ ଯଜ୍ଞ ସମିତିର କୋରାପୁଟ ଅଞ୍ଚଳ ପାଇଁ ସଂପାଦକ ନିଯୁକ୍ତ ହୋଇଥିଲେ ।

ପ୍ରାକ୍ ସ୍ୱାଧୀନତା କାଳରୁ ଅର୍ଥାତ୍ ୧୯୩୭ ମସିହାଠାରୁ ସଦାଶିବ ଥିଲେ ଏ ଅଞ୍ଚଳର ନିର୍ବାଚିତ ପ୍ରତିନିଧି । ଦେଶର ସ୍ୱାଧୀନତା ଲାଭ ପରେ ୧୯୫୨, ୧୯୫୭, ୧୯୬୧, ୧୯୬୭ରେ ନବରଙ୍ଗପୁର ଓ ଉମରକୋଟ ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ଓଡ଼ିଶାର ରାଜସ୍ୱ ଶାସନ ଉପରେ ତାଙ୍କର ଦଖଲ ଥିଲା । ଓଡ଼ିଶା ଜମିଦାରୀ ଉଚ୍ଛେଦ ଆଇନ ଓ ଓଡ଼ିଶା ଭୂସଂସ୍କାର ଆଇନ ତାଙ୍କର ରାଜସ୍ୱ ମନ୍ତ୍ରୀ ଥିବା କାଳର ଐତିହାସିକ ପଦକ୍ଷେପ । ୧୯୩୮ରୁ ୧୯୫୫ ମସିହା ପର୍ଯ୍ୟନ୍ତ ସେ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ଥିଲେ । ନିର୍ବାଚିତ ପ୍ରତିନିଧି ରୂପେ ସେ ଓଡ଼ିଶା ବିଧାନସଭାକୁ ପ୍ରେରିତ ହୋଇ ସବୁ ସମୟରେ ରାଜସ୍ୱ ମନ୍ତ୍ରୀ ରୂପେ ଦକ୍ଷତାର ସହିତ କାର୍ଯ୍ୟଭାର ତୁଲାଇ ଥିଲେ । ରାଜସ୍ୱ ବିଭାଗ ବ୍ୟତୀତ ଯୋଗାଣ, ପରିବହନ, ଅବକାରୀ, ଉନ୍ନୟନ, ଜଙ୍ଗଲ, ଖଣି ଓ

ଭୂତତ୍ତ୍ୱ, ଯୋଜନା ଓ ସମନ୍ୱୟ ବିଭାଗର ମନ୍ତ୍ରିତ୍ୱ ମଧ୍ୟ ତାଙ୍କୁ ବିଭିନ୍ନ ସମୟରେ ସମ୍ଭାଳିବାକୁ ପଡ଼ିଥିଲା । ପରିଶେଷରେ ୧୯୬୫ ମସିହା ଫେବୃଆରୀ ୨୧ ତାରିଖରେ ସେ ଓଡ଼ିଶାର ୫ମ ମୁଖ୍ୟମନ୍ତ୍ରୀ ରୂପେ (ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ ପ୍ରଥମ ମୁଖ୍ୟମନ୍ତ୍ରୀ) ରୂପେ ଶପଥ ଗ୍ରହଣ କରି ୧୯୬୭ ମସିହା ମାର୍ଚ୍ଚ ୮ ତାରିଖ ପର୍ଯ୍ୟନ୍ତ କାର୍ଯ୍ୟଭାର ତୁଲାଇଥିଲେ ।

ଓଡ଼ିଶା ରାଜନୀତିରେ ସଦାଶିବ ତ୍ରିପାଠୀଙ୍କର ଘଟଣାବହୁଳ ଜୀବନ ଏକ ନିଷ୍କଳଙ୍କ ଅଧ୍ୟାୟ । ଖୁବ୍ କମ୍ ବ୍ୟକ୍ତି ରାଜନୀତିରେ ଏଭଳି ନିଷ୍ଠାପରତା ଓ ନିଃସ୍ୱାର୍ଥପରତା ପ୍ରଦର୍ଶନ କରିଛନ୍ତି । ଜଣେ ଲୋକପ୍ରିୟ, ନିର୍ମଳ ବ୍ୟକ୍ତିତ୍ୱସଂପନ୍ନ, ସ୍ୱଚ୍ଛ ଶାସନ ଯୋଗାଇଥିବା ମୁଖ୍ୟମନ୍ତ୍ରୀ ରୂପେ ତାଙ୍କର ଅତୁଳନୀୟ ଭାବମୂର୍ତ୍ତି ସାରା ରାଜନୈତିକ ଜୀବନକୁ ଉଦ୍‌ଭାସିତ କରିଥାଏ । ସଦାଶିବ କିଛିକାଳ ବିରୋଧୀ ଦଳର ନେତା ରୂପେ ମଧ୍ୟ ସମସ୍ତଙ୍କର ପ୍ରିୟଭାଜନ ହୋଇ ପାରିଥିଲେ । ଜଣେ ମିଷ୍ଟଭାଷୀ ସରଳ ନିରାଡ଼ମ୍ବର ମଣିଷ ହିସାବରେ ଓଡ଼ିଶା ରାଜନୀତିରେ ସେ ଥିଲେ ଜଣେ ଅସାଧାରଣ ବ୍ୟକ୍ତିତ୍ୱ । ରାଜନୀତିରେ ଝାସ ଦେଇ ସଦାଶିବ ପୈତୃକ ସଂପତ୍ତିରୁ କିଛି ହରାଇଛନ୍ତି ସିନା ସଂପତ୍ତି କରିନାହାନ୍ତି । ରାଜନୀତି କ୍ଷେତ୍ରରେ ଏକ ବିରଳ ଦୃଷ୍ଟାନ୍ତ ସଦାଶିବ ।

ଓଡ଼ିଶା ରାଜନୀତି କ୍ଷେତ୍ରରେ କଳଙ୍କିତ ଅଧ୍ୟାୟର ପାଦ ପଡୁ ପଡୁ ତାଙ୍କୁ କଂଗ୍ରେସ ଛାଡ଼ିବାକୁ ପଡ଼ିଥିଲା । ସେ ସମୟ ଥିଲା ଦେଶ ସେବାର କାଳ । ସେବା ମନୋବୃତ୍ତି ନେଇ ଉତ୍ସର୍ଗୀକୃତ ଭାବରେ ସଦାଶିବଙ୍କ ଭଳି ବ୍ୟକ୍ତି ନିଜସ୍ୱ ସୁଖସୁବିଧାକୁ ଜଳାଞ୍ଜଳି ଦେଇ ରାଜନୀତି କରିବାକୁ ଗୋଡ଼ ବଢ଼ାଇଥିଲେ । ସୁଖ ସମ୍ଭୋଗ ତାଙ୍କର କାମନା ନଥିଲା । ତେଣୁ ଏ ପ୍ରକାର ଦୁର୍ବଳତାକୁ ନେଇ ସ୍ୱାର୍ଥାନ୍ଧ ମଣିଷମାନେ ରାଜନୀତି କ୍ଷେତ୍ରରେ ପାଦ ଥାପୁ ଥାପୁ ସଦାଶିବ ସଂପୂର୍ଣ୍ଣ ରୂପେ ରାଜନୀତିରୁ ସନ୍ନ୍ୟାସ ନେଲେ । ସଦାଶିବଙ୍କ ଶାସନ କାଳ ଓଡ଼ିଶାର ରାଜନୈତିକ ଇତିହାସରେ ଏକ ଗୌରବୋଜ୍ଜ୍ୱଳ କାଳ । ତାଙ୍କ ଶାସନକାଳରେ ଓଡ଼ିଶାରେ ଦୁଇ ଦୁଇଟି ବିଶ୍ୱବିଦ୍ୟାଳୟ ସମ୍ବଲପୁର ଓ ବ୍ରହ୍ମପୁରଠାରେ ପ୍ରତିଷ୍ଠିତ ହୋଇଥିବା ଏକ ଐତିହାସିକ ପଦକ୍ଷେପ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦକ୍ଷିଣ ଓଡ଼ିଶା ପ୍ରତି ତାଙ୍କର ସର୍ବଶ୍ରେଷ୍ଠ ଅବଦାନ ରୂପେ ବିଚାର କରାଯାଇପାରେ । ଏତଦ୍‌ବ୍ୟତୀତ ଓଡ଼ିଶାର ଜାତୀୟ ଜୀବନକୁ ସଦାଶିବ ବହୁଦିଗରୁ ଉଦ୍‌ଭାସିତ କରିଯାଇଛନ୍ତି । ଜମିଜମା ସଂକ୍ରାନ୍ତ ବହୁ ଯୁଗାନ୍ତକାରୀ ପଦକ୍ଷେପମାନ ନେଇ ସେ ଓଡ଼ିଶାର କୃଷକକୁଳ ନିକଟରେ ଅବିସ୍ମରଣୀୟ ହୋଇ ରହିବେ ।

ତାଙ୍କର ବ୍ୟସ୍ତତା ବହୁଳ ଜୀବନ ସବୁବେଳେ ବହୁ କାର୍ଯ୍ୟକ୍ରମରେ ଭରପୂର ରହୁଥିଲା । କୋରାପୁଟକୁ ସେ ବାରମ୍ବାର ଆସିଛନ୍ତି ସରକାରୀ ଗସ୍ତରେ । କିନ୍ତୁ ମୁହୂର୍ତ୍ତଟିଏ ସେ ନିଜ ପାଇଁ ବ୍ୟୟ କରିପାରି ନାହାନ୍ତି । ଏହାର ଦୃଷ୍ଟାନ୍ତ ସ୍ୱରୂପ ଗୋଟିଏ ଘଟଣାର ଉଲ୍ଲେଖ କରୁଛି । ଶାବର ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ବିଜେକଲା ପରେ ବହୁବାର ତାକୁ ଆମେ ନିବେଦନ କରିଛୁ । ସେ ସବୁବେଳେ କହିଥାନ୍ତି, 'ମୁଁ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଯିବି ।' କିନ୍ତୁ ବ୍ୟସ୍ତବହୁଳ କାର୍ଯ୍ୟକ୍ରମ ଭିତରେ ସେ ନିଜ ପାଇଁ ଟିକିଏ ସମୟ ବାହାର କରି ପାରିନାହାନ୍ତି । ତାଙ୍କର ଦେହାନ୍ତ ପ୍ରାୟ ତିନିବର୍ଷ ଥାଏ ସେ କୋରାପୁଟ ଦେଇ ଯିବା ବେଳେ ଖବର ଦିଅନ୍ତି 'ମୁଁ ଜଗନ୍ନାଥଙ୍କୁ ଏଥର ଦର୍ଶନ କରିବାକୁ ଆସିବି ।' କିନ୍ତୁ ସେ ଆସି ପାରି ନାହାନ୍ତି, ଅନ୍ୟ ପାଇଁ କାମ ତାଙ୍କର ବାକିଥାଏ । ଶଯ୍ୟାଶାୟୀ ସଦାଶିବ ଅକସ୍ମାତ୍ ବଡ଼ ପୁଅ ପ୍ରଫୁଲ୍ଲ ବାବୁଙ୍କୁ ଡାକି ପାଖରେ ବସାଇ କହିଲେ 'ଶାବର ଶ୍ରୀକ୍ଷେତ୍ରରେ ମୁଁ ହତଭାଗା ପାଦ ପକାଇ ପାରିଲି ନାହିଁ । ଆଉ ଜଗନ୍ନାଥଙ୍କୁ ଦର୍ଶନ କରିବାର ଭାଗ୍ୟ ମୋର ବୋଧହୁଏ ନାହିଁ । ମୁଁ ଚାଲିଗଲା ପରେ ଆମ ଘରେ ଯେଉଁ ବଡ଼ ହଣ୍ଡାଟି ଅଛି ତାକୁ ନେଇ ଜଗନ୍ନାଥଙ୍କ ଜିମା କରିଦେବୁ ।' ତାଙ୍କ ଦେହାନ୍ତର କିଛିଦିନ ପରେ ପ୍ରଫୁଲ୍ଲ ବାବୁ ସ୍ୱର୍ଗୀୟ ପିତାଙ୍କର ନିର୍ଦ୍ଦେଶ ମୁତାବକ ଉକ୍ତ ହଣ୍ଡାଟିକୁ ଆଣି ମନ୍ଦିରର ସଂପାଦକ ରୂପେ ମୋ ନିକଟରେ ଦାଖଲ କରି ଦେଇ ଉପରୋକ୍ତ ଘଟଣା ସଂପର୍କରେ ମୋତେ କହିଥିଲେ । ମୁଁ ଅନୁଭବ କଲି, ସତେ ଯେମିତି ସେ ମନ୍ଦିରକୁ ଆସିଛନ୍ତି । ମୁଁ ତାଙ୍କ ନିକଟରେ ଠିଆ ହୋଇଛି ଏବଂ ସେ ମୋ ସହିତ କଥାବାର୍ତ୍ତା କରୁଛନ୍ତି । ଏବେ ଉକ୍ତ ବିରାଟକାୟ ହଣ୍ଡାଟି ମନ୍ଦିରରେ ରହିଛି । ଭାରି ଓଜନଦାର ହଣ୍ଡାଟିଏ । ତାକୁ ଦେଖିଲେ ମୋର ସାମ୍ନାରେ ସ୍ୱର୍ଗୀୟ ତ୍ରିପାଠୀ ଠିଆ ହେଲା ପରି ଅନୁଭବ ଆସିଯାଏ ।

ଏଭଳି ଜଣେ କର୍ମଯୋଗୀଙ୍କର କ୍ରାନ୍ତିକାରୀ ଜୀବନର ଅବସାନ ଘଟିଥିଲା ୧୯୮୦ ମସିହା ସେପ୍ଟେମ୍ବର ୯ ତାରିଖ ଦିନ । ଓଡ଼ିଶାର ଜାତୀୟ ଜୀବନକୁ ବହୁଧା ରଙ୍ଗୀନ କରିଥିବା ଏହି ବିଶାଳ ବ୍ୟକ୍ତିସତ୍ତାଟି ଆମ ଗହଣରେ ନାହାନ୍ତି ସତ ତାଙ୍କର ଉଜ୍ଜ୍ୱଳ ମହନୀୟ ମାନବିକ ଚିନ୍ତା, ନିଃସ୍ୱାର୍ଥ ସମାଜ ସେବା, ଅସୀମ ଦେଶଭକ୍ତି ତଥା ମାନବୀୟ ମୂଲ୍ୟବୋଧ କାଳେ କାଳେ ରାଜନୀତି କ୍ଷେତ୍ରରେ ରାହା ଖୋଜୁଥିବା ମଣିଷଙ୍କୁ ଯଥାର୍ଥ ପଥ ଦେଖାଉଥିବ । ମୂଲ୍ୟବୋଧଭିତ୍ତିକ ରାଜନୀତି ପାଇଁ ସେ କାଳେ କାଳେ ଯଶସ୍ୱୀ ହୋଇ ରହିବେ ।

ନିର୍ଦ୍ଦେଶକ
ଆଦିବାସୀ ସଂଗ୍ରହାଳୟ, କୋରାପୁଟ

# ବହୁମୁଖୀ ପ୍ରତିଭାଧାରୀ

ଡକ୍ଟର ବିଜୟ କୁମାର ମିଶ୍ର

**ଡ**କ୍ଟର ସଦାଶିବ ତ୍ରିପାଠୀ ଜଣେ ଉଚ୍ଚକୋଟିର ରାଜନେତା । ରାଜନୈତିକ ଜୀବନ ଭିତରେ ସେ ଦୀର୍ଘ ବାରବର୍ଷ ଓଡ଼ିଶା ଶାସନରେ ମନ୍ତ୍ରୀ ଥିଲେ ତନ୍ମଧ୍ୟରୁ ତାଙ୍କ ମୁଖ୍ୟ ବିଭାଗ ଥିଲା ରାଜସ୍ୱ । ପ୍ରାୟ ଦୁଇ ବର୍ଷ (୧୯୬୫-୬୭) ଡକ୍ଟର ତ୍ରିପାଠୀ ଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ବାସ୍ତବରେ କହିବାକୁ ଗଲେ ସେ ଥିଲେ ଜଣେ ସଚ୍ଚୋଟ ଓ ଦୁର୍ନୀତିମୁକ୍ତ ରାଜନେତା । ଡକ୍ଟର ତ୍ରିପାଠୀ କେବଳ ଯେ ମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ଥିଲେ ତାହା ନୁହେଁ ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ ।

ସଦାଶିବ ତ୍ରିପାଠୀଙ୍କ ଜନ୍ମ ଏକ ଶତାବ୍ଦୀ ତଳେ ଏକ କୁଳୀନ ବ୍ରାହ୍ମଣ ପରିବାରରେ ୨୧ ଏପ୍ରିଲ ୧୯୧୦ ମସିହାରେ । ଏହି ବର୍ଷ ତାଙ୍କ ଜନ୍ମ ଶତାବ୍ଦୀ ବର୍ଷସାରା ପାଳନ ହେବାକୁ ଯାଉଛି । ଡଃ ତ୍ରିପାଠୀ ଯେଉଁ ସମୟରେ ଜନ୍ମଗ୍ରହଣ କରିଥିଲେ ସେହି ସମୟରେ ଭାରତ ଥିଲା ପରାଧୀନ । ମାଟ୍ରିକ୍ ଶିକ୍ଷା ସମାପ୍ତ ପରେ ସେ ଶିକ୍ଷକତା କରିଥିଲେ ଓ ୧୯୨୯ରୁ ୧୯୩୬ ମସିହା ପର୍ଯ୍ୟନ୍ତ ଶିକ୍ଷକ ଥିଲେ । କିନ୍ତୁ ଚାକିରି ଜୀବନ ତାଙ୍କୁ ତୃପ୍ତି ଦେଇପାରିଲା ନାହିଁ । ମହାତ୍ମା ଗାନ୍ଧୀଙ୍କ ଡାକରାରେ ସେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ । ସେତେବେଳର କୋରାପୁଟିଆ ଗାନ୍ଧୀ ରାଧାକୃଷ୍ଣ ବିଶ୍ୱାସରାୟ ଓ ଅନ୍ୟାନ୍ୟ ନେତୃବୃନ୍ଦ ଅବିଭକ୍ତ କୋରାପୁଟ ଜିଲ୍ଲା କଂଗ୍ରେସର ନେତୃତ୍ୱ ନେଉଥାନ୍ତି । ନବରଙ୍ଗପୁର ଅଞ୍ଚଳରେ ସଦାଶିବ ତ୍ରିପାଠୀ, ମହମ୍ମଦ ବାଜୀ, ଲକ୍ଷ୍ମୀଚନ୍ଦ୍ର ଦାସ, ଆନାଜୀ ରାଓ, ସଦାନନ୍ଦ ମହାନ୍ତି, ଜଗନ୍ନାଥ ତ୍ରିପାଠୀ ଓ ବହୁ ନେତା ମାଟି ମା'ର ଡାକରାରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ଶ୍ରୀ ତ୍ରିପାଠୀ ଓ ଅନ୍ୟାନ୍ୟ ନେତୃବୃନ୍ଦଙ୍କ ଡାକରାରେ ଶହ ଶହ ସରଳ, ନିଷ୍କପଟ ଗାଁଗହଳିର ଆଦିବାସୀ କଂଗ୍ରେସରେ ଯୋଗଦେଇ ସ୍ୱାଧୀନତା ଆନ୍ଦୋଳନକୁ ତୀବ୍ର କରିଥିଲେ । ସଦାଶିବ ତ୍ରିପାଠୀ ସେତେବେଳର ଅଗମ୍ୟ ଦୁର୍ଗମ ରାସ୍ତାରେ ପାଦରେ ଚାଲି ଚାଲି ଲୋକଙ୍କ ଆଗରେ ପ୍ରଚାର କରିଥିଲେ ଗାନ୍ଧିଜୀଙ୍କ ବାର୍ତ୍ତା - କୁଟି ଖାଅ, କାଟି ପିନ୍ଧ ଓ ନିଶା ନିବାରଣ । ଆଜି ବି କେତେକ ପଲ୍ଲୀ ଅଞ୍ଚଳରେ ସୂତା କାଟିବା ନିଶା ପରିହାର କରିବା ନୀତି ଦେଖାଯାଏ । ଶ୍ରୀ ତ୍ରିପାଠୀ ୧୯୪୧ ମସିହାରେ ବ୍ୟକ୍ତିଗତ ସତ୍ୟାଗ୍ରହ ପାଳନ କରି ବର୍ଷକ ପାଇଁ କାରାବରଣ କରିଥିଲେ । ତାପରେ ଆରମ୍ଭ ହେଲା ଭାରତଛାଡ଼ ଆନ୍ଦୋଳନର କାମ । ନବରଙ୍ଗପୁର, ପାପଡ଼ାହାଣ୍ଡି, ଡାବୁଗାଁ, ମୈଦଲପୁର, ଉମରକୋଟ, ରାଇଘର ଇତ୍ୟାଦି ଅଞ୍ଚଳରେ ସଦାଶିବ ତ୍ରିପାଠୀ ଓ ଅନ୍ୟାନ୍ୟ ନେତୃବୃନ୍ଦଙ୍କ ସଂଗଠନରେ କଂଗ୍ରେସର ଭାରତଛାଡ଼ ଆନ୍ଦୋଳନ ତୀବ୍ରତର ହେଲା । ଭାରତଛାଡ଼ ଆନ୍ଦୋଳନରେ ଅଂଶଗ୍ରହଣ କରିଥିବାରୁ ତାଙ୍କୁ ୧୯୪୩ରୁ ୧୯୪୫ ମସିହା ଏପରି ଦୁଇବର୍ଷ ସଶ୍ରମ କାରାଦଣ୍ଡ ଭୋଗ କରିବାକୁ ପଡ଼ିଲା । କାରାଦଣ୍ଡ ଭୋଗୁଥିବା (ବ୍ରହ୍ମପୁର ଜେଲ୍‌ରେ) ସମୟରେ ସଦାଶିବ ତ୍ରିପାଠୀଙ୍କ ଦେଖା ହେଲା ଅନ୍ୟ ଏକ ସଂଗ୍ରାମୀ ଲକ୍ଷ୍ମଣ ନାଏକଙ୍କ ସହ । ଭାରତଛାଡ଼ ଆନ୍ଦୋଳନ ସମୟରେ ମାତିଲି ଗୁଳିକାଣ୍ଡରେ ମିଥ୍ୟାରେ ଜଣେ ଫରେଷ୍ଟ ଗାର୍ଡ଼ର ହତ୍ୟା ଅଭିଯୋଗରେ ଲକ୍ଷ୍ମଣ ନାଏକଙ୍କୁ ଫାଶି ଦଣ୍ଡାଦେଶ ହୋଇଥାଏ । ଫାଶି ପୂର୍ବରୁ ବ୍ରହ୍ମପୁର ଜେଲ୍‌ରେ ଛଳ ଛଳ ଆଖିରେ ଶ୍ରୀ ତ୍ରିପାଠୀ ଭେଟିଥିଲେ ଲକ୍ଷ୍ମଣ ନାଏକଙ୍କୁ । ଲକ୍ଷ୍ମଣ ନାଏକ ସଦାଶିବଙ୍କୁ କହିଥିଲେ ସୂର୍ଯ୍ୟଚନ୍ଦ୍ର ଯେବେ ସତ ତେବେ ନିଶ୍ଚୟ ସ୍ୱାଧୀନତା ଆସିବ । ସେହି ସଂଗ୍ରାମୀଙ୍କ କଥା ସତ ହେଲା । ଭାରତର ଅଗଣିତ ସଂଗ୍ରାମୀଙ୍କ ଚେଷ୍ଟା ଓ ଗାନ୍ଧିଜୀଙ୍କ ନେତୃତ୍ୱରେ ମାତୃଭୂମି ଭାରତ ସ୍ୱାଧୀନ ହେଲା ।

ସ୍ୱାଧୀନତା ପରେ ଶ୍ରୀ ତ୍ରିପାଠୀ କଂଗ୍ରେସରେ ହିଁ ରହି ସକ୍ରିୟ ରାଜନୀତିରେ ଯୋଗଦେଲେ । କଂଗ୍ରେସ ଦଳ ତରଫରୁ ନବରଙ୍ଗପୁର ଓ ଉମରକୋଟ ନିର୍ବାଚନ ମଣ୍ଡଳୀରୁ ସେ ୧୯୫୨, ୧୯୫୭, ୧୯୬୧ ଓ ୧୯୬୭ ମସିହାରେ ବିଧାନସଭାକୁ ନିର୍ବାଚିତ

ହୋଇଥିଲେ । ଏହି ସମୟ ମଧ୍ୟରେ ସେ ଦୀର୍ଘ ବାରବର୍ଷ ଧରି ରାଜସ୍ୱ, ଜଙ୍ଗଲ, ଅବକାରୀ ଇତ୍ୟାଦି ବହୁ ଗୁରୁତ୍ୱପୂର୍ଣ୍ଣ ବିଭାଗରେ ମନ୍ତ୍ରୀ ଥିଲେ । ୧୯୬୫ରୁ ୧୯୬୭ ମସିହା ପର୍ଯ୍ୟନ୍ତ ସେ ଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଜଣେ ସଫଳ ପ୍ରଶାସକ । ତାଙ୍କ ସମୟରେ ଗୋତିପ୍ରଥା ଉଚ୍ଛେଦ, ଜମିଦାରୀ ଉଚ୍ଛେଦ ସହ ଭୂସଂସ୍କାର ଆଇନ ପ୍ରଚଳନ ହୋଇଥିଲା । ବିନୋବା ଭାବେଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ୧୯୫୮ରୁ ୧୯୬୧ ମସିହା ପର୍ଯ୍ୟନ୍ତ 'ଓଡ଼ିଶା ଭୂଦାନ ଯଜ୍ଞ ସମିତି'ର ସେ ଥିଲେ ସକ୍ରିୟ ସଦସ୍ୟ । ଶ୍ରୀ ତ୍ରିପାଠୀଙ୍କ ସମୟରେ କଳାହାଣ୍ଡି ଅଞ୍ଚଳର କାଶୀପୁର ଇଲାକା ପ୍ରଶାସନିକ ବ୍ୟବସ୍ଥା ପାଇଁ ଅବିଭକ୍ତ କୋରାପୁଟ ଜିଲ୍ଲାରେ ମିଶି ଥିଲା ।

ସ୍ୱାଧୀନତା ପରେ ଅବିଭକ୍ତ କୋରାପୁଟ ଜିଲ୍ଲାର ଇତିହାସ ସମ୍ବନ୍ଧୀୟ ପୁସ୍ତକ ବା ଗେଜେଟିୟର ନଥିଲା । ଶ୍ରୀ ତ୍ରିପାଠୀଙ୍କ ଅମଳରେ ପ୍ରସ୍ତୁତ ହୋଇଥିଲା। ଅବିଭକ୍ତ କୋରାପୁଟ ଜିଲ୍ଲାର ଗେଜେଟିୟର୍ । ଏହାର ସମ୍ପାଦନା ଦାୟିତ୍ୱରେ ଥିଲେ ବରିଷ୍ଠ ପ୍ରଶାସକ ନୀଳମଣି ସେନାପତି ଓ ଐତିହାସିକ ଡଃ ନବୀନ କୁମାର ସାହୁ । ଶ୍ରୀ ତ୍ରିପାଠୀଙ୍କ ଅମଳରେ ଶ୍ରୀମନ୍ଦିରରେ ଆଲୋକସଜ୍ଜା ହୋଇଥିଲା ।

ସଦାଶିବ ତ୍ରିପାଠୀ ଜଣେ ରାଜନେତା ଥିଲେ ମଧ୍ୟ ଥିଲେ ଶିକ୍ଷାପ୍ରେମୀ । **କେନ୍ଦ୍ର ନେତୃବୃନ୍ଦଙ୍କୁ ଚାପ ପକାଇ ଓଡ଼ିଶାରେ ଆଉ ଦୁଇଟି ବିଶ୍ୱବିଦ୍ୟାଳୟ ଯଥା– ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଇ ପାରିଥିଲେ । ସେ ସେତେବେଳେ ଅସୁସ୍ଥ ଥିଲେ ସୁଦ୍ଧା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାରେ ସଫଳ ଉଦ୍ୟମ କରିଥିଲେ ।** ଶ୍ରୀ ତ୍ରିପାଠୀ ଥିଲେ ସାମବେଦୀୟ ବ୍ରାହ୍ମଣ । ତେଣୁ ସେ ସଂକଳନ କରିଥିଲେ 'ସାମବେଦୀୟ ପୂଜା ପଦ୍ଧତି' ପୁସ୍ତକ । ସ୍ୱାଧୀନତା ପରେ ଅବିଭକ୍ତ କୋରାପୁଟ ଜିଲ୍ଲାର ଇତିହାସ ସମ୍ବନ୍ଧୀୟ ପୁସ୍ତକ ବା ଗେଜେଟିୟର ନଥିଲା । ଶ୍ରୀ ତ୍ରିପାଠୀଙ୍କ ଅମଳରେ ପ୍ରସ୍ତୁତ ହୋଇଥିଲା ଅବିଭକ୍ତ କୋରାପୁଟ ଜିଲ୍ଲାର ଗେଜେଟିୟର୍ । ଏହାର ସମ୍ପାଦନା ଦାୟିତ୍ୱରେ ଥିଲେ ବରିଷ୍ଠ ପ୍ରଶାସକ ନୀଳମଣି ସେନାପତି ଓ ଐତିହାସିକ ଡଃ ନବୀନ କୁମାର ସାହୁ । ଶ୍ରୀ ତ୍ରିପାଠୀଙ୍କ ଅମଳରେ ଶ୍ରୀମନ୍ଦିରରେ ଆଲୋକସଜ୍ଜା ହୋଇଥିଲା ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଶ୍ରୀ ତ୍ରିପାଠୀଙ୍କୁ ସମ୍ମାନସୂଚକ ଡକ୍ଟରେଟ ଉପାଧି ପ୍ରଦାନ କରିଥିଲେ । ଡକ୍ଟର ସଦାଶିବ ତ୍ରିପାଠୀ ଥିଲେ ଏକ ନିଷ୍କଳଙ୍କ ରାଜନେତା । ତାଙ୍କ ଶାସନକାଳ ବା ପରବର୍ତ୍ତୀ ସମୟରେ ତାଙ୍କ ନାମରେ ଦୁର୍ନୀତିର କାଳିମା ଲାଗି ନଥିଲା । ଜୀବନକାଳ ମଧ୍ୟରେ ସେ ଦଳବଦଳ କରି ନଥିଲେ । ସେ ଓଡ଼ିଶାର ଉନ୍ନତିର ସ୍ୱପ୍ନ ଦେଖିଥିଲେ । ଭୋଟସର୍ବସ୍ୱ ରାଜନୀତିରେ କିଛି ଆଖିଦୃଶିଆ ଆଞ୍ଚଳିକ ଅଭିବୃଦ୍ଧିର ଶବ୍ଦ ତାଙ୍କ ଜୀବନ ଅଭିଧାନରେ ଦେଖିବାକୁ ମିଳେ ନାହିଁ । ନିଜର ସଂକୀର୍ଣ୍ଣ ସ୍ୱାର୍ଥ ହାସଲ ପାଇଁ ସେ ରାଜନୈତିକ ହସ୍ତକ୍ଷେପର ବିଶ୍ୱାସ କରୁନଥିଲେ । ଡକ୍ଟର ସଦାଶିବ ତ୍ରିପାଠୀଙ୍କ ଭଳି ଜଣେ ସ୍ୱାଧୀନତା ସଂଗ୍ରାମୀ, ନିଷ୍କଳଙ୍କ ରାଜନେତା, ସଫଳ ପ୍ରଶାସକ, ଜ୍ଞାନୀ, ଗୁଣୀ ଆଦର୍ଶ ରାଜନୀତିଜ୍ଞ, ବହୁମୁଖୀ ପ୍ରତିଭା ଦେଖିବାକୁ ବିରଳ । ତାଙ୍କରି ଜନ୍ମ ଶତାବ୍ଦୀରେ ସେଇ ଯୋଗଜନ୍ମା ପୁରୁଷଙ୍କ ନିକଟରେ ମୋର ଭକ୍ତିପୂତ ପ୍ରଣାମ ।

ମୁଖ୍ୟ ଅଧ୍ୟାପକ, ରାଜନୀତି ବିଜ୍ଞାନ ବିଭାଗ
ନବରଙ୍ଗପୁର ମହାବିଦ୍ୟାଳୟ
ନବରଙ୍ଗପୁର-୭୬୪୦୫୯



# ଏକ ବିରଳ ବ୍ୟକ୍ତିତ୍ୱ ସଦାଶିବ ତ୍ରିପାଠୀ

କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

**ସେ**ଦିନ ଥିଲା ଏପ୍ରିଲ ମାସ ୨୧ ତାରିଖ ୧୯୧୦ ମସିହା । କୋରାପୁଟ ଜିଲ୍ଲାର ନବରଙ୍ଗପୁରଠାରେ ଏକ ସମ୍ଭ୍ରାନ୍ତ ପରିବାରରେ ସଦାଶିବ ତ୍ରିପାଠୀ ଜନ୍ମଗ୍ରହଣ କରିଥିଲେ । ଏହି ଆଦିବାସୀବହୁଳ ଅଞ୍ଚଳ ସେତେବେଳକୁ ଘନ ଜଙ୍ଗଲ ମଧ୍ୟରେ ଥିଲା । ସ୍ୱର୍ଗତଃ ତ୍ରିପାଠୀ ନବରଙ୍ଗପୁରରେ ହିଁ ଶିକ୍ଷାଲାଭ କରି ମାଟ୍ରିକୁଲେସନ୍ ପାସ୍ କଲେ । ମାଟ୍ରିକୁଲେସନ୍ ପାସ୍ କରିବା ପରେ ପରେ ୧୯୨୯ ମସିହାରେ ଶିକ୍ଷକ ଭାବରେ ଚାକିରି ଆରମ୍ଭ କଲେ । ସେ ୧୯୩୬ ମସିହା ପର୍ଯ୍ୟନ୍ତ ଶିକ୍ଷକତା କାର୍ଯ୍ୟ କରିଥିଲେ ।

ଭାରତର ସ୍ୱାଧୀନତା ସଂଗ୍ରାମରେ ସେତେବେଳକୁ ମହାତ୍ମା ଗାନ୍ଧୀଙ୍କର ଆବିର୍ଭାବ ହୋଇ ସାରିଥିଲା । ଭାରତରେ ସ୍ୱାଧୀନତା ପାଇଁ ଜନଆନ୍ଦୋଳନ ତୀବ୍ର ଆକାର ଧାରଣ କରିଥିଲା । ସ୍ୱାଧୀନତା ପାଇଁ ଲଢୁଥିବା ଓଡ଼ିଶାରେ ଭାରତୀୟ ଜାତୀୟ କଂଗ୍ରେସର ଘାଟିଥିଲା କଟକ ସହର । କଟକ ସହରଠାରୁ ନବରଙ୍ଗପୁର ପ୍ରାୟ ୬୦୦ କିଲୋମିଟର ଦୂର । ୧୯୩୪ ମସିହାରେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଦେହାବସାନ ପରେ ପଣ୍ଡିତ ନୀଳକଣ୍ଠ ଦାସ ଓଡ଼ିଶାରେ ପ୍ରମୁଖ ସ୍ତରର ନେତା ଥିଲେ ଏବଂ ୧୯୩୬ ମସିହାରେ ସେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ଅଧ୍ୟକ୍ଷ ଥିଲେ । ୧୯୩୦ ମସିହା ବେଳକୁ ସଦାଶିବ ତ୍ରିପାଠୀ କଂଗ୍ରେସ ସହ ଯୋଡ଼ି ହୋଇଗଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ନେଇ ତାଙ୍କ କାର୍ଯ୍ୟକ୍ରମ ୧୯୩୫ ବେଳକୁ ସ୍ପଷ୍ଟ ହୋଇଗଲା । ସେତେବେଳକୁ ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ସମସ୍ତ ପ୍ରସ୍ତୁତି ସରି ଆସୁଥିଲା । ଉଭୟ ଜାତୀୟ ସ୍ତରର ନେତା ଗୋପବନ୍ଧୁ ଦାସ ଏବଂ ମଧୁସୂଦନ ଦାସଙ୍କର ଦେହାନ୍ତ ହୋଇଯାଇଥାଏ । ଡଃ ମହତାବ ଏବଂ ନୀଳକଣ୍ଠ ଦାସ ଉଭୟ ପ୍ରାଦେଶିକ ସ୍ତରର ନେତା ଭାବେ ଆବିର୍ଭାବ ହୋଇସାରିଥିଲା । କୋରାପୁଟ ଜିଲ୍ଲାର ସ୍ୱାଧୀନତା ସଂଗ୍ରାମୀଙ୍କ ମଧ୍ୟରେ ତିନିଜଣ ନେତା ପ୍ରମୁଖ ସ୍ଥାନ ଅଧିକାର କରିଥିଲେ । ସେମାନେ ହେଲେ ଶହୀଦ ଲକ୍ଷ୍ମଣ ନାଏକ, ରାଧାକୃଷ୍ଣ ବିଶ୍ୱାସରାୟ ଏବଂ ସଦାଶିବ ତ୍ରିପାଠୀ । ଏପ୍ରିଲ ଏକ ତାରିଖ ୧୯୩୬ ମସିହାରେ କଟକ, ପୁରୀ, ବାଲେଶ୍ୱର, ମୟୂରଭଞ୍ଜ, ଗଞ୍ଜାମ ଓ କୋରାପୁଟକୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହୋଇଗଲା । ନିର୍ବାଚନ ପାଇଁ ସମସ୍ତେ ପ୍ରସ୍ତୁତ ହେଉଥିଲେ । ସଦାଶିବ ତ୍ରିପାଠୀଙ୍କୁ ଭାରତୀୟ ଜାତୀୟ କଂଗ୍ରେସର ପ୍ରାର୍ଥୀ ଭାବରେ ନବରଙ୍ଗପୁର ଆସନରୁ ପ୍ରତିଦ୍ୱନ୍ଦିତା କରିବା ପାଇଁ ସ୍ଥିର କରାଗଲା । ଭାରତର ସ୍ୱାଧୀନତା ପୂର୍ବରୁ ଓଡ଼ିଶାର ପ୍ରଥମ ବିଧାନସଭା ପାଇଁ ୧୯୩୭ ମସିହା ଜାନୁଆରୀ ୧୮ ତାରିଖରୁ ୨୩ ତାରଖ ପର୍ଯ୍ୟନ୍ତ ନିର୍ବାଚନ ହେଲା । ଏହି ନିର୍ବାଚନରେ ସଦାଶିବ ତ୍ରିପାଠୀ ବହୁ ଭୋଟରେ ନିର୍ବାଚିତ ହେଲେ । କିନ୍ତୁ ଦୁଃଖ ଓ ପରିତାପର ବିଷୟ ଯେ ନିର୍ବାଚନ ସରିବା ପରେ ପରେ କ୍ଷମତା ପାଇଁ ଗୋଷ୍ଠୀକନ୍ଦଳ ଆରମ୍ଭ ହୋଇଗଲା । ଏହି ନିର୍ବାଚନ ବେଳେ ନୀଳକଣ୍ଠ ଦାସ ଓଡ଼ିଶା ପ୍ରଦେଶ କଂଗ୍ରେସ ସଭାପତି ଥିଲେ । କ୍ଷମତା ପାଇଁ ଦୁଇଟି ମୁଖ୍ୟ ଘଟଣା ଘଟିଲା । କ୍ଷମତା କେନ୍ଦ୍ରରୁ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ହଟାଇବା ପାଇଁ ପ୍ରଥମେ କଂଗ୍ରେସ ସଭାପତି ପଦ ପାଇଁ ନିର୍ବାଚନ କରାଗଲା । ଡଃ ହରେକୃଷ୍ଣ ମହତାବ ଏଥିରେ ପ୍ରତିଦ୍ୱନ୍ଦିତା କରି ୧୩-୧୨ ଭୋଟରେ ବିଜୟଲାଭ କଲେ । ଦ୍ୱିତୀୟରେ କଂଗ୍ରେସ ବିଧାୟକ ଦଳର ଏକ ନିୟମାବଳୀ ପ୍ରଣୟନ କରାଗଲା । ଏଥିରେ ସର୍ତ୍ତ ରହିଲା ଯେ କଂଗ୍ରେସ ବିଧାୟକ ଦଳର ସଦସ୍ୟ ହୋଇ ନଥିବା କୌଣସି ବ୍ୟକ୍ତି ନେତାପଦ ପାଇଁ ପ୍ରତିଦ୍ୱନ୍ଦିତା କରିପାରିବେ ନାହିଁ । ପଣ୍ଡିତ ନୀଳକଣ୍ଠ ଦାସ ବିଧାୟକ ଦଳର ନେତା ନଥିଲେ । ଫଳରେ ସଦାଶିବ ବାବୁ, ରାଧାକୃଷ୍ଣ ବିଶ୍ୱାସରାୟ ପ୍ରଭୃତି ବିଧାୟକମାନେ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ କମିଟିକୁ ଚିଠି ଲେଖି ନୀଳକଣ୍ଠ ଦାସଙ୍କୁ ବିଧାୟକ ଦଳର ନେତାପଦ ପାଇଁ ପ୍ରାର୍ଥୀ ହେବାକୁ ଅନୁମତି ଦେବା ସକାଶେ ଅନୁରୋଧ କଲେ । ଅନୁମତି ତ ମିଳିଲା ନାହିଁ, କିନ୍ତୁ ଏହାର ପରିଣତି ସଦାଶିବ ବାବୁଙ୍କ ବିରୋଧରେ ଗଲା ଏବଂ ସେ ଡଃ ମହତାବଙ୍କ ବିରୋଧୀ ହୋଇଗଲେ । ତା'ଛଡ଼ା ଏଥିପାଇଁ ଡଃ ମହତାବଙ୍କ ନେତୃତ୍ୱରେ ସରକାର ଗଠନ ହେଲାବେଳେ ତାଙ୍କୁ ଆଉ ମନ୍ତ୍ରୀ କରାଗଲା ନାହିଁ ।

ଏ ଭିତରେ ଜାତୀୟ କଂଗ୍ରେସର ଡାକରାରେ କୋରାପୁଟବାସୀଙ୍କୁ ନେତୃତ୍ୱ ଦେଇ ସେ ସତ୍ୟାଗ୍ରହରେ ସାମିଲ ହେଲେ । ଏଥିପାଇଁ ତାଙ୍କୁ ୧୯୪୧ ମସିହାରେ ବର୍ଷକ ପାଇଁ

ବନ୍ଦୀ କରାଗଲା । ତା'ପରେ ପୁଣି ଭାରତଛାଡ଼ ଆନ୍ଦୋଳନରେ ଭାଗ ନେବାରୁ ତାଙ୍କୁ ୧୯୪୩ରୁ ୧୯୪୫ ପର୍ଯ୍ୟନ୍ତ ତାଙ୍କୁ ବନ୍ଦୀ ଜୀବନଯାପନ କରିବାକୁ ପଡ଼ିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସରିଯିବା ପରେ ୧୯୪୬ ମସିହାରେ ଭାରତ ସ୍ୱାଧୀନତା ଲାଭ କରିବା ପୂର୍ବର ଦ୍ୱିତୀୟ ବିଧାନସଭା ପାଇଁ ନିର୍ବାଚନ ଅନୁଷ୍ଠିତ ହୋଇଥିଲା ଏବଂ ସେଥର ମଧ୍ୟ ସଦାଶିବ ତ୍ରିପାଠୀ ନବରଙ୍ଗପୁର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । ତା'ପରେ ପରେ ୧୯୪୭ ଅଗଷ୍ଟ ୧୫ ତାରିଖରେ ଦେଶ ସ୍ୱାଧୀନ ହୋଇଗଲା । ଭାରତର ସ୍ୱାଧୀନତା ପରେ ପରେ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ହେବା ନେଇ ନୂତନ ସମସ୍ୟା ସୃଷ୍ଟି ହେଲା । ଏଥିପାଇଁ ଭାରତ ସରକାର ଶୟଦ୍ ଫଜଲ ଅଲୀଙ୍କ ଅଧ୍ୟକ୍ଷତାରେ ଏକ ତିନି ଜଣିଆ ସୀମା ପୁନର୍ଗଠନ କମିଶନ ଗଠନ କଲେ । ଏଥିରେ ଅନ୍ୟ ଦୁଇଜଣ ସଦସ୍ୟ ହେଲେ ସର୍ଦ୍ଦାର କେ.ଏମ୍. ପାନିକର ଓ ପଣ୍ଡିତ ହୃଦୟନାଥ କୁଞ୍ଜୁର । ଏହା ୧୯୫୪ ମସିହାର ଘଟଣା । ସେହି ସମୟରେ ପଞ୍ଚାନନ ତ୍ରିପାଠୀ, ରାଧାନାଥ ରଥ ଓ ବିଶ୍ୱନାଥ ଦାସ ସୀମା ପୁନର୍ଗଠନ କାର୍ଯ୍ୟରେ ରାୟଗଡ଼ା ଯାଇଥିଲେ । ରାୟଗଡ଼ାର ଗୋପୀନାଥ ବକ୍ସିପାତ୍ରଙ୍କ ଅନୁରୋଧରେ ତାଙ୍କ ଘରେ ମଧ୍ୟାହ୍ନ ଭୋଜନ ଅବସରରେ ଶ୍ରୀ ବିନୋଦ ଲାଲ ପାଢ଼ୀଙ୍କୁ ସେମାନେ ସୀମା ପୁନର୍ଗଠନ କାର୍ଯ୍ୟରେ ସହଯୋଗ କରିବାକୁ କହିଥିଲେ । ସେହି ସମୟରେ ଜୟପୁର ରାଜା ବିକ୍ରମଦେବ ବର୍ମାଙ୍କ ଜାମାତା କୁମାର ବିଦ୍ୟାଧର ସିଂହଦେବ ସୀମା ପୁନର୍ଗଠନ କାର୍ଯ୍ୟର ସଂପୂର୍ଣ୍ଣ ଦାୟିତ୍ୱରେ ଥାଆନ୍ତି । ବିନୋଦଲାଲ ପାଢ଼ୀଙ୍କୁ ତାଙ୍କର ବ୍ୟକ୍ତିଗତ ସହାୟକ ଭାବରେ ନିଯୁକ୍ତି ଦିଆଗଲା । ତାହା ହେଉଛି ମେ ମାସ ଏଗାର ତାରିଖ ୧୯୫୪ ମସିହାର କଥା । ସେହି ଦିନ ହିଁ ଶ୍ରୀ ତ୍ରିପାଠୀ ନବକୃଷ୍ଣ ଚୌଧୁରୀ ମନ୍ତ୍ରିମଣ୍ଡଳରେ ଯୋଗଦେଲେ । ସେ ସୀମା ପୁନର୍ଗଠନ କାର୍ଯ୍ୟରେ ସକ୍ରିୟ ରହି ସୀମା ପୁନର୍ଗଠନ କମିଶନ ସହ ସହଯୋଗ କରୁଥାଆନ୍ତି । ସେହି ସମୟରେ ଶ୍ରୀ ବିନୋଦଲାଲ ପାଢ଼ୀଙ୍କ ସହ ତାଙ୍କର ଆଲୋଚନା ମଧ୍ୟ ହୁଏ । ପରେ ବିନୋଦଲାଲ ପାଢ଼ୀ ସୂଚନା ଓ ଲୋକ ସଂପର୍କ ବିଭାଗରେ ସହାୟକ ଲୋକ ସଂପର୍କ ଅଧିକାରୀ ଭାବରେ ଯୋଗଦେଲେ । ତାଙ୍କୁ ଆନ୍ଧ୍ରବାଲାଙ୍କଦ୍ୱାରା ତେଲୁଗୁମାନଙ୍କୁ ନେଇ ସଭାସମିତି ଇତ୍ୟାଦି କରାଯାଉଥିବା ଖବର ସରକାରଙ୍କୁ ଗୁପ୍ତ ଭାବରେ ଜଣାଇବା ପାଇଁ ରାୟଗଡ଼ା ଜିଲ୍ଲାର ଗୁଣୁପୁରଠାରେ ତାଙ୍କୁ ଅବସ୍ଥାପିତ କରି ଦିଆଗଲା । ସେତେବେଳକୁ ଆନ୍ଧ୍ରପ୍ରଦେଶ ଗଠନ ହୋଇନଥିଲା ଏବଂ ଏଥିପାଇଁ ଆନ୍ଦୋଳନ ଚାଲୁ ରହିଥିଲା ।

ଶ୍ରୀ ପାଢ଼ୀ ଅବିଭକ୍ତ କୋରାପୁଟ ଜିଲ୍ଲାରେ କାର୍ଯ୍ୟରତ ଥିଲାବେଳେ ସଦାଶିବ ତ୍ରିପାଠୀଙ୍କ ସହ ଘନିଷ୍ଠ ସଂପର୍କ ଗଢ଼ି ଉଠିଥିଲା । ସୀମା ପୁନର୍ଗଠନ କାର୍ଯ୍ୟରେ ସମସ୍ତେ ଲାଗି ପଡ଼ିଥିଲେ । ତଥାପି ୧୯୫୫ରେ ସୀମା କମିଶନ ଯେଉଁ ରିପୋର୍ଟ ଦେଲେ ସେଥିରେ ଓଡ଼ିଶାର ଦାବିକୁ ଉପେକ୍ଷା କରାଯାଇଥିଲା । ଏହାର ଫଳସ୍ୱରୂପ ଓଡ଼ିଶାରେ ତୀବ୍ର ଜନଆନ୍ଦୋଳନ ଗଢ଼ି ଉଠିଥିଲା ।

୧୯୫୦ ମସିହା ଜାନୁଆରୀ ୨୬ ତାରିଖରୁ ଭାରତୀୟ ସମ୍ବିଧାନ ଲାଗୁହେଲା । ଭାରତ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହେଲା । **ତା.୨୦.୧୨.୧୯୫୧ରିଖରୁ ତା.୧୫.୦୧.୧୯୫୨ରିଖ ପର୍ଯ୍ୟନ୍ତ ସ୍ୱାଧୀନୋତ୍ତର ଭାରତବର୍ଷରେ ଓଡ଼ିଶାର ପ୍ରଥମବିଧାନସଭା ପାଇଁ ନିର୍ବାଚନ ହୋଇଥିଲା । ସଦାଶିବ ତ୍ରିପାଠୀ କ୍ରମାଗତ ଭାବରେ ୧୯୫୨, ୧୯୫୭, ୧୯୬୧ ଏବଂ ୧୯୬୭ ନିର୍ବାଚନରେ ନିର୍ବାଚିତ ହୋଇଥିଲେ ।** ଏଥିରୁ କେବଳ ୧୯୬୧ରେ ସେ ଉମରକୋଟ ନିର୍ବାଚନ ମଣ୍ଡଳୀରୁ ଏବଂ ବଳକା ନିର୍ବାଚନରେ ନବରଙ୍ଗପୁର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । ଏଥିରୁ ସେ ଅଞ୍ଚଳରେ ତାଙ୍କର ଜନସମର୍ଥନର ସୂଚନା ମିଳେ । **ସେ ୧୯୫୮ରୁ ୧୯୬୧ ପର୍ଯ୍ୟନ୍ତ ଭୂଦାନ ଯଜ୍ଞ ସମିତିର ସଚିବ ଭାବରେ କାର୍ଯ୍ୟ କରିଥିଲେ ।** ଏହାଛଡ଼ା ୧୯୩୧ରୁ ୧୯୫୫ ପର୍ଯ୍ୟନ୍ତ ପ୍ରଦେଶ କଂଗ୍ରେସ କମିଟି କାର୍ଯ୍ୟକାରିଣୀ ସଭ୍ୟ ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ ।

୧୯୫୨ ମସିହା ଫେବୃଆରୀରେ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ସରକାର ଗଠନ ହେଲା । ଏଥିରେ ଶ୍ରୀ ସଦାଶିବ ତ୍ରିପାଠୀ ମନ୍ତ୍ରୀ ଭାବରେ ଯୋଗଦେଇ ରାଜସ୍ୱ, ଅବକାରୀ ଓ ଯୋଗାଣ ବିଭାଗ ଦାୟିତ୍ୱରେ ରହିଲେ । ୧୯୫୪ ମସିହା ମେ ମାସ ୧୧ ତାରିଖରେ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ମନ୍ତ୍ରିମଣ୍ଡଳ ଅଦଳବଦଳ କଲେ ଏବଂ ଏଥିରେ ମଧ୍ୟ ସଦାଶିବ ତ୍ରିପାଠୀ ନିଜ ପଦବୀ ବଜାୟ ରଖିଲେ । ସେପ୍ଟେମ୍ବର ୧୯୫୬ ମସିହା ବେଳକୁ ଡଃ ମହତାବ ବମ୍ବେର ରାଜ୍ୟପାଳ ଥାଆନ୍ତି । କିନ୍ତୁ ଓଡ଼ିଶା ରାଜନୀତିକୁ ସେ ବିଭିନ୍ନ ଭାବରେ ପ୍ରଭାବିତ କରୁଥିଲେ । ଏଥିରେ ନବକୃଷ୍ଣ ଚୌଧୁରୀ ବୀତସ୍ପୃହ ହୋଇ ଇସ୍ତଫା ଦେବାକୁ ଇଚ୍ଛା ପ୍ରକାଶ କଲେ । ପଣ୍ଡିତ ଜବାହରଲାଲ ନେହେରୁ ତାଙ୍କୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ରହିବା ପାଇଁ ଚିଠି ମଧ୍ୟ ଲେଖିଥିଲେ । କିନ୍ତୁ ଶ୍ରୀ ଚୌଧୁରୀ ମୂଲ୍ୟବୋଧ ରାଜନୀତିରେ ବିଶ୍ୱାସ ରଖିଥିଲେ ଏବଂ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଦେଲେ । ତା'ପରେ ତା.୧୯.୧୦.୧୯୫୬ରିଖରେ ଡଃ ମହତାବଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠନ ହେଲା ।

ଡଃ ମହତାବ ୧୯୫୭ ଏବଂ ୧୯୫୯ ମସିହାରେ ପୁଣି ଦୁଇଥର ମୁଖ୍ୟମନ୍ତ୍ରୀ ଭାବରେ ମନ୍ତ୍ରିମଣ୍ଡଳ ଗଠନ କଲେ । କିନ୍ତୁ ଦୁଇଥର ସଦାଶିବ ବାବୁଙ୍କୁ ମନ୍ତ୍ରିମଣ୍ଡଳରେ ନିଆଗଲା ନାହିଁ । ତାହାର କାରଣ ହେଲା ସଦାଶିବ ବାବୁ ୧୯୩୭ ମସିହାରେ ନୀଳକଣ୍ଠ

ଦାସଙ୍କ ସପକ୍ଷରେ ରହି ଜାତୀୟ କଂଗ୍ରେସ କାର୍ଯ୍ୟକାରିଣୀକୁ ପତ୍ର ଲେଖି ଡଃ ମହତାବଙ୍କୁ ବିରୋଧ କରିଥିଲେ । **ଯେତେବେଳେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଜୁନ୍ ମାସ ୧୯୬୧ରେ ସରକାର ଗଠନ ହେଲା ସେ ପୁଣି ଥରେ ରାଜସ୍ୱ, ଅବକାରୀ ଏବଂ ଉନ୍ନୟନ ବିଭାଗର ମନ୍ତ୍ରୀ ରୂପେ ଶପଥ ନେଲେ ।** ତା'ପରେ ବିରେନ ମିତ୍ରଙ୍କ ନେତୃତ୍ୱରେ ଅକ୍ଟୋବର ୧୯୬୩ରେ ଯେଉଁ ମନ୍ତ୍ରିମଣ୍ଡଳ ଗଠନ ହେଲା ସେତେବେଳେ ମଧ ତାଙ୍କ ମନ୍ତ୍ରୀ ପଦ ବଜାୟ ରହିଲା । କିନ୍ତୁ ୧୯୬୪ର ଛାତ୍ର ଆନ୍ଦୋଳନ ଏବଂ ତଦ୍‌ଜନିତ ପରିସ୍ଥିତି ଦୃଷ୍ଟିରୁ ବୀରେନ ମିତ୍ର ଇସ୍ତଫା ଦେଲେ । ସଦାଶିବ ତ୍ରିପାଠୀଙ୍କର ବିଜୁ ପଟ୍ଟନାୟକଙ୍କ ସହ ଅତି ଘନିଷ୍ଠ ସଂପର୍କ ଥିଲା । ଫଳରେ ୧୯୬୫ ମସିହା ଫେବୃଆରୀ ଏକୋଇଶି ତାରିଖ ଦିନ କଂଗ୍ରେସ ବିଧାୟକ ଦଳର ଆନୁଷ୍ଠାନିକ ବୈଠକ ବସି ସଦାଶିବ ତ୍ରିପାଠୀଙ୍କୁ ନିର୍ଦ୍ୱନ୍ଦ୍ୱରେ ନେତା ଭାବେ ନିର୍ବାଚନ କଲେ । ଶ୍ରୀ ତ୍ରିପାଠୀ ସେହିଦିନ ହିଁ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରି ନିଜର ମନ୍ତ୍ରିମଣ୍ଡଳ ଗଠନ କଲେ । କିନ୍ତୁ ଠିକ୍ ପରେ ପରେ କ୍ଷମତା କନ୍ଦଳ ଆରମ୍ଭ ହେଲା । ଫଳରେ ଶ୍ରୀ ତ୍ରିପାଠୀ ଜାତୀୟ କଂଗ୍ରେସ ସଭାପତି ଶ୍ରୀ କାମରାଜ ନାଦରଙ୍କୁ ପତ୍ର ଲେଖି ଜଣାଇ ଦେଲେ ଯେ ନିଜ ମନ୍ତ୍ରିମଣ୍ଡଳର ସହଯୋଗୀମାନଙ୍କ କାର୍ଯ୍ୟକଳାପ ତାଙ୍କ ରାଜନୈତିକ ସାଧୁତା ପ୍ରତି ଆଞ୍ଚ ଆଣୁଛି ଏବଂ ନିଜ ବିବେକାନୁଯାୟୀ ଶାସନ କରିବାରେ ସେ ଅକ୍ଷମ ହେଉଛନ୍ତି । ସେଥିରେ ସେ ଏକଥା ମଧ ଜଣାଇଲେ ଯେ ସେ ନିଜେ ମୁଖ୍ୟମନ୍ତ୍ରୀ ପଦରୁ ଅପସରି ଯିବା ପାଇଁ ତାଙ୍କୁ ଅନୁମତି ଦିଆଯାଉ । ଏଥିରେ କ୍ଷୁବ୍ଧ ହୋଇ ମନ୍ତ୍ରିମଣ୍ଡଳର ୧୨ ଜଣ ସଦସ୍ୟ ଇସ୍ତଫା ପ୍ରଦାନ କଲେ । କିନ୍ତୁ ଦୃଢ଼ ସଂଗଠକ ଶ୍ରୀ କାମରାଜ ନାଦର ବିଦ୍ରୋହୀ ମନ୍ତ୍ରୀମାନଙ୍କୁ ଇସ୍ତଫା ପ୍ରତ୍ୟାହାର ପାଇଁ ନିର୍ଦ୍ଦେଶ ଦେଲେ । ଫଳରେ ଶ୍ରୀ ସଦାଶିବ ତ୍ରିପାଠୀ ତା.୦୮.୦୩.୧୯୬୭ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ପଦରେ ରହିଲେ ।

୧୯୬୭ ମସିହା ଫେବୃଆରୀ ମାସରେ ଚତୁର୍ଥ ବିଧାନସଭା ପାଇଁ ନିର୍ବାଚନ ଅନୁଷ୍ଠିତ ହେଲା । ଏଥିରେ କଂଗ୍ରେସର ୩୧ ଜଣ ବିଧାୟକ ନିର୍ବାଚିତ ହୋଇଥିବାରୁ ସରକାର ଗଠନ କରିପାରିଲେ ନାହିଁ । ଏଣୁ ଶ୍ରୀ ସଦାଶିବ ତ୍ରିପାଠୀ ବିରୋଧୀ ଦଳର ନେତା ଭାବରେ ତା.୧୮.୦୩.୧୯୬୭ରୁ ତା.୨୩.୦୧.୧୯୭୧ ପର୍ଯ୍ୟନ୍ତ ରହିଲେ । ଭାରତୀୟ ଜାତୀୟ କଂଗ୍ରେସ କେନ୍ଦ୍ରରେ ଦୁଇ ଭାଗରେ ବିଭକ୍ତ ହୋଇଗଲା । ମୂଳ କଂଗ୍ରେସରୁ ଓହରିଯାଇ ଜଗଜୀବନ ରାମଙ୍କ ଅଧ୍ୟକ୍ଷତାରେ ଇନ୍ଦିରା କଂଗ୍ରେସର ସୃଷ୍ଟି ହେଲା ଏବଂ ମୂଳ କଂଗ୍ରେସ ଶ୍ରୀ ନିଜଲିଙ୍ଗାପ୍ପାଙ୍କ ଅଧ୍ୟକ୍ଷତାରେ ରହିଲା । ଶ୍ରୀ ସଦାଶିବ ତ୍ରିପାଠୀ ମୂଳ କଂଗ୍ରେସରେ ରହିଗଲେ । ଶ୍ରୀ ତ୍ରିପାଠୀ ମୂଲ୍ୟବୋଧ ଭିତ୍ତିକ ରାଜନୀତିରେ ବିଶ୍ୱାସ ରଖିଥିଲେ ଏବଂ କ୍ଷମତା ପାଇଁ ସାଲିସ୍ କରିବା ତାଙ୍କର ଚରିତ୍ରରେ ନ ଥିଲା । ଏହାପରେ ୧୯୭୧ ମାର୍ଚ୍ଚ ମାସରେ ଯେଉଁ ନିର୍ବାଚନ ହେଲା ସେଥିରେ ଶ୍ରୀ ତ୍ରିପାଠୀ ହବିବୁଲ୍ଲା ଖାଁଙ୍କଠାରୁ ପରାସ୍ତ ହେଲେ । ଶ୍ରୀ ଖାଁ ସ୍ୱତନ୍ତ୍ର ଦଳ ତରଫରୁ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ । ୧୯୭୧ ନିର୍ବାଚନରେ ପରାସ୍ତ ହେବା ତାଙ୍କ ଅବତରଣର ଆରମ୍ଭ । ଏହି ନିର୍ବାଚନ ପାଇଁ ସମ୍ପତ୍ତି ବନ୍ଧକ ରଖି ସେ ନିର୍ବାଚନ ଲଢ଼ିଥିଲେ ଏବଂ ସେଥିରୁ ସେ ମୁକୁଳି ପାରିଲେ ନାହିଁ । ସେ କେବେହେଲେ ନିଜର ପରିବାରର ଲୋକଙ୍କୁ ରାଜନୀତିରେ ପ୍ରବେଶର ସୁଯୋଗ ଦେଇନଥିଲେ ଯଦିଓ ତାଙ୍କର ତିନିପୁଅ ଥିଲେ । ଶେଷରେ ୧୯୮୦ ମସିହାରେ ହାର୍ନିଆ ରୋଗରେ ପୀଡ଼ିତ ଥାଇ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲରେ ପ୍ରାଣତ୍ୟାଗ କଲେ । ତାଙ୍କୁ ସରକାରୀ ଖର୍ଚ୍ଚରେ ନବରଙ୍ଗପୁରରୁ ଜୟପୁର ଜାହାଜ ପଡ଼ିଆ ଏବଂ ସେଠାରୁ ହେଲିକେପ୍ଟର ଯୋଗେ ଭୁବନେଶ୍ୱର ଓ ସେଠାରୁ କଟକ ଅଣାଗଲା ।

**ଓଡ଼ିଶାପ୍ରତି ତାଙ୍କର ଅବଦାନ ହେଉଛି ଯେ ସେ ଓଡ଼ିଶା ରାଜସ୍ୱ ପ୍ରଶାସନର ଜଣେ ଦକ୍ଷ ବ୍ୟକ୍ତି ଥିଲେ । ଓଡ଼ିଶାରେ ଭୂ-ସଂସ୍କାର ଆଇନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ପାଇଁ ପଦକ୍ଷେପ ନେଇଥିଲେ । ତାଙ୍କରି ପ୍ରଚେଷ୍ଟାରେ ଜମିଦାରୀ ଉଚ୍ଛେଦ ଏବଂ ଭୂ-ସଂସ୍କାର ବିଲ୍ ତିଆରି ହୋଇଥିଲା ।** ଓଡ଼ିଶାର ଭୂଦାନ ଆନ୍ଦୋଳନର ସେ ଥିଲେ ଅନ୍ୟତମ ମୁଖ୍ୟନାୟକ । କୋରାପୁଟ ଜିଲ୍ଲାର ଆଦିବାସୀମାନଙ୍କୁ ରାଜନୀତିର ମୁଖ୍ୟସ୍ରୋତକୁ ଟାଣି ଆଣିଥିଲେ । ସ୍ୱାଧୀନତା ସଂଗ୍ରାମ ବେଳେ କୋରାପୁଟ ଜିଲ୍ଲାର ଲୋକମାନଙ୍କୁ ସେଥିରେ ସାମିଲ କରାଇ ପାରିଥିଲେ । ତାଙ୍କରି ମୁଖ୍ୟମନ୍ତ୍ରିତ୍ୱ ସମୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଏବଂ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମେଡ଼ିକାଲ କଲେଜ ପ୍ରତିଷ୍ଠିତ ହୋଇଥିଲା ।

ମୂଲ୍ୟବୋଧ ରାଜନୀତିରେ ଅତୁଟ ବିଶ୍ୱାସ ରଖି ଓଡ଼ିଶାର ମନ୍ତ୍ରୀ ଏବଂ ମୁଖ୍ୟମନ୍ତ୍ରୀ ପଦବୀ ଅଳଙ୍କୃତ କରି ରାଜ୍ୟ ତଥା ଦେଶର ସବୁଠାରୁ ପଛୁଆ ଏବଂ ଆଦିବାସୀ ବହୁଳ ଅବିଭକ୍ତ କୋରାପୁଟ ଜିଲ୍ଲାର ଉନ୍ନତି ପାଇଁ ଆପ୍ରାଣ ଉଦ୍ୟମ କରି ଶେଷ ନିଃଶ୍ୱାସ ତ୍ୟାଗ କରିଥିବା ସ୍ୱର୍ଗତଃ ସଦାଶିବ ତ୍ରିପାଠୀଙ୍କ ରାଜ୍ୟପ୍ରତି ଅବଦାନକୁ ଦୃଷ୍ଟିରେ ରଖି ଶ୍ରୀ ତ୍ରିପାଠୀଙ୍କ ପ୍ରତିମୂର୍ତ୍ତି ଭୁବନେଶ୍ୱରର ଉପଯୁକ୍ତ ସ୍ଥାନରେ ସ୍ଥାପନ କରାଯିବା ସଂଗେସଂଗେ ତାଙ୍କ ନାମରେ ଏକ ମୁଖ୍ୟ ରାସ୍ତାକୁ ନାମିତ କଲେ ତାଙ୍କ ସ୍ମୃତି ପ୍ରତି ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ହେବ ।

ସଂପାଦକ
ଦକ୍ଷିଣ ଓଡ଼ିଶା ଉନ୍ନୟନ ପରିଷଦ
୧୧୨୯, ଭୀମଟାଙ୍ଗୀ, ଭୁବନେଶ୍ୱର

# ଅଲିଭା ତାରକା ସଦାଶିବ

ଡକ୍ଟର ଶ୍ରୀଚରଣ ମହାନ୍ତି

**ଭା**ରତର ମୁକ୍ତି ସଂଗ୍ରାମରେ ଅଗଣିତ ଜନତା ଭାଗନେଇ ଇଂରେଜ ସରକାର କବଳରୁ ଭାରତକୁ ମୁକ୍ତି କରିଥିଲେ । ସଂଗ୍ରାମର ମାର୍ଗ ଭିନ୍ନ ଥିଲେ ବି ଲକ୍ଷ୍ୟ ସମସ୍ତଙ୍କର ଥିଲା ଏକ । ବାପୁଜୀଙ୍କର ଅହିଂସା ମାର୍ଗରେ ଅନୁପ୍ରାଣୀତ କର୍ମୀ ବି ଉତ୍ତର ପର୍ଯ୍ୟାୟରେ ସାମୟିକ ହିଂସାର ବାଟ ଧରିଛନ୍ତି । ଲୋକହତ୍ୟା କରିବା ଉଦ୍ଦେଶ୍ୟ ନଥିଲେ ବି, ଇଂରେଜ ସରକାରରେ ହଇଚଇ ଓ ଅସ୍ଥିରତା ସୃଷ୍ଟି କରିବା ଓ ପ୍ରଶାସନକୁ ବ୍ୟତିବ୍ୟସ୍ତ କରିବା ଲକ୍ଷ୍ୟରେ ୧୯୪୦ ମସିହା ପରେ ପରେ ବହୁ କର୍ମୀ ଅସ୍ଥିର ହୋଇପଡ଼ିଥିଲେ । ବାପୁଜୀଙ୍କ ଅହିଂସା ସଂଗ୍ରାମର କୁହୁକ ମନ୍ତ୍ରରେ ପାଠପଢ଼ା ଛାଡ଼ି ସ୍କୁଲରୁ ସଂଗ୍ରାମକୁ ଡେଇଁ ପଡ଼ିଥିବା ସୁରେନ୍ଦ୍ର ଦ୍ୱିବେଦୀ, ସୁରେନ୍ଦ୍ର ପଟ୍ଟନାୟକ, ବିନୋଦ କାନୁନଗୋ ଜାତୀୟ ସଂଗ୍ରାମରେ ଝାସ ଦେଇଥିଲେ । ମାତ୍ର ୧୯୪୨ ବେଳକୁ ଆନ୍ଦୋଳନ ଏପରି ହେଲା ଯେ, ସୁରେନ୍ଦ୍ର ଦ୍ୱିବେଦୀଙ୍କୁ ବିପ୍ଳବୀ ଦ୍ୱିବେଦୀ ଘୋଷଣା କରି ଗିରଫ କରିବା ପାଇଁ ୱାରେଣ୍ଟ ଜାରି କରାଗଲା । ଏହି ମୁକ୍ତି ସଂଗ୍ରାମରେ ଯୋଗଦାନ କରି ମୃତ୍ୟୁ ବରଣ କରିବାକୁ ଯୁବକମାନେ ଗୌରବାନ୍ୱିତ ମନେ କରୁଥିଲେ । ବିହାରର ଶ୍ରୀ ରାମନନ୍ଦନ ମିଶ୍ର ଓଡ଼ିଶାରେ ଆତ୍ମଗୋପନ କରି ବୈପ୍ଳବିକ ଆନ୍ଦୋଳନକୁ ତେଜିଆନ କରୁଥିଲେ ।

କେବଳ ଉପକୂଳ ଅଞ୍ଚଳ ନୁହେଁ ସମଗ୍ର ଓଡ଼ିଶା ବି ତାତି ଉଠିଥିଲା ଏଇ ବିପ୍ଳବ ହାୱାରେ । କୋରାପୁଟର ଜନତା ମାତି ଉଠିଲେ ଅତ୍ୟନ୍ତ ଭୟଙ୍କର ଭାବରେ – ଯେତେବେଳେ ଶ୍ରୀ ସଦାଶିବ ତ୍ରିପାଠୀ, ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ଓ ଶ୍ରୀ ରାଧାମୋହନ ସାହୁଙ୍କୁ ଗିରଫ କରି ନିଆଗଲା । କୋରାପୁଟର କଂଗ୍ରେସ କର୍ମୀମାନେ ଗ୍ରାମେ ଗ୍ରାମେ ବୁଲି ମତାଇ ତତାଇ ଉଠିଲେ ଜନତାଙ୍କୁ । ସରକାରୀ ଅଫିସ୍, ଥାନା ଓ ତହସିଲକୁ ଲୁଟ୍ କରିବା ସହିତ ନିଆଁ ବି ଲଗାଇଦେଲେ । ଅଗଷ୍ଟ ୧୭ ତାରିଖରେ ସିମୁଳିଗୁଡ଼ା ତାଲୁକା ଅଫିସ୍ ଉପରେ କର୍ମୀମାନେ ଚଢ଼ାଉକଲେ । ଗୁଣୁପୁର, ଲକ୍ଷ୍ମୀପୁରରେ ବି ସେହିପରି ପିକେଟିଂ ଓ ଆନ୍ଦୋଳନ ଚାଲିଲା । ନେତାମାନଙ୍କୁ ଗିରଫ କରିବା ଦେଖି ଜନତା ଯେପରି ପାଗଳ ହୋଇଯାଇଥିଲା । ଅଗଷ୍ଟ ୨୧ରେ ମାଥିଲୀ ଥାନା ଉପରେ ବିଦ୍ରୋହୀକର୍ମୀମାନଙ୍କର ଆକ୍ରମଣ ହେଲା । କେତେଜଣ ପୋଲିସ୍ କର୍ମଚାରୀ ଆହତ ହେଲେ, ଜଣେ ଜଙ୍ଗଲ କର୍ମଚାରୀଙ୍କର ମୃତ୍ୟୁ ହେଲା ଓ ପୋଲିସ୍ ଗୁଳିରେ ୫ ଜଣ ବିଦ୍ରୋହୀ ଜନତା ଟଳି ପଡ଼ିଲେ । ଏହି ଗଣ୍ଡଗୋଳରେ ଜଣେ ବିଶିଷ୍ଟ ଗାନ୍ଧୀବାଦୀ, ସକ୍ରିୟ ଆଦିବାସୀ କର୍ମୀ ଲକ୍ଷ୍ମଣ ନାଏକ ଗିରଫ ହୋଇ ବ୍ରହ୍ମପୁର ଜେଲ୍‌ରେ ରହିଲେ । ସେହି କେନ୍ଦ୍ର ଜେଲ୍‌ରେ ୧୯୪୩ ମସିହା ଅଗଷ୍ଟ ୨୯ ତାରିଖ ସକାଳ ୫ଟା ୩୦ ମିନିଟ୍‌ରେ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଦିଆଗଲା । ତାଙ୍କ ବଳିଦାନ ପରେ ଆନ୍ଦୋଳନ ଆହୁରି ତେଜିଆନ ହୋଇଉଠିଲା । ନେତା ସଦାଶିବ ତ୍ରିପାଠୀ ଓ ଅନ୍ୟମାନେ ଆନ୍ଦୋଳନକୁ ତେଜାଇ ରଖିଲେ । ସେତେବେଳେ କାରାବରଣ କରିବା ଥିଲା ଏକ ସାଧାରଣ ଘଟଣା ।

ସ୍ୱାଧୀନତା ସଂଗ୍ରାମୀ ସଦାଶିବ ତ୍ରିପାଠୀ ଛତ୍ରପୁର ତାଲୁକା ଅନ୍ତର୍ଗତ ଭାଗୀରଥିପୁର ଶାସନରେ ୧୯୧୦ ମସିହା ଏପ୍ରିଲ ୨୧ ତାରିଖରେ ଜନ୍ମଗ୍ରହଣ କରିଥିଲେ । ପରେ ତାଙ୍କ ପରିବାର କୋରାପୁଟ ଜିଲ୍ଲାର ନବରଙ୍ଗପୁର ଚାଲି ଯାଇଥିଲେ । ତାଙ୍କ ପିତାଙ୍କ ନାମ ରାମଚନ୍ଦ୍ର ତ୍ରିପାଠୀ କିନ୍ତୁ କକା ଲିଙ୍ଗରାଜ ତ୍ରିପାଠୀ ତାଙ୍କୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରିଥିଲେ । ନବରଙ୍ଗପୁରରେ ତାଙ୍କର ପ୍ରାଥମିକ ଓ ମଧ୍ୟଇଂରାଜୀ ଶିକ୍ଷା ପରେ ସେ ଜୟପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ମାଟ୍ରିକ୍ୟୁଲେସନ ପାଠ ସମାପ୍ତ କଲେ । ୧୯୨୯ରେ ଗୋଟିଏ ମାଇନର ସ୍କୁଲରେ ଶିକ୍ଷକତା କରି ତାଙ୍କର କର୍ମମୟ ଜୀବନ ଆରମ୍ଭ କଲେ । ଜଣେ ଛାତ୍ରବତ୍ସଳ ତଥା ଦକ୍ଷ ଶିକ୍ଷକ ଭାବରେ ତାଙ୍କର ଯଥେଷ୍ଟ ସମ୍ମାନ ଥିଲା ।

ବାପୁଜୀଙ୍କର ଆହ୍ୱାନକୁ ସେ ଛାତ୍ର ତଥା ଜନତାଙ୍କ ମଧ୍ୟରେ ବିତରଣ କରି କରି ଶେଷରେ ନିଜେ ଜାତୀୟତା ସଂଗ୍ରାମରେ ଯୋଗଦାନ କଲେ । ରାଧାକୃଷ୍ଣ ବିଶ୍ୱାସରାୟ, ରାଧାକୃଷ୍ଣ ସାହୁ,

ଲକ୍ଷ୍ମୀଧର ଦାସ ଓ ମାଧବ ପ୍ରଧାନୀଙ୍କ ସହଯୋଗରେ ଆସି ୧୯୩୬ ମସିହାରେ ଶିକ୍ଷକତା ଛାଡ଼ି ସେ ସକ୍ରିୟ ରାଜନୀତିରେ ଯୋଗଦେଇ ସଂଗ୍ରାମ ଚଳାଇ ରଖିଲେ । ଥରେ ସଂଗ୍ରାମ ଭୂମିକୁ ଆସିଲାପରେ ଆଉ ସେ ପଛକୁ ଚାହିଁ ନାହାନ୍ତି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ମଧ ତାଙ୍କର ରହିଥିଲା ବିଶେଷ ଭୂମିକା ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ମଧ ତାଙ୍କର ରହିଥିଲା ବିଶେଷ ଭୂମିକା ।

ଭୂମିହୀନ ଦଳିତ ଜନତାର ସେବା ହିଁ ତାଙ୍କ ରାଜନୈତିକ ଜୀବନର ପ୍ରମୁଖ ଭୂମିକା ଥିଲା । ସେ ବିନୋବା ଭାବେଙ୍କର ଭୂଦାନ ଓ ଗ୍ରାମଦାନରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିଥିଲେ । କିଛି ଦିନ ସେ ଭୂଦାନ ଯଜ୍ଞ ସମିତିର ସଂପାଦକ ଭାବରେ ବି କାର୍ଯ୍ୟ କରିଥିଲେ । ପରବର୍ତ୍ତୀ ସମୟରେ ସେ ରାଜସ୍ୱ ମନ୍ତ୍ରୀ ଥିବାବେଳେ ଭୂ-ସଂସ୍କାର କାର୍ଯ୍ୟରେ ବେଶ୍ କିଛି ପରିବର୍ତ୍ତନ କରାଇଥିଲେ । ଜମିଦାରୀ ଉଚ୍ଛେଦ ଓ ଭୂ-ସଂସ୍କାର ଆଇନ ପ୍ରଣୟନ କ୍ଷେତ୍ରରେ ସେ ନାନା ପଦକ୍ଷେପ ଗ୍ରହଣ କରି ବେଶ ସୁନାମ ଅର୍ଜ୍ଜନ କରିଥିଲେ ।

ସେ କୋରାପୁଟର ନବରଙ୍ଗପୁର ଓ ଉମରକୋଟ ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ଅନେକ ଥର ନିର୍ବାଚିତ ହୋଇଥିଲେ । ସ୍ୱାଧୀନତା ପୂର୍ବରୁ ପ୍ରଥମେ ସେ ୧୯୩୭ରେ ଲୋକ ପ୍ରତିନିଧି ଭାବରେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ତା'ପରେ ୧୯୪୬, ୧୯୫୨, ୧୯୫୭, ୧୯୬୧ ଓ ୧୯୬୭ରେ ଓଡ଼ିଶା ବିଧାନସଭାକୁ କଂଗ୍ରେସ ଦଳ ପକ୍ଷରୁ ନିର୍ବାଚିତ ହୋଇଥିଲେ । ସେ ୧୯୪୮ରେ ହରେକୃଷ୍ଣ ମହତାବ, ୧୯୫୦ରେ ନବକୃଷ୍ଣ ଚୌଧୁରୀ, ୧୯୬୧ରେ ବିଜୁ ପଟ୍ଟନାୟକ ଓ ୧୯୬୩ରେ ବୀରେନ୍ ମିତ୍ରଙ୍କ ମନ୍ତ୍ରିମଣ୍ଡଳରେ ରାଜସ୍ୱ ମନ୍ତ୍ରୀ ଭାବରେ କାର୍ଯ୍ୟ କରିଥିଲେ । ଓଡ଼ିଶାରେ ଜମିଦାରୀ ଉଚ୍ଛେଦ ଓ ଓଡ଼ିଶା ଭୂ-ସଂସ୍କାର ଆଇନ ତାଙ୍କର ରାଜସ୍ୱ ମନ୍ତ୍ରୀ କାଳର ଏକ ଉଲ୍ଲେଖଯୋଗ୍ୟ ପଦକ୍ଷେପ । ସେ ଦୀର୍ଘ ବାରବର୍ଷ କାଳ ମନ୍ତ୍ରୀ ଥିଲେ । ତାଙ୍କର ମନ୍ତ୍ରିତ୍ୱକାଳରେ ରାଜସ୍ୱ ସହିତ, ଯୋଗାଣ, ପରିବହନ, ଅବକାରୀ, ଉନ୍ନୟନ, ଜଙ୍ଗଲ, ଖଣି ଓ ଭୂତତ୍ତ୍ୱ, ଯୋଜନା ଓ ସମନ୍ୱୟ ବିଭାଗର ମନ୍ତ୍ରୀ ଭାବରେ ବିଭିନ୍ନ ସମୟରେ ଦାୟିତ୍ୱ ନିର୍ବାହ କରିବାକୁ ହୋଇଥିଲା । ତତ୍ ସଂଗେସଂଗେ ସେ ଜଣେ ନିଷ୍ଠାପର କଂଗ୍ରେସ କର୍ମୀଥିଲେ । ୧୯୩୮ରୁ ୧୯୫୫ ମସିହା ପର୍ଯ୍ୟନ୍ତ ସେ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ଥାଇ ଦଳକୁ ନାନା ଦିଗଦର୍ଶନ ଦେଇଥିଲେ ।

ଦେଶ ସ୍ୱାଧୀନତା ଲାଭ ପୂର୍ବରୁ ଜନଗଣଙ୍କର କଂଗ୍ରେସ ଉପରେ ଯେଉଁ ଆସ୍ଥା ଥିଲା, ସ୍ୱାଧୀନତା ଲାଭ ପରେ କ୍ରମଶଃ ଲୋକଙ୍କର କଂଗ୍ରେସ ପ୍ରତି ଆସ୍ଥା କମି କମି ଆସିଲା । ତଥାପି ଓଡ଼ିଶାରେ ୧୯୬୧ର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡ଼ିଶାର ୧୪୦ ବିଧାନସଭା ଆସନରୁ କଂଗ୍ରେସ ୮୨ଟି ଆସନ ଲାଭ କରି ସଂଖ୍ୟା ଗରିଷ୍ଠତା ପ୍ରମାଣ କଲା । ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । କଂଗ୍ରେସର ଶାସନ ଚାଲିଲା । ମାତ୍ର ୧୯୬୩ ମସିହା ବେଳକୁ ମାନ୍ଦ୍ରାଜ (ତାମିଲନାଡୁ)ର ମୁଖ୍ୟମନ୍ତ୍ରୀ ଥିଲେ କେ. କାମରାଜ ନାଦର । ସେ କ୍ରମାଗତ ଭାବରେ ସାତବର୍ଷ ମୁଖ୍ୟମନ୍ତ୍ରୀ ଥିଲେ । ସେ ଲକ୍ଷ୍ୟକଲେ ଯେ କଂଗ୍ରେସର ଲୋକପ୍ରିୟତା କ୍ରମଶଃ କମିବାରେ ଲାଗୁଛି । ନିର୍ବାଚନରେ ନିଜେ କାମରାଜ ଜିତିବାର ସମ୍ଭାବନା କମ୍ । ଏଣୁ କଂଗ୍ରେସ କମିଟି ଆଗରେ ପ୍ରସ୍ତାବ ଦେଲେ ଯେ, କଂଗ୍ରେସ ଶାସନରେ ଥିବା ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟ ମନ୍ତ୍ରୀମାନେ ଶାସନ ଛାଡ଼ି, ସହର ଛାଡ଼ି ଗ୍ରାମାଞ୍ଚଳର ଲୋକମାନଙ୍କ ସେବାପାଇଁ ବାହାରି ପଡ଼ନ୍ତୁ । କାମରାଜଙ୍କର ଏ ଯୋଜନା ପ୍ରଧାନମନ୍ତ୍ରୀ ଜବାହର ଲାଲଙ୍କୁ ଖୁବ୍ ଭଲ ଲାଗିଲା । ବାସ୍ତବରେ ଏ ଯୋଜନା ଥିଲା ପ୍ରଧାନମନ୍ତ୍ରୀ ନେହେରୁଙ୍କର । ସେ ଯେତେ ଗଣତନ୍ତ୍ର ପ୍ରେମୀ ବୋଲି ନିଜକୁ ପ୍ରଦର୍ଶିତ କଲେ ବି ନେହେରୁ ଥିଲେ ଭୀଷଣ ଅସହିଷ୍ଣୁ ଓ ଅତ୍ୟନ୍ତ କ୍ରୋଧୀ । ସେ ବିଭିନ୍ନ ରାଜ୍ୟର ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ ବିଶିଷ୍ଟ ପଦାଧିକାରୀଙ୍କୁ କ୍ଷମତା ଛାଡ଼ି ସେବା କରିବାକୁ ଆହ୍ୱାନ ଦେଲେ । କେତେକ କେନ୍ଦ୍ର ମନ୍ତ୍ରୀ ଓ ରାଜ୍ୟର ମନ୍ତ୍ରୀ ଇସ୍ତଫା ଦେଲେ । ଓଡ଼ିଶାକୁ ନୂଆକରି ଗଢୁଥିବା ଓ ବ୍ୟାପକ ଦୂରଦୃଷ୍ଟି ରଖି ବହୁ କାର୍ଯ୍ୟକ୍ରମ ଆରମ୍ଭ କରିଥିବା ତଥା ସଂଖ୍ୟା ଗରିଷ୍ଠତା ଲାଭ କରିଥିବା ଶ୍ରୀ ବିଜୁ ପଟ୍ଟନାୟକ କାମରାଜ ଯୋଜନାରେ ମୁଖ୍ୟମନ୍ତ୍ରୀ ଆସନରୁ ଇସ୍ତଫା ଦେଇଦେଲେ । ମାତ୍ର ଏହି ଆହ୍ୱାନ ଦେଇଥିବା ପ୍ରଧାନମନ୍ତ୍ରୀ ନେହେରୁ ପନ୍ଦରବର୍ଷ କାଳ ଅନବରତ କ୍ଷମତାରେ ରହିଥିଲେ ବି ନିଜେ ଇସ୍ତଫା ଦେଲେ ନାହିଁ । ଓଡ଼ିଶା ଶାସନରେ ଦେଖାଦେଲା ଅସ୍ଥିରତା । ଶ୍ରୀ ବୀରେନ୍ ମିତ୍ର ୧୯୬୩ ଅକ୍ଟୋବରରେ ହେଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଶ୍ରୀ ସଦାଶିବ ତ୍ରିପାଠୀ ଏଥିରେ ଜଣେ କ୍ୟାବିନେଟ୍ ମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କଲେ । ଶ୍ରୀ ମିତ୍ରଙ୍କ ଶାସନ କାଳରେ କଂଗ୍ରେସ ଦଳରେ ଗୋଷ୍ଠୀ କନ୍ଦଳ ଦେଖାଦେଇଥିଲା । ବିଭିନ୍ନ ଘଟଣାରେ ଶ୍ରୀ ମିତ୍ରଙ୍କ ଶାସନ କାଳରେ ଅସ୍ଥିରତା ଦେଖା ଦେବାରୁ ବାଧ୍ୟ ହୋଇ ଶ୍ରୀ ମିତ୍ର ୧୯୬୫ ମସିହା ଫେବୃଆରୀ ୨୦ ତାରିଖରେ ଇସ୍ତଫା ଦେଲେ ।

ଶ୍ରୀ ସଦାଶିବ ତ୍ରିପାଠୀ ୧୯୬୫ ମସିହା ଫେବୃଆରୀ ୨୧ ତାରିଖରେ ଓଡ଼ିଶା ପଞ୍ଚମ ମୁଖ୍ୟମନ୍ତ୍ରୀ ଭାବରେ ଦାୟିତ୍ୱ ଗ୍ରହଣ କଲେ । ଏଥିରେ ଶ୍ରୀ ନୀଳମଣି ରାଉତରାୟ ଓ ଶ୍ରୀ ସତ୍ୟପ୍ରିୟ ମହାନ୍ତି ମନ୍ତ୍ରୀ ଭାବରେ ଶପଥ ନେଲେ । କେତେକ ଅଭିଯୋଗ ଓ କାରଣରୁ ସେପ୍ଟେମ୍ବର ୪ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀ ନିଜ ମନ୍ତ୍ରିମଣ୍ଡଳର ବିଭାଗ ଅଦଳବଦଳ କଲେ । କେତେକ ଅସ୍ଥିରତା ଦେଖାଦେଲା । କେତେକ କାରଣରୁ ମନ୍ତ୍ରିମଣ୍ଡଳର ୧୪ ଜଣରୁ ୧୨ ଜଣ ସଦସ୍ୟ ଇସ୍ତଫା ଦେବେ ବୋଲି ଜଣାଇଲେ । ବାହାରର ଚାପରେ ଦବି ନ ଯାଇ ଓ ଅନ୍ୟମାନଙ୍କ ହାତରେ କ୍ରୀଡ଼ନକ ନ ହୋଇ ମୁଖ୍ୟମନ୍ତ୍ରୀ ଶ୍ରୀ ତ୍ରିପାଠୀ ଏହାକୁ ସାମ୍ନା କଲେ । ଜାତୀୟ କଂଗ୍ରେସ ସଭାପତି ଶ୍ରୀ କାମରାଜ ନାଦର ଓ ଓଡ଼ିଶା ପ୍ରଦେଶ କଂଗ୍ରେସ ସଭାପତି ଶ୍ରୀ ବିଜୟ ପାଣିଙ୍କ ଉଦ୍ୟମ ଯୋଗୁଁ ଇସ୍ତଫା ପ୍ରଦାନ କରିଥିବା ମନ୍ତ୍ରୀମାନେ କେତେଦିନ ପରେ ତାହା ପ୍ରତ୍ୟାହାର କରି ନେଇଥିଲେ । ରାଜ୍ୟ ମନ୍ତ୍ରିମଣ୍ଡଳରେ ସ୍ୱାଭାବିକ ଅବସ୍ଥା ଫେରି ଆସିଥିଲା ।

> ପିତାଙ୍କର ବିଶାଳ ଭୂ-ସଂପତ୍ତିର ମାଲିକ ହୋଇଥିଲେ ସୁଦ୍ଧା ଶେଷ ଜୀବନରେ ସେ ନିଃସ୍ୱ ହୋଇଯାଇଥିଲେ ।

୧୯୬୫ ମସିହା ଶେଷ ଭାଗକୁ ପଶ୍ଚିମ ଓଡ଼ିଶାରେ ଦେଖାଦେଇଥିଲା ଦାରୁଣ ଦୁର୍ଭିକ୍ଷଜନିତ ଦୁର୍ବିପାକ । ନୂଆପଡ଼ା, ପଦ୍ମପୁର ସମେତ ଆଉ କେତେକ ଅଞ୍ଚଳରେ ଦେଖା ଦେଇଥିବା ପରିସ୍ଥିତିକୁ ସମ୍ଭାଳିବା ପାଇଁ ରାଜ୍ୟର ସମ୍ବଳ ଯଥେଷ୍ଟ ନଥିଲା । ୧୯୬୬ ମେ' ୧୩ ତାରିଖରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଦୁଇ ଦିନିଆ ଓଡ଼ିଶା ଗସ୍ତରେ ଆସି ଦୁର୍ଭିକ୍ଷ ଅଞ୍ଚଳ ଭ୍ରମଣ କରି ଅବସ୍ଥାର ଗୁରୁତ୍ୱ ଅନୁଭବ କରି କେନ୍ଦ୍ରରୁ ସାହାଯ୍ୟ ପଠାଇଲେ । କଂଗ୍ରେସ ମଧ୍ୟରେ ଗୋଷ୍ଠୀ ବିବାଦ ଯୋଗୁଁ ଏ ସାହାଯ୍ୟ ପ୍ରଦାନରୁ ସରକାର କୌଣସି ରାଜନୈତିକ ଫାଇଦା ଉଠାଇ ପାରିଲେ ନାହିଁ । ସେହିପରି ମୁଖ୍ୟମନ୍ତ୍ରୀ ହେବା ପୂର୍ବରୁ ଶ୍ରୀ ତ୍ରିପାଠୀ ଭୂ-ସଂସ୍କାର କାର୍ଯ୍ୟକ୍ରମରେ ଯେଉଁ ତତ୍ପରତା ଦେଖାଉଥିଲେ, ନିଜେ ମୁଖ୍ୟମନ୍ତ୍ରୀ ଥିବାବେଳେ ଦଳ ମଧ୍ୟରେ ଦେଖା ଦେଇଥିବା ଗୋଷ୍ଠୀ କନ୍ଦଳ ଯୋଗୁଁ ତାହା କାର୍ଯ୍ୟକାରୀ କରିପାରିଲେ ନାହିଁ । ୧୯୬୭ ମାର୍ଚ୍ଚ ୮ ତାରିଖରେ ସେ ମୁଖ୍ୟମନ୍ତ୍ରୀ ଆସନରୁ ଅବ୍ୟାହତ ନେଲେ । ମୁଖ୍ୟମନ୍ତ୍ରୀ କାଳରେ ହିଁ ତାଙ୍କ ସାହସିକତା ଓ ନିର୍ମଳ ଭାବମୂର୍ତ୍ତିର ଚିତ୍ର ମିଳିଥିଲା । ତାଙ୍କ ନିଷ୍ଠାପରତା, ନିର୍ମଳ ବ୍ୟକ୍ତିତ୍ୱ ତଥା କର୍ମ ପ୍ରବାହର ନିଷ୍କଳଙ୍କ ଅଧ୍ୟାୟ ଯେପରି ସ୍ମରଣୀୟ ତାଙ୍କ ସରଳ ଲୋକପ୍ରିୟ ଭାବ ସେହିପରି ବନ୍ଦନୀୟ । ତାଙ୍କ ସମୟରେ ୧୯୬୭ ଜାନୁଆରୀରେ ବ୍ରହ୍ମପୁର ଓ ସମ୍ବଲପୁରରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଓଡ଼ିଶା ପ୍ରତି ତାଙ୍କର ସର୍ବଶ୍ରେଷ୍ଠ ଅବଦାନ ।

ଜଣେ ନିଷ୍ଠାପର ଶିକ୍ଷକ ଭାବରେ କର୍ମମୟ ଜୀବନ ଆରମ୍ଭ କରିଥିବା ସଦାଶିବ ତ୍ରିପାଠୀ ରାଜନୀତିର ହଟଚମକ ଭିତରେ ଗତିକରି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ । ଏହି କର୍ମୀ ପୁରୁଷଙ୍କର ୧୯୮୦ ମସିହା ସେପ୍ଟେମ୍ବର ୯ ତାରିଖରେ ଜୀବନର ଅବସାନ ଘଟିଲା । ପିତାଙ୍କର ବିଶାଳ ଭୂ-ସଂପତ୍ତିର ମାଲିକ ହୋଇଥିଲେ ସୁଦ୍ଧା ଶେଷ ଜୀବନରେ ସେ ନିଃସ୍ୱ ହୋଇଯାଇଥିଲେ । ସେ ଜଣେ ନିଷ୍ଠାପର ରାଜନୀତିକ କର୍ମୀ ଥିଲେ । ଅତି ସରଳ, ସ୍ନେହୀ ଓ କ୍ଷମାଶୀଳ ଗୁଣଯୋଗୁଁ ତାଙ୍କ ସମସାମୟିକ ଲୋକଙ୍କ ଭିତରେ ସେ ବେଶ୍ ଆଦର ଲାଭ କରିଥିଲେ ।

ରିଡ଼ର, ଓଡ଼ିଆ ବିଭାଗ
ଜାତୀୟ କବି ବୀରକିଶୋର
ସରକାରୀ ମହାବିଦ୍ୟାଳୟ, କଟକ-୩

# ସ୍ମରଣୀୟ ସଦାଶିବବାବୁ

ବିଶେଶ୍ୱର ଦେ

ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ରାଜସ୍ୱ ମନ୍ତ୍ରୀ ସ୍ୱର୍ଗତଃ ସଦାଶିବ ତ୍ରିପାଠୀ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଥିଲେ । କୋରାପୁଟ ଜିଲ୍ଲାର ବଣ ଜଙ୍ଗଲ ଘେରା ବିସ୍ତୀର୍ଣ୍ଣ ଅଞ୍ଚଳରେ ସେ ଆଦିବାସୀ ବିଶେଷ କରି କୋଇଆ, ଗଦବା, ବଣ୍ଡା ଓ ପରଜା ସମ୍ପ୍ରଦାୟର ଆଦିବାସୀମାନଙ୍କ ମଧ୍ୟରେ ଗାନ୍ଧୀ ଓ ଗୋପବନ୍ଧୁଙ୍କ ବାର୍ତ୍ତା ପ୍ରଚାର କରି ଇଂରେଜ ସରକାର ବିରୋଧରେ ବିରାଟଗଣ ଆନ୍ଦୋଳନ ସୃଷ୍ଟି କରିଥିଲେ । ସେତେବେଳେ ରାଧାକୃଷ୍ଣ ବିଶ୍ୱାସ ରାୟ, ରାଧାମୋହନ ସାହୁ ପ୍ରମୁଖ ନେତୃବୃନ୍ଦ କୋରାପୁଟରେ କଂଗ୍ରେସ କାର୍ଯ୍ୟ କରୁଥିଲେ । ଲକ୍ଷ୍ୟ ଥିଲା ଦେଶର ସ୍ୱାଧୀନତା ଯେଉଁଠି ନଥିବ ଶୋଷଣ ଓ ନିର୍ଯ୍ୟାତନା । ଏମାନଙ୍କ ସହିତ ମିଶିଥିଲେ ବୀର ଲକ୍ଷ୍ମଣ ନାଏକ । ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ ଏମାନେ ସମସ୍ତେ ବନ୍ଦୀ ହୋଇ ବ୍ରହ୍ମପୁର ଜେଲ୍‌ରେ କାରାରୁଦ୍ଧ ହେଲେ । ସେତେବେଳେ ଓଡ଼ିଶାର ବିଭିନ୍ନ ଜିଲ୍ଲାର ନେତୃବୃନ୍ଦ ଗୋପବନ୍ଧୁ ଚୌଧୁରୀ, ବିଶ୍ୱନାଥ ଦାସ, ଆଚାର୍ଯ୍ୟ ହରିହର ଦାସ, ଭାଗିରଥୀ ମହାପାତ୍ର, ସଦାଶିବ ତ୍ରିପାଠୀ, ରାଧାକୃଷ୍ଣ ବିଶ୍ୱାସରାୟ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ଉମାଚରଣ ପଟ୍ଟନାୟକ, ରାଧାନାଥ ରଥ, ଜଗନ୍ନାଥ ଦାସ, ଲୋକନାଥ ମିଶ୍ର (ପଙ୍କ ବାବୁ) ଜାତୀୟ କବି ବୀରକିଶୋର ଦାସ, ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ, ନୀଳମଣି ପ୍ରଧାନ, ମୁରଲୀଧର କାନୁନ୍‌ଗୋ, ଡାକ୍ତର ବ୍ରଜ ନାଥ ମିଶ୍ର, ହୃଷିକେଶ ତ୍ରିପାଠୀ, ବିନୋଦ କାନୁନ୍‌ଗୋ, ରବୀନ୍ଦ୍ର ମୋହନ ଦାସ, ବିପିନ ବିହାରୀ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ବୀରେନ୍ ମିତ୍ର, ବନମାଳୀ ପଟ୍ଟନାୟକ, ରାଧାମୋହନ ସାହୁ, ଦ୍ୱାରକା ନାଥ ଦାସ, ଉପେନ୍ଦ୍ର ମହାନ୍ତି, ନୀଳାମ୍ବର ଦାସ, ମୋହନ ଦାସ, ସଚ୍ଚିଦାନନ୍ଦ ମହାନ୍ତି, ରବି ଘୋଷ, ପ୍ରାଣନାଥ ପଟ୍ଟନାୟକ, ପଦ୍ମଚରଣ ସାମନ୍ତସିଂହାର, ଜୟକୃଷ୍ଣ ମହାନ୍ତି, ଗୋକୁଳା ନନ୍ଦ ମହାନ୍ତି, କରୁଣାକର ପାଣିଗ୍ରାହୀ, ଭାଗବତ ସାହୁ, ପଣ୍ଡିତ କୃପାସିନ୍ଧୁ ହୋତା, ଗୌରଚନ୍ଦ୍ର ମହାପାତ୍ର ଓ ଗୋବିନ୍ଦ ଚନ୍ଦ୍ର ପ୍ରଧାନ ପ୍ରଭୃତି ଓଡ଼ିଶାର ନେତୃବୃନ୍ଦ ସିକ୍ୟୁରିଟି ବନ୍ଦୀ ଭାବରେ ଆସିଯାଇଥାନ୍ତି । ସେହି ଜେଲ୍‌ରେ ଥିବାବେଳେ ୧୯୪୩ ମସିହା ମାର୍ଚ୍ଚ ୨୯ ତାରିଖ ଭୋର ୫ ଘଟିକାବେଳେ ବିପ୍ଳବୀ ନେତା ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଯାଇଥିଲା । ଏହା ପୂର୍ବଦିନ ରାତିରେ ସମସ୍ତ ବନ୍ଦୀ ଉପବାସ କରିଥିଲେ ଏବଂ ନବକୃଷ୍ଣ ଚୌଧୁରୀ ରାତିସାରା ବସି କାନ୍ଦି ଥିଲେ । ସଦାଶିବ ତ୍ରିପାଠୀଙ୍କର କଂଗ୍ରେସ ଆନ୍ଦୋଳନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ।

ସଦାଶିବ ତ୍ରିପାଠୀ ୧୯୫୧-୫୨ ନିର୍ବାଚନରେ ନବରଙ୍ଗପୁର ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ଭାବରେ ନିର୍ବାଚିତ ହୋଇଥିଲେ । ପୁଣି ୧୯୫୭ ମସିହା ନିର୍ବାଚନରେ ସେହିଠାରୁ କଂଗ୍ରେସ ପ୍ରାର୍ଥୀ ଭାବେ ନିର୍ବାଚିତ ହୋଇଥିଲେ । ୧୯୬୧ ମସିହାରେ ଉମରକୋଟ ନିର୍ବାଚନ ମଣ୍ଡଳୀରୁ ଏବଂ ୧୯୬୭ ମସିହାରେ ନବରଙ୍ଗପୁର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳରେ ସଦାଶିବ ବାବୁ ସଦସ୍ୟ ଥିଲେ । ସେତେବେଳେ ନିତ୍ୟାନନ୍ଦ କାନୁନ୍‌ଗୋ, ସଦାଶିବ ତ୍ରିପାଠୀ, ରାଜକୃଷ୍ଣ ବୋଷ, ପବିତ୍ର ମୋହନ ପ୍ରଧାନ ପ୍ରମୁଖ ମନ୍ତ୍ରୀ ଥିଲେ । ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ସଦଶିବ ତ୍ରିପାଠୀ ମନ୍ତ୍ରିମଣ୍ଡଳର ଜଣେ ଟାଣୁଆ ସଦସ୍ୟ ଥାଇ ରାଜସ୍ୱ ବିଭାଗର ଦାୟିତ୍ୱରେ ଥିଲେ । ରାଧାନାଥ ରଥ, ଶାନ୍ତନୁକୁମାର ଦାସ, ଭୈରବ ଚନ୍ଦ୍ର ମହାନ୍ତି, ସୁନାରାମ ସୋରେନ୍ ପ୍ରମୁଖ ମନ୍ତ୍ରିମଣ୍ଡଳରେ ଥିଲେ । ସଦାଶିବ ତ୍ରିପାଠୀ ତା.୨୧.୦୨.୧୯୬୫ଠାରୁ ୦୮.୦୩.୧୯୬୭ରିଖ ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ ବହୁ ଗୁରୁଦାୟିତ୍ୱ ଚଳାଇ ଥିଲେ ।

ଭାରତ ସ୍ୱାଧୀନ ହେବା ପରେ ଇଂରେଜମାନଙ୍କ କବଳରୁ ଦେଶ ମୁକ୍ତ ହୋଇଥିଲେ ମଧ୍ୟ ସାରା ଭାରତବର୍ଷରେ ଥିବା ଦେଶୀୟ ରାଜ୍ୟର ରାଜା ମହାରାଜାମାନେ ନିଜ ନିଜ ରାଜ୍ୟରେ ଅଖଣ୍ଡ କ୍ଷମତା ଜାହିର କରିବାରୁ ଭାରତବର୍ଷରେ ଏକତା ଓ ସଂହତି ରକ୍ଷା କରିବା ଏକ ଆହ୍ୱାନ ଥିଲା । ତତ୍କାଳୀନ ଓଡ଼ିଶା ମୁଖ୍ୟମନ୍ତ୍ରୀ ତଥା

ବିଚକ୍ଷଣ ରାଜନୀତିଜ୍ଞ ଡଃ ହରେକୃଷ୍ଣ ମହତାବଙ୍କର ଦୂରଦୃଷ୍ଟି ଏବଂ ଭାରତ ଉପପ୍ରଧାନ ମନ୍ତ୍ରୀ ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କର ଦୃଢ଼ତା ଯୋଗୁଁ ଓଡ଼ିଶାରେ ପ୍ରଥମେ ଗଡ଼ଜାତର ଦେଶୀୟ ରାଜ୍ୟର ରାଜାମାନେ ଓଡ଼ିଶା ସହିତ ମିଶିବାକୁ ଚୁକ୍ତିପତ୍ରରେ ସ୍ୱାକ୍ଷର କଲେ । ସେହିପରି ନବକୃଷ୍ଣ ଚୌଧୁରୀଙ୍କର ମୁଖ୍ୟମନ୍ତ୍ରିତ୍ୱ ସମୟରେ ଜମିଦାରୀ ଉଚ୍ଛେଦ ନିମନ୍ତେ ଆଇନ ପ୍ରଣୟନ କରାଗଲା । ବହୁ ଦିନରୁ ଚାଲି ଆସିଥିବା ସାମନ୍ତବାଦୀ ଜମିଦାରୀ ପ୍ରଥାର ଉଚ୍ଛେଦ ହେଲା । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଜଣେ ପ୍ରଖର ମାନବବାଦୀ ଚିନ୍ତାନାୟକ ଥିଲେ ଏବଂ ସେ ସମାଜର ଦଳିତ, ଶୋଷିତ ଲୋକମାନଙ୍କର କଲ୍ୟାଣ କରାଯିବା ସହିତ ସେମାନଙ୍କୁ ସ୍ୱାଧୀନତାର ପରବର୍ତ୍ତୀ ଅବସ୍ଥାରେ ପ୍ରଗତିର ମୁଖ୍ୟ ସ୍ରୋତରେ ସାମିଲ କରିବା ନିମନ୍ତେ ବିଭିନ୍ନ ପଦକ୍ଷେପ ନେଇଥିଲେ । ତାଙ୍କ ସମୟରେ ଜମିଦାରୀ ଉଚ୍ଛେଦ ଆଇନ ହୋଇ କାର୍ଯ୍ୟ ଆରମ୍ଭ କରାଗଲା ଏବଂ ଏହି ଆଇନକୁ କାର୍ଯ୍ୟକାରୀ କରିବାରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ଅତି ନିଷ୍ଠାପର ଭାବେ କାର୍ଯ୍ୟ କରିଥିଲେ । ତତ୍କାଳୀନ ରାଜସ୍ୱ ବିଭାଗର ଶାସନ ସଚିବ ଶ୍ରୀ ନୀଳମଣି ସେନାପତି, ଆଇ.ସି.ଏସ୍. ଏବଂ ସମସ୍ତ ଜିଲ୍ଲାର କଲେକ୍ଟରମାନଙ୍କୁ ସଦାଶିବ ବାବୁ ଆବଶ୍ୟକୀୟ ପରାମର୍ଶ ଦେଇ ସେହି ଜମିଦାରୀ ଉଚ୍ଛେଦ ଆଇନକୁ ଯଥାଯଥ ଭାବରେ କାର୍ଯ୍ୟକାରୀ କରିଥିଲେ ତାହା ଏକ ମୁଖ୍ୟ ଐତିହାସିକ ଘଟଣା ଭାବେ ସ୍ମରଣୀୟ ହୋଇରହିବ । ଏଥିପାଇଁ ସଦାଶିବ ବାବୁ ଏବଂ ମୁଖ୍ୟମନ୍ତ୍ରୀ ନବବାବୁ ଓଡ଼ିଶାର ବିଭିନ୍ନ ଅଞ୍ଚଳ ଗସ୍ତ କରି ଜନସଚେତନତା ସୃଷ୍ଟି କରିବା ସହିତ ଜମିଦାରୀ ଉଚ୍ଛେଦର ପରବର୍ତ୍ତୀ ଅବସ୍ଥାରେ ସମୀକ୍ଷା କରୁଥିଲେ । ସେହି ସମୟରେ ମୋର ଛାତ୍ର ଜୀବନରେ ମୁଁ ସେ ଉଭୟଙ୍କ ସଭାରେ ଯୋଗଦେଇଛି ଏବଂ ଜମିଦାରୀ ଉଚ୍ଛେଦ ଭାଗଚାଷ ଆଇନ ଓ ଭୂ-ସଂସ୍କାର ଦିଗରେ ସେମାନଙ୍କଠାରୁ ମୁଁ ଶୁଣିବାର ସୁଯୋଗ ପାଇଛି । ତାଙ୍କର ସରଳ ନିରଳଶ ବ୍ୟବହାର ଓ ଲୋକକଲ୍ୟାଣକାରୀ ଦୃଷ୍ଟିଭଙ୍ଗୀ ଓ ଆଚରଣ ପାଇଁ ସଦାଶିବ ବାବୁ ସ୍ମରଣୀୟ ହୋଇରହିବେ ।

ପୁରୁଣା ସଚିବାଳୟ ମାର୍ଗ
କଟକ-୧



୧୯୬୬-୬୭ ମସିହାରେ ଦଳୀୟ ପର୍ଯ୍ୟବେକ୍ଷକ ଭାବେ ଓଡ଼ିଶା ଆସିଥିବା ଶ୍ରୀ ନୀଲମ ସଂଜୀବ ରେଡ୍ଡୀ (ପରବର୍ତ୍ତୀ କାଳରେ ଭାରତର ରାଷ୍ଟ୍ରପତି ହୋଇଥିଲେ)ଙ୍କ ସହିତ ଭୁବନେଶ୍ୱରର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ।

# ସଂଗ୍ରାମୀ ସଦାଶିବ ତ୍ରିପାଠୀ

କୃଷ୍ଣ ଚନ୍ଦ୍ର ସୁଆର

**ଓ**ଡ଼ିଶାର ରାଜସ୍ୱ ମନ୍ତ୍ରୀ ଭାବେ ଜମିଦାରୀ ଉଚ୍ଛେଦ ଓ ଭୂ-ସଂସ୍କାର ଆଇନ ପ୍ରବର୍ତ୍ତନ କରି ନିଜ ଜମିରୁ ଶହେ ଏକର ଜମି ଯେ ଭୂମିହୀନ ଗରିବ ଓ ପେଟ ଭରି ଖାଇବାକୁ ପାଉନଥିବା ଲୋକଙ୍କୁ ବାଣ୍ଟି ଇତିହାସ ସୃଷ୍ଟି କରିଥିଲେ, ସେ ହେଉଛନ୍ତି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ରାଜନୀତିଜ୍ଞ, ପୂର୍ବତନ ମୁଖ୍ୟମନ୍ତ୍ରୀ, ଗୁଣୀ, ଜ୍ଞାନୀ ଓ ଆଦର୍ଶବାଦୀ ବ୍ୟକ୍ତି ସ୍ୱର୍ଗତଃ ସଦାଶିବ ତ୍ରିପାଠୀ । ଜଣେ ଶିକ୍ଷକ ଭାବେ ସେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରି ନିଜର ନିଷ୍ଠା, ସେବା ଓ ଲୋକପ୍ରିୟତା ଯୋଗୁଁ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇପାରିଥିଲେ ।

କୋରାପୁଟ ଜିଲ୍ଲାରେ ସେ ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ନେଇ ୧୯୪୧ ମସିହାରେ ସତ୍ୟାଗ୍ରହ କରି ଏକ ବର୍ଷ ଓ ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ଅଂଶ ଗ୍ରହଣ କରି ତିନି ବର୍ଷ ପାଇଁ କାରାବରଣ କରିଥିଲେ ।

କଂଗ୍ରେସ ଦଳ ପକ୍ଷରୁ ଓଡ଼ିଶା ବିଧାନସଭାକୁ ସେ ୧୯୩୮, ୧୯୪୬, ୧୯୫୨, ୧୯୫୭, ୧୯୬୧ ଓ ୧୯୬୭ରେ ନିର୍ବାଚିତ ହୋଇଥିଲେ । ଡକ୍ଟର ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ବିଜୁ ପଟ୍ଟନାୟକ ଓ ବୀରେନ ମିତ୍ରଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରିମଣ୍ଡଳରେ ଦୀର୍ଘ ୧୨ ବର୍ଷ ଧରି ରାଜସ୍ୱ ଓ ଅନ୍ୟାନ୍ୟ ବିଭାଗର ମନ୍ତ୍ରୀ ଭାବେ ଦାୟିତ୍ୱ ତୁଲାଇଥିଲେ । ୧୯୬୫ ମସିହା ଫେବୃଆରୀରୁ ୧୯୬୭ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ରାଜ୍ୟ ମୁଖ୍ୟମନ୍ତ୍ରୀ ଓ ବିରୋଧୀ ଦଳ ନେତା ରୂପେ ୧୯୬୮ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଦାୟିତ୍ୱ ତୁଲାଇ ଥିଲେ । ଓଡ଼ିଶା ଭୂଦାନ ଯଜ୍ଞ ସମିତିର ସଂପାଦକ ଭାବେ ସେ ୧୯୫୮ରୁ ୧୯୬୬ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ଓ ଏହାର ଆଜୀବନ ସଭ୍ୟ ଥିଲେ । ସଂଗ୍ରାମୀ ସ୍ୱର୍ଗତଃ ନିରଞ୍ଜନ ପଟ୍ଟନାୟକଙ୍କ ସହ ସେ ଓଡ଼ିଶାରେ ଖଦୀ ଆନ୍ଦୋଳନକୁ ଆଗେଇ ନେବାଲାଗି ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ ।

ସଦାଶିବ ଥିଲେ ଉଦାର ଓ ଧର୍ମ ପରାୟଣ । ସରଳ ଜୀବନଯାପନକୁ ସେ ଖୁବ୍ ପସନ୍ଦ କରୁଥିଲେ । ସବୁବେଳେ ଖଦଡ଼ ଧୋତି, ସାର୍ଟ ପିନ୍ଧୁ ଥିଲେ । ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ ବିରୋଧୀ ଦଳ ନେତା ଥିଲାବେଳେ ସେ ପୋଲିସର କୌଣସି ସହାୟତା ଚାହୁଁ ନଥିଲେ । ଏକଦା ଭାରତର ରାଷ୍ଟ୍ରପତି ନୀଲମ ସଞ୍ଜିବ ରେଡ୍ଡୀ କେନ୍ଦ୍ରରୁ ଆସି ତାଙ୍କ ଶାସନ ପରିଚାଳନା ଓ ଅନ୍ୟାନ୍ୟ ବିଷୟ ଦେଖି ଭୂୟସୀ ପ୍ରଶଂସା କରିଥିଲେ । ୧୯୫୪ ମସିହାରେ ଥରେ ଭୀଷଣ ଜଙ୍ଗଲ ରାସ୍ତା ଦେଇ ମାଲକାନାଗିରି ଗସ୍ତରେ ଗଲାବେଳେ ତାଙ୍କର ଦୃଢ଼ ଆତ୍ମବିଶ୍ୱାସ ଯୋଗୁଁ ବାଘ ଭଳି ହିଂସ୍ର ଜନ୍ତୁ ହାବୁଡ଼ରୁ ରକ୍ଷା ପାଇଥିଲେ । ରାଜନୀତିରେ ପ୍ରବେଶ କରିବା ପୂର୍ବରୁ ସମାଜ ଓ ପ୍ରଜାତନ୍ତ୍ରରେ ସାମ୍ବାଦିକ ରୂପେ ସେ କିଛି ଦିନ କାର୍ଯ୍ୟ କରିଥିଲେ । ଅବସର ସମୟରେ କାବ୍ୟ କବିତା ଲେଖିବା ତାଙ୍କର ସ୍ୱତନ୍ତ୍ର ରୁଚି ଥିଲା । ଆଦିବାସୀମାନଙ୍କ ସାମାଜିକ ଉନ୍ନତି ନିମିତ୍ତ ସେ ଅନେକ କାମ କରିବା ସତ୍ତ୍ୱେ ଆଦିବାସୀ ଭାଷାରେ ପୌରାଣିକ ଗୀତ, ନାଟକ ଲେଖିବା ତାଙ୍କର ଅତିପ୍ରିୟ ଥିଲା । ସୁଭଦ୍ରା ହରଣ, କର୍ଣ୍ଣବଧ, ଅଭିମନ୍ୟୁ ବଧ, ଭୂତକେଳି ପ୍ରଭୃତି ନାଟକ ସେ ଲେଖିଥିଲେ । **ତାଙ୍କର ଅସାମାନ୍ୟ ପ୍ରତିଭାପ୍ରତି ସମ୍ମାନ ଜଣାଇ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟରେଟ ଉପାଧି ପ୍ରଦାନ କରିଥିଲେ ।**

ଏହି ପ୍ରତିଭାସଂପନ୍ନ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ ୧୯୧୦ ମସିହା ଅପ୍ରେଲ ମାସ ୨୧ ତାରିଖରେ ଗଞ୍ଜାମ ଜିଲ୍ଲାର ଛତ୍ରପୁର ତାଲୁକା ଅନ୍ତର୍ଗତ ଭାଗୀରଥିପୁର ଶାସନରେ ଏକ ନୈଷ୍ଠିକ ବ୍ରାହ୍ମଣ ପରିବାରରେ । ଉଭୟେ ଥିଲେ ଧର୍ମ ପରାୟଣ । ପରବର୍ତ୍ତୀ ସମୟରେ ତାଙ୍କ ପରିବାର କୋରାପୁଟ ଜିଲ୍ଲାର ନବରଙ୍ଗପୁରଠାରେ ବସତି ସ୍ଥାପନ କରି ରହିଥିଲେ । ମାଟ୍ରିକ୍ ପାଶ୍ କରିବା ପରେ ୧୯୩୧ ମସିହାରେ ସେ ଶିକ୍ଷକ ତାଲିମ ନେବାପାଇଁ ବ୍ରହ୍ମପୁର ଯାଇଥିଲେ । ସେଠାରେ ତାଙ୍କର ସ୍ୱାଧୀନତା ସଂଗ୍ରାମୀ କବିରାଜ ଅନନ୍ତ ତ୍ରିପାଠୀ ଶର୍ମା ଓ ଦିବାକର ପଟ୍ଟନାୟକଙ୍କ ସହ ଘନିଷ୍ଠତା ହୋଇଥିଲା । ସେମାନେ ଦେଶର ହାଲଚାଲ୍ ଓ ବିଦେଶୀ ଶାସନ

ସଂପର୍କରେ ଆଲୋଚନା କରୁଥିଲେ । ଟ୍ରେନିଂ ଶେଷ କରି ଫେରିବା ପରେ ସେ ଜୟପୁର ହାଇସ୍କୁଲରେ ଶିକ୍ଷକତା କରିଥିଲେ ।

ସେତେବେଳେ ଦେଶର ଚାରିଆଡ଼େ ଅସହଯୋଗ ଆନ୍ଦୋଳନ ଚାଲିଥାଏ । ମହାତ୍ମା ଗାନ୍ଧୀଙ୍କ ଡାକରା ସମସ୍ତଙ୍କୁ ମନ୍ତ୍ରମୁଗ୍ଧ ସମ ଟାଣି ଆଣୁଥିଲା । ବିଦେଶୀ ଜିନିଷ ବର୍ଜନ ଓ ଇଂରେଜ ଶାସନ ହଟାଅ ବୋଲି ଚାରିଆଡ଼େ ଜୋରଦାର ପ୍ରଚାର ହେଉଥିଲା । ଠିକ୍ ସେହି ସମୟରେ ସଦାଶିବଙ୍କ ସହ ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ସଦାନନ୍ଦ ମହାନ୍ତି, ଲକ୍ଷ୍ମୀକାନ୍ତ ଦାସ ଓ ଲକ୍ଷ୍ମଣ ନାୟକଙ୍କର ବନ୍ଧୁତା ହେଲା । ପ୍ରତ୍ୟେକ ଦେଶପ୍ରେମୀ ଥିଲେ । ବିଦେଶୀ ଶାସନ କବଳରୁ ଆମ ଦେଶ କିପରି ସ୍ୱାଧୀନ ହେବ, ଏକଥା ସେମାନେ ଭାବୁଥିଲେ । ଗାଁଗଣ୍ଡା ବୁଲି ଲୋକଙ୍କୁ ଏକଜୁଟ କଲେ । ଗାନ୍ଧିଜୀଙ୍କ ବାର୍ତ୍ତା ଚାରିଆଡ଼େ ପ୍ରଚାର କଲେ । ସ୍ୱାଧୀନତା ଆନ୍ଦୋଳନ ଓ ଦେଶସେବାକୁ ବଡ଼ ମଣି ସେ ଚାକିରିରୁ ଇସ୍ତଫା ଦେଇଥିଲେ । ୧୯୩୪ ମସିହାରେ ସେ କୋଟପାଡ଼ ନିକଟ ଗୀର୍ଲା ଗାଁରେ ଏକ କଂଗ୍ରେସ ବୈଠକରେ ଗୋପନରେ ଆଲୋଚନାରତ ଥିବା ସମୟରେ ସମସ୍ତ କର୍ମୀମାନଙ୍କୁ ଗିରଫ କରି ପୋଲିସ ନେଇ ଯାଇଥିଲା । ଜାତିପ୍ରାଣ ନେତାମାନଙ୍କୁ ବନ୍ଦୀ କରିବା ଯୋଗୁଁ ସମଗ୍ର କୋରାପୁଟ ଜିଲ୍ଲାରେ ଜୋର୍‌ଦାର୍ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଚାଷୀ, ମୂଲିଆ, ଗରିବ ଓ ଦେଶପ୍ରେମୀ ନାଗରିକମାନେ ଏଥିରେ ଏକତ୍ର ହୋଇ ଜେଲ୍‌ରୁ ଖଲାସ କରିବା ପାଇଁ ଦୃଢ଼ ଦାବି କରିଥିଲେ । ବହୁ ସଂଖ୍ୟାରେ ଲୋକେ ଏକାଠି ହେବାର ଦେଖି ଇଂରେଜ ସରକାର ଏଥିରେ ବିବ୍ରତ ହୋଇ ନେତାମାନଙ୍କୁ ସର୍ତ୍ତ ରଖି ଖଲାସ କରିଥିଲେ । ସେ ମଧ୍ୟ ସମସ୍ତ ବନ୍ଦୀଙ୍କ ସହ ଖଲାସ ହୋଇଥିଲେ । ତାଙ୍କର ପ୍ରଧାନ ସାଂଗ ଓ ସହକର୍ମୀ ଥିଲେ ରାଧାମୋହନ ସାହୁ, ରାଧାକୃଷ୍ଣ ବିଶ୍ୱାସ ରାୟ ଓ ଲକ୍ଷ୍ମୀକାନ୍ତ ତ୍ରିପାଠୀ । ସେମାନେ ବିଭିନ୍ନ ଅଞ୍ଚଳ ଭ୍ରମଣ କରି ଜନସମର୍ଥନ ଚାହିଁବାରୁ ତେନ୍ତୁଳିଗୁମ୍ମାର ଲକ୍ଷ୍ମଣ ନାଏକ ତାଙ୍କୁ ପୂର୍ଣ୍ଣ ସହଯୋଗ କରିଥିଲେ । ସ୍ୱରାଜ୍ୟ ପାଇଁ ଚାରିଆଡ଼େ ନିଆଁ ଧୁ ଧୁ ହୋଇ ଜଳିବାରେ ଜାତି, ବର୍ଣ୍ଣ, ଧର୍ମ, ନିର୍ବିଶେଷରେ ଯିଏ ଯେଉଁଠି ଥିଲେ ସମସ୍ତେ ଜାଗି ଉଠିଲେ । ସମସ୍ତ ଲକ୍ଷ୍ୟ ଉଦ୍ଦେଶ୍ୟ ଥିଲା ମା' ମାତୃଭୂମିର ଉଦ୍ଧାର କରିବା । ସଦାଶିବ ଚାଲିଚାଲି ବିଭିନ୍ନ ଅଞ୍ଚଳକୁ ଯାଇ ସଭାସମିତିମାନ କରୁଥିଲେ । ଦେଶପାଇଁ ପ୍ରାଣବଳି ଦେବାକୁ ସେ ତାଙ୍କ ଭାଷଣରେ ଉଲ୍ଲେଖ କରୁଥିବାରୁ ଲୋକମାନଙ୍କ ମନରେ ଉତ୍ସର୍ଗୀକୃତ ମନୋବଳ ବୃଦ୍ଧି ପାଇଥିଲା । ଲକ୍ଷ୍ମଣ ନାଏକଙ୍କ ଉପରେ ମାଲକାନାଗିରି ଅଞ୍ଚଳର ଦାୟିତ୍ୱ ସେତେବେଳେ ନ୍ୟସ୍ତ ଥିଲା ।

୧୯୪୨ ମସିହାରେ ସମଗ୍ର କୋରାପୁଟ ଜିଲ୍ଲାର ବିଭିନ୍ନ ସ୍ଥାନରେ ଆନ୍ଦୋଳନ ବ୍ୟାପକ ରୂପ ଧାରଣ କରିଥିଲା । ମାଥିଲିଠାରେ ଏକ ବିରାଟ ଜନ ଆନ୍ଦୋଳନରେ ହଜାର ହଜାର ଆଦିବାସୀ ଓ ହରିଜନ ରୁଣ୍ଡ ହୋଇଥିଲେ । ସରଳ, ନିରୀହ, ନିଷ୍କପଟ ଆଦିବାସୀମାନଙ୍କର ମୁଖ୍ୟ ଦାବି ଥିଲା ଟିକସ ପରିହାର କରିବା ଓ ଅନ୍ୟାୟ ଅନୀତି ବିରୋଧରେ ଦୃଢ଼ ସ୍ୱର ଉତ୍ତୋଳନ କରିବା । ବିଦେଶୀ ସରକାର ହଟିଯାଅ ବୋଲି ସେମାନେ ଡାକରା ଦେଲେ । ସମସ୍ତେ ହାତରେ ସେତେବେଳର ଜାତୀୟ ପତାକା ଧରି ଭାରତମାତା କି ଜୟ ଧ୍ୱନିରେ ଶୋଭାଯାତ୍ରା କଲେ । ଥାନା ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରିବାକୁ ମାଡ଼ି ଆସିଲେ । ନ୍ୟାଯ୍ୟ ଦାବି ଉପସ୍ଥାପନା କରିବାକୁ ଏକାଠି ହୋଇଥିବା ଆଦିବାସୀ ଜନସାଧାରଣଙ୍କୁ ଇଂରେଜ ସରକାର ଦମନ କରିବାକୁ ଯାଇ ଲାଠିମାଡ଼, ଲୁହାବୁହା ଗ୍ୟାସ ଓ ବନ୍ଧୁକରୁ ଗୁଳି ଫୁଟାଇ ଭୟଭୀତ କରାଇଥିଲେ । ଫଳରେ ପ୍ରବଳ ଜନଗହଳି ଯୋଗୁଁ ଲୋକେ ଦଳାଚକଟାରେ ଖଣ୍ଡିଆ ଖାବରା ହୋଇ ଆହତ ହେଲେ ଓ କେତେକଙ୍କ ଦେହରେ ଗୁଳି ବାଜିବାରୁ କ୍ଷତାକ୍ତ ହେଲେ । ଜି. ରାମେୟା ନାମକ ଜନୈକ ଫରେଷ୍ଟ ଗାର୍ଡ଼ ଗୁଳିମାଡ଼ରେ ମୃତ୍ୟୁବରଣ କଲେ । ଲୋକେ ପ୍ରାଣ ବିକଳରେ ବାରମ୍ବାର ଗୁଳିରେ ଆବାଜ ଯୋଗୁଁ ଛିନ୍ନଛତ୍ର ହେଲେ । ଏହି ସୁଯୋଗରେ ପୋଲିସ୍ ଲକ୍ଷ୍ମଣ ନାଏକଙ୍କୁ ମିଛରେ ଦାୟୀ କରି ଗିରଫ କଲେ ଓ ମାଡ଼ ଅତ୍ୟାଚାର କରି ଜେଲ୍‌କୁ ପଠାଇଲେ । କିନ୍ତୁ ଲକ୍ଷ୍ମଣ ନାଏକ ଥିଲେ ନିର୍ଦ୍ଦୋଷ । ହଜାର ହଜାର ଲୋକଙ୍କ ଭିତରେ ବ୍ରିଟିଶ୍ ପୋଲିସ୍ ଗୁଳିରେ ଜି. ରାମେୟା ମରି ଯାଇଥିଲା । ଏକଥାକୁ ଚାପିଦେବା ପାଇଁ ଔଷଧ ଖାଇବା ନ୍ୟାୟରେ ତାଟିଆ କାମୁଡ଼ିଲା ପ୍ରାୟେକ ଦୋଷୀ ହେଲେ ସତ୍ୟାଗ୍ରହୀ ଲକ୍ଷ୍ମଣ ନାଏକ । ତତ୍‌ପରେ ପରେ ସଦାଶିବ ତାଙ୍କ ସହଯୋଗୀମାନେ ମଧ୍ୟ ଗିରଫ ହେଲେ । ସେମାନେ ସମସ୍ତେ ପ୍ରଥମେ କୋରାପୁଟ ଜେଲରେ କିଛି ଦିନ ରହିବା ପରେ ବ୍ରହ୍ମପୁର କେନ୍ଦ୍ରୀୟ ଜେଲକୁ ସ୍ଥାନାନ୍ତରିତ କରାଯାଇଥିଲା । ପୂର୍ବରୁ ବିଭିନ୍ନ ସ୍ଥାନରୁ ବହୁ ଅସହଯୋଗ ଆନ୍ଦୋଳନକାରୀ ନିର୍ଯ୍ୟାତନା ସହ୍ୟକରି ଥିଲେ । ଲକ୍ଷ୍ମଣଙ୍କୁ ମୃତ୍ୟୁଦଣ୍ଡରୁ ରକ୍ଷା କରିବା ପାଇଁ ବ୍ରହ୍ମପୁରର ମହାନୁଭବୀ ଆଇନଜ୍ଞ ସ୍ୱର୍ଗତଃ ରାଧାଚରଣ ଦାସ ବିହାର ହାଇକୋର୍ଟରେ ଅପିଲ କରିଥିଲେ । କିନ୍ତୁ ତାହା ଖାରଜ ହୋଇ ଯାଇଥିଲା । ଫଳରେ ଜେଲ୍‌ରେ ଥିବା ସମସ୍ତ ସ୍ୱାଧୀନତା ସଂଗ୍ରାମୀ ଦୁଃଖରେ ଭାଙ୍ଗି ପଡ଼ିଥିଲେ । ବିନା ମେଘରେ ବଜ୍ରପାତସମ ୧୯୪୩ ମସିହା ମାର୍ଚ୍ଚ ୨୯ ତାରିଖରେ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଦେବାକୁ ଉପରୁ ଆଦେଶ ଆସିଲା – ଏ ସମ୍ବାଦ ଶୁଣି ସମସ୍ତ

ନେତାମାନେ ହତବାକ୍ ହୋଇଗଲେ ହେଁ ହସି ହସି ଲକ୍ଷ୍ମଣ କହିଥିଲେ – 'ଦେଶପାଇଁ ମୃତ୍ୟୁବରଣ କରିବା ଭାଗ୍ୟରେ ଥିଲେ ହିଁ ସମ୍ଭବ ହୁଏ ।' ସେଦିନ ସଦାଶିବ ତ୍ରିପାଠୀ ଏକା ଲକ୍ଷ୍ମଣଙ୍କ କାରାଗୃହ ନିକଟକୁ ଯାଇ ଦେଖିଲେ ତାଙ୍କର ଗଭୀର ଉଦାସ ପ୍ରାଣବନ୍ତ ମୁଖମଣ୍ଡଳ ଏବଂ କୋହ ସମ୍ଭାଳି ନପାରି ତାଙ୍କ ଆଖିରୁ ଝରିଥିଲା ଅବାରିତ ଅଶ୍ରୁ । ଲକ୍ଷ୍ମଣଙ୍କ ସହ ସେ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ । ତାଙ୍କ କର୍ମଭୂମି ଆଦିବାସୀ ଅଧ୍ୟୁଷିତ ନବରଙ୍ଗପୁର ଜିଲ୍ଲା ସେତେବେଳେ ଅବିଭକ୍ତ କୋରାପୁଟ ଜିଲ୍ଲାର ଏକ ସବ୍‌ଡିଭିଜନ ଥିଲେ ମଧ୍ୟ ସ୍ୱାଧୀନତା ଆନ୍ଦୋଳନ ସେଠାରେ ଉଗ୍ର ରୂପ ଧାରଣ କରିଥିଲା । ବ୍ରିଟିଶ୍‌ମାନେ ଓଡ଼ିଶା ଅଧିକାର କରିବା ପୂର୍ବରୁ ମାଡ୍ରାସ ପ୍ରେସିଡେନ୍ସି ଦେଇ ବଣ ଜଙ୍ଗଲ ପାହାଡ଼ ଘେରା ସେହି ଦୁର୍ଗମ ଅଞ୍ଚଳକୁ ପ୍ରବେଶ କରିସାରି ଥିଲେ ।

ଗାନ୍ଧିଜୀଙ୍କ ଅସହଯୋଗ ଓ ଆଇନ ଅମାନ୍ୟ ଆନ୍ଦୋଳନର ବାର୍ତ୍ତା ସେଠାରେ ପ୍ରସାରିତ ହୋଇଥିଲା । ବହୁ ଆଦିବାସୀ ଓ ସାଧାରଣ ନେତା ସୂତା କାଟିବା, ଲୁଗା ବୁଣିବା, ରାମଧୂନ ଗାଇବା, ଗାଁ ଗାଁ ବୁଲି ବୁଲି ମହାତ୍ମା ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାର କରିବା ନିମନ୍ତେ କାର୍ଯ୍ୟ କରିଥିଲେ । ୧୯୩୭ରେ କୋରାପୁଟର କଂଗ୍ରେସ କମିଟି ସକ୍ରିୟ ଭାବରେ କାମ କରିଥିଲା । ଜୟପୁରର ରାଧାକୃଷ୍ଣ ବିଶ୍ୱାସ ରାୟ ତାହାର ସଭାପତି ଥିଲେ । ସେଥିରେ ଅନୁପ୍ରାଣୀତ ହୋଇ ସଦାଶିବଙ୍କ ସମେତ ମହମ୍ମଦ ବାଜୀ, ଲକ୍ଷ୍ମଣ ଚନ୍ଦ୍ର ଦାସ, ସୀମାଞ୍ଚଳ ବେହେରା, ଜଗନ୍ନାଥ ତ୍ରିପାଠୀ, ରବିସିଂ ମାଝୀ, ସନୁମାଝୀ, ଓ ମାଧବ ପ୍ରଧାନୀ କଂଗ୍ରେସରେ ଯୋଗ ଦେଇଥିଲେ । ଗାନ୍ଧିଜୀଙ୍କ ଅସହଯୋଗର ବାର୍ତ୍ତା ଲୋକଙ୍କ ଉପରେ ଢେର ପ୍ରଭାବ ପକାଇଥିଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରଠାରୁ ବିଶେଷ କରି ୧୯୩୯ ମସିହାଠାରୁ ବହୁ କଂଗ୍ରେସ କର୍ମୀ ବ୍ୟକ୍ତିଗତ ସତ୍ୟାଗ୍ରହରେ ଯୋଗ ଦେଇଥିଲେ ।

ଓଡ଼ିଶାର ରାଜସ୍ୱ ମନ୍ତ୍ରୀ ଥିବା ସମୟରେ ସେ ଲୋକହିତକର ଭୂ-ସଂସ୍କାର ଆଇନ ପ୍ରଣୟନ କରିଥିବାରୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ନେହେରୁ ଉଚ୍ଚ ପ୍ରଶଂସା କରିଥିଲେ । ଠିକ୍ ସେହିପରି ୧୯୫୦ ମସିହାରେ ଗୋବିନ୍ଦ ବଲ୍ଲଭ ପନ୍ଥ ଭାରତର ସମ୍ବିଧାନ ନିମନ୍ତେ ଚିଠା ପ୍ରସ୍ତୁତ କରିବା ପାଇଁ ନିର୍ଦ୍ଦେଶ ଦେବାରେ ସେ ସମସ୍ତ ବିବରଣୀ ଲେଖି ଠିକ୍ ସମୟରେ ତାଙ୍କ ହାତରେ ଦେଇଥିଲେ । ସୁନାବେଡ଼ାରେ ଥିବା ହିନ୍ଦୁସ୍ଥାନ ଏରୋନାଟିକ୍ ଲିମିଟେଡ୍ ଓ ରାଉରକେଲାର ଇସ୍ପାତ କାରଖାନା ନିର୍ମାଣ ନିମନ୍ତେ ସେ ରାଜସ୍ୱ ମନ୍ତ୍ରୀ ଥିବା ସମୟରେ ସ୍ଥାନ ନିରୂପଣ କରିଥିଲେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କ ମୁଖ୍ୟମନ୍ତ୍ରୀ ଥିବା ସମୟରେ ସ୍ଥାପିତ ହୋଇଥିବା ଜଣାଯାଏ । ୧୯୬୬ ମସିହାରେ କଳାହାଣ୍ଡି ଓ କୋରାପୁଟର ଚନ୍ଦାହାଣ୍ଡି ଅଞ୍ଚଳରେ ଘୋର ଦୁର୍ଭିକ୍ଷ ପଡ଼ିବାରୁ ତାଙ୍କ ମୁଖ୍ୟମନ୍ତ୍ରିତ୍ୱରେ ସେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଡକାଇ ହେଲିକେପ୍ଟର ଯୋଗେ ସମସ୍ତ ଅଞ୍ଚଳ ବୁଲାଇ ଦେଖାଇଥିଲେ ଏବଂ ଅନ୍ନଛତ୍ର, ମାଗଣାରେ ଖାଦ୍ୟବସ୍ତ୍ର ବଣ୍ଟନ, ରାସ୍ତାଘାଟ, ପୋଖରୀ ନିର୍ମାଣ, ଚିକିତ୍ସା ଓ ନିରାପତ୍ତା ପାଇଁ ଲୋକଙ୍କୁ ସଚେତନ କରିବା ସମେତ ଜରୁରୀ ପଦକ୍ଷେପ ନେବାରୁ ଲୋକେ ଏକ ବଡ଼ ବିପଦରୁ ରକ୍ଷା ପାଇଥିଲେ ।

୧୯୮୦ ମସିହା ସେପ୍ଟେମ୍ବର ମାସ ୯ ତାରିଖରେ ଏହି ଜନନେତାଙ୍କର ପରଲୋକ ହୋଇଥିଲା । ଦେଶର ସ୍ୱାଧୀନତା ସଂଗ୍ରାମ ପାଇଁ ତାଙ୍କର ଉତ୍ସର୍ଗୀକୃତ ତ୍ୟାଗ, ଦେଶସେବା, ସଂସ୍କାରମୂଳକ କାର୍ଯ୍ୟ ଓ ସଚ୍ଚୋଟ ପଣିଆ ପାଇଁ ପ୍ରାତଃ ସ୍ମରଣୀୟ ହୋଇ ରହିବେ କାଳ କାଳ । ବିପ୍ଳବୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଭାଷାରେ ସଦାଶିବ ବାବୁଙ୍କ ବିୟୋଗ ଦାରୁଣ ଦୁଃଖଦାୟକ ଘଟଣା । ସଦାଶିବ ବାବୁ ବହୁ ବର୍ଷ ଆମ୍ଭମାନଙ୍କ ସହିତ ଜେଲ୍‌ରେ ଥିଲେ ଏବଂ କୋରାପୁଟ ଜିଲ୍ଲାରେ ଯେତେବେଳେ ଭୟରେ କେହି ସାଧାରଣ କାର୍ଯ୍ୟରେ ଯୋଗ ଦେବାକୁ ଆସୁନଥିଲେ । ସେତେବେଳେ ସେ ଶିକ୍ଷକତା ଛାଡ଼ି କଂଗ୍ରେସ ତରଫରୁ ପ୍ରାର୍ଥୀ ହେଲେ ଓ ବିଜୟ ହାସଲ କଲେ । ସେହିଦିନୁ ନିରବଚ୍ଛିନ୍ନ ଭାବରେ ଦେଶର ପ୍ରଶାସନିକ ବ୍ୟବସ୍ଥାପକ ଓ ସମାଜସେବା କାର୍ଯ୍ୟରେ ସେ ନିଜକୁ ନିୟୋଜିତ କରିଥିଲେ ଏବଂ କିଛି ଦିନ ମୁଖ୍ୟମନ୍ତ୍ରୀ ଥିଲେ । ଓଡ଼ିଶାର ସାଧାରଣ କ୍ଷେତ୍ର ତାଙ୍କର ବିୟୋଗରେ ଦାରୁଣ କ୍ଷତିଗ୍ରସ୍ତ ହେଲା ।

ଏମ୍.ଆଇ.ଜି.-ୱାନ-୪୨/୧
ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର-୧୬



# ସ୍ମରଣୀୟ ସଦାଶିବ ତ୍ରିପାଠୀ

ଡାକ୍ତର ଦୀନବନ୍ଧୁ ମହାରଣା

**ବିଂ**ଶ ଶତାବ୍ଦୀର ଆରମ୍ଭ କାଳରେ ଭାରତବର୍ଷର ପରିସ୍ଥିତି କଥା ଆଜି ହୁଏତ ଅନେକ ବିସ୍ମୃତ ହୋଇଯାଇଛନ୍ତି । ବ୍ରିଟିଶ ଶାସନର ଅବସାନ ପାଇଁ ସେହି ସମୟରୁ କିଛି କିଛି ସୀମିତ ପ୍ରଚେଷ୍ଟା ହୋଇଥିଲା ଯାହା ଦୀର୍ଘ ପଚାଶ ବର୍ଷ ପରେ ଫଳପ୍ରସୂ ହେଲା – ମହାତ୍ମା ଗାନ୍ଧୀଙ୍କ ଅହିଂସା ସତ୍ୟାଗ୍ରହ ଆନ୍ଦୋଳନଦ୍ୱାରା ।

ସେହି ସମୟରେ ଯେଉଁମାନେ ଜନ୍ମ ହୋଇଥିଲେ ସେମାନଙ୍କ ମଧ୍ୟରେ ଆମ ଓଡ଼ିଶାର ଦକ୍ଷିଣାଞ୍ଚଳ କୁହାଯାଉଥିବା କୋରାପୁଟ ନବରଙ୍ଗପୁର ଥିଲା ଏକ ଆଦିବାସୀବହୁଳ ଅଞ୍ଚଳ । ସେ ଅଞ୍ଚଳରେ ଆଧୁନିକ ସଭ୍ୟତାର ଆଲୋକ ପହଞ୍ଚିବା କଷ୍ଟକର ଥିଲା । ତଥାପି ସ୍ୱାଧୀନତା ସଂଗ୍ରାମର ପୂର୍ବାଭାସ ସାରାଭାରତ ପାଇଁ କିଛି ଆଶାର ଝଲକ ନେଇ ଦେଖା ଦେଇଥିଲା ।

ଏପରି ଏକ ପରାଧୀନ ଭାରତର ଅନ୍ଧାରୀ ଯୁଗରେ ଅବିଭକ୍ତ କୋରାପୁଟ ଜିଲ୍ଲାର ନବରଙ୍ଗପୁରଠାରେ ଜନ୍ମ ଗ୍ରହଣ କରିଥିଲେ ଓଡ଼ିଶାର ଅନ୍ୟତମ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ ୧୯୧୦ ମସିହା ୨୧ ଏପ୍ରିଲରେ । ପିତାଙ୍କ ନାମ ଲିଙ୍ଗରାଜ ତ୍ରିପାଠୀ ଓ ମାତାଙ୍କ ନାମ ତିଳୋତ୍ତମା ତ୍ରିପାଠୀ । ସେ କେବେ ଆଶା କରି ନଥିଲେ ଦିନେ ତାଙ୍କ ହାତରେ ଓଡ଼ିଶା ଶାସନର ଡୋରି ଅର୍ପିତ ହେବ । କିନ୍ତୁ ତାଙ୍କର ଭାଗ୍ୟରେ ଏପରି ଏକ ଗୌରବର ଟୀକା ଲେଖାଥିଲା ଯାହା ତାଙ୍କଭଳି ଜଣେ ମାଟ୍ରିକୁଲେଟ ଶିକ୍ଷା ପାଇଥିବା ଏବଂ ଶିକ୍ଷକତା କରୁଥିବା ଯୁବକକୁ ଘଟଣାଚକ୍ରରେ ଓଡ଼ିଶା ରାଜନୀତିରେ ପ୍ରବେଶ କରିବାର ସୁଯୋଗ ଦେଇଥିଲା । ସେ ୧୯୨୮ ମସିହାରୁ ୧୯୩୬ ମସିହା ପର୍ଯ୍ୟନ୍ତ ଶିକ୍ଷକତା କରିଥିଲେ । ସେତେବେଳକୁ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ପ୍ରମୁଖ ଓଡ଼ିଶାର ଭାଷା ଓ ସ୍ୱତନ୍ତ୍ର ପ୍ରଦେଶର ପରିଚୟ ପାଇଁ ସ୍ୱପ୍ନ ଦେଖୁଥିଲେ । ଶେଷରେ ସେ ସ୍ୱପ୍ନ ସାକାର ହେଲା । ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟ ଭାବରେ ଭାରତୀୟ ରାଷ୍ଟ୍ରରେ ଏକ ମର୍ଯ୍ୟାଦାଜନକ ସ୍ୱୀକୃତି ଲାଭ କଲା । ତାହା ପୂର୍ବରୁ ଓଡ଼ିଶା ବଙ୍ଗ, ବିହାର, ଆନ୍ଧ୍ର, ମଧ୍ୟପ୍ରଦେଶ ଏ ଚାରୋଟି ରାଜ୍ୟର ପ୍ରଭାବରେ ନିଷ୍ପ୍ରଭ ହୋଇଯାଇଥିଲା । ସେଥିନେଇ ଓଡ଼ିଶାକୁ ଏବଂ ସ୍ୱତନ୍ତ୍ର ରାଜ୍ୟ କରିବା ଦାବି ନେଇ ତତ୍କାଳୀନ ମନିଷୀମାନଙ୍କର ଆନ୍ଦୋଳନ ଚାଲିଥିଲା – ୧୯୩୬ ମସିହା ଏପ୍ରିଲ ପହିଲାରେ ଭାଷା ଭିତ୍ତିରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଭାବରେ ବ୍ରିଟିଶ ଭାରତରେ ଏକ ମୌଳିକ ସ୍ୱୀକୃତି ଲାଭ କରିଥିଲା ।

ସମଗ୍ର ଭାରତବର୍ଷକୁ ସ୍ୱାଧୀନ କରିବା ପାଇଁ ଯେଉଁ ଜାତୀୟ ସଂଗଠନ କାର୍ଯ୍ୟ କରୁଥିଲା ତାହା ଥିଲା ଜାତୀୟ କଂଗ୍ରେସ । ମହାତ୍ମା ଗାନ୍ଧୀ ସେହି କଂଗ୍ରେସ ସଂଗଠନକୁ ଦେଶ ସେବାର ଏକ ମାଧ୍ୟମ କରି ସାଧାରଣ ଜନତାଙ୍କ ନିକଟରେ ପହଞ୍ଚାଇଥିଲେ । ସ୍ୱାଧୀନତା ଆନ୍ଦୋଳନ ସେତେବେଳକୁ ଏକ ନିର୍ଦ୍ଦିଷ୍ଟ ରୂପ ନେଇ ସାରିଥିଲା । ସେହି ସମୟରେ ସଦାଶିବ ବାବୁ କଂଗ୍ରେସ ସଂସ୍ପର୍ଶରେ ଆସିଲେ ଏବଂ ସ୍ୱାଧୀନତା ଆନ୍ଦୋଳନର ବାର୍ତ୍ତାକୁ ସୁଦୂର ଦକ୍ଷିଣ ଓଡ଼ିଶାରେ ପହଞ୍ଚାଇବା ପାଇଁ ମହାତ୍ମା ଗାନ୍ଧୀଙ୍କୁ ଆଦର୍ଶ ରୂପେ ଗ୍ରହଣ କରିନେଲେ । ୧୯୪୧ ମସିହାରେ ସେ ପ୍ରତ୍ୟକ୍ଷ ଭାବରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ୧୯୪୨ ମସିହା 'ଭାରତଛାଡ଼' ଆନ୍ଦୋଳନର କାରାବନ୍ଦୀ ହୋଇଥିଲେ । ତାଙ୍କ ଭିତରେ ଦେଶପ୍ରେମ ଦାନା ବାନ୍ଧିବାକୁ ଲାଗିଲା ଏବଂ ସେ ୧୯୪୩ ମସିହାରୁ ୧୯୪୫ ମସିହା ପର୍ଯ୍ୟନ୍ତ ସକ୍ରିୟ ରାଜନୀତିକ ବ୍ୟକ୍ତି ଭାବରେ କୋରାପୁଟରେ ପ୍ରତିଷ୍ଠା ଲାଭ କଲେ । ସେ ବ୍ୟକ୍ତିଗତ ସତ୍ୟାଗ୍ରହୀ ଭାବରେ ବର୍ଷେ କାରାବରଣ କରିଥିଲେ । ତା' ପରଠାରୁ ସେ ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରିଣୀ କମିଟିର ସଭ୍ୟ ହୋଇଥିଲେ ।

ସଦାଶିବ ତ୍ରିପାଠୀ ଜଣେ ଅତି ଅମାୟିକ ପ୍ରକୃତିର ବ୍ୟକ୍ତିଥିଲେ । ସାଧୁତା ଓ ନିଷ୍ପାପରତା ଥିଲା ତାଙ୍କର ବିଶେଷତ୍ୱ । ରାଜନୀତି କଲେ ଯେ ଦୁର୍ନୀତି କରିବ ଏପରି ଏକ ସାଧାରଣ ଧାରଣାଠାରୁ ସେ ଥିଲେ ଊର୍ଦ୍ଧ୍ୱରେ । ସେ ୧୯୫୮ ମସିହାରୁ

୧୯୬୧ ମସିହା ପର୍ଯ୍ୟନ୍ତ ବିନୋବାଜୀଙ୍କ ପ୍ରବର୍ତ୍ତିତ ଭୂଦାନ ଯଜ୍ଞ ସମିତିର ସେ ସଂପାଦକ ଥିଲେ । ସେ ନବରଙ୍ଗପୁର ଓ ଉମରକୋଟ ଏ ଦୁଇଟି ସ୍ଥାନରୁ ବିଭିନ୍ନ ସମୟରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ପ୍ରଥମେ ସେ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳର ରାଜସ୍ୱ ମନ୍ତ୍ରୀ ଭାବରେ ବେଶ୍ ଦକ୍ଷତାର ସହିତ କାର୍ଯ୍ୟ କରିଥିଲେ । ରାଜସ୍ୱ ବିଭାଗକୁ ସେ ସୁବ୍ୟବସ୍ଥିତ କରିଥିବା ଯୋଗୁଁ ତାଙ୍କର ପ୍ରଶାସନିକ ଅଭିଜ୍ଞତାକୁ ଭିତ୍ତିକରି ୧୯୬୫ ମସିହାରୁ ୧୯୬୭ ମସିହା ପର୍ଯ୍ୟନ୍ତ ତାଙ୍କୁ ମୁଖ୍ୟମନ୍ତ୍ରୀ ହେବାର ସୁଯୋଗ ଅର୍ପିତ ହୋଇଥିଲା । ବିଧାନସଭା ପବ୍ଲିକ୍ ଆକାଉଣ୍ଟସ୍ କମିଟିର ସେ ମଧ୍ୟ ସଭ୍ୟ ହୋଇଥିଲେ ।

> ସାଧୁତା ଓ ନିଷ୍ଠାପରତା ଥିଲା ତାଙ୍କର ବିଶେଷତ୍ୱ । ରାଜନୀତି କଲେ ଯେ ଦୁର୍ନୀତି କରିବ ଏପରି ଏକ ସାଧାରଣ ଧାରଣାଠାରୁ ସେ ଥିଲେ ଊର୍ଦ୍ଧ୍ୱରେ ।

ତାଙ୍କ ସମୟରେ ଜମିଦାରୀ ଉଚ୍ଛେଦ ଆଇନ କାର୍ଯ୍ୟକାରୀ ହୋଇଥିଲା । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସମାଜବାଦୀ ଆଭିମୁଖ୍ୟ ଯୋଗୁଁ ସେହି ଆଇନ୍ ବହୁ ବାଦବିବାଦ ସତ୍ତ୍ୱେ ଓଡ଼ିଶାର ଚାଷୀମାନଙ୍କ ପାଇଁ ବରଦାନ ଭଳି ବିବେଚିତ ହୋଇଥିଲା । ରାଜସ୍ୱ ବିଷୟରେ ସଦାଶିବ ବାବୁଙ୍କଠାରେ ଅଧିକ ଅଭିଜ୍ଞତା ଥିଲା । ଜଣେ ମାଟ୍ରିକୁଲେଟ ଶିକ୍ଷକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାର ଗୌରବ ଲାଭ କରିବା କେବଳ ତାଙ୍କର ଦକ୍ଷତା ଓ ନୀତିନିଷ୍ଠତା ଯୋଗୁଁ ସମ୍ଭବ ହୋଇଥିଲା । ଦକ୍ଷିଣ ଓଡ଼ିଶାର ଅଗ୍ରଗଣ୍ୟ ପ୍ରବୀଣ ନେତା ଭାବରେ ସେ ଓଡ଼ିଶା ରାଜନୀତିରେ ନିର୍ଦ୍ଦିଷ୍ଟ ସ୍ଥାନ ଗ୍ରହଣ କରି ପ୍ରଶଂସିତ ହୋଇଛନ୍ତି । ୧୯୮୦ ମସିହା ସେପ୍ଟେମ୍ବର ୯ ତାରିଖରେ କଟକଠାରେ ତାଙ୍କର ଦେହାନ୍ତ ହୋଇଥିଲା । ତାଙ୍କ ଜନ୍ମର ଶତବର୍ଷର ସ୍ମୃତିରେ ସମ୍ମାନର ସହ ଶ୍ରଦ୍ଧାର୍ପଣ କରିବା ଆମର ପବିତ୍ର କର୍ତ୍ତବ୍ୟ ।

ଅଧ୍ୟକ୍ଷ, ଓଡ଼ିଶା ଆୟୁର୍ବେଦ ସେବା ସଦନ
୧୧୧, ମ୍ୟୁନିସିପାଲିଟି ମାର୍କେଟ
ଓ.ଏମ୍.ପି. ଛକ, କଟକ

---




କେନ୍ଦ୍ରାପଡ଼ାର ସାପ୍ତାହିକ ସମ୍ବାଦପତ୍ର 'ତୁଳସୀ କ୍ଷେତ୍ର'ର ଷଷ୍ଠ ବାର୍ଷିକୋତ୍ସବରେ 'ଉତ୍କଳ ପ୍ରସଙ୍ଗ'ର ମୁଖ୍ୟ ସଂପାଦକ ଉଦ୍‌ବୋଧନ ଦେଉଛନ୍ତି । ଅନ୍ୟମାନଙ୍କ ମଧ୍ୟରେ କେନ୍ଦ୍ରାପଡ଼ାର ବିଧାୟିକା ଶ୍ରୀମତୀ ସିପ୍ରା ମଲ୍ଲିକ, ପତ୍ରିକାର ସଂପାଦକ ଶ୍ରୀ ସୁଦର୍ଶନ ମହାପାତ୍ର ଓ ସାହିତ୍ୟିକ ଡଃ ସର୍ବେଶ୍ୱର ସେନ୍ ଉପସ୍ଥିତ ଅଛନ୍ତି । ୧୮.୧୦.୦୯

# ମହାନ୍ ଜନନାୟକ ସଦାଶିବ ତ୍ରିପାଠୀ

ଦେବାଶିଷ ପଟ୍ଟନାୟକ

ପ୍ରାକ୍ ସ୍ୱାଧୀନତା କାଳରେ ଓଡ଼ିଶାର କୋରାପୁଟ ପରି ଏକ ବଣ ପାହାଡ଼ ଘେରା ଅନୁନ୍ନତ ଅଞ୍ଚଳରୁ ଯେଉଁ କେତେଜଣ ସଂଗ୍ରାମୀ ଦେଶର ସ୍ୱାଧୀନତା ସଂଗ୍ରାମର ଉତ୍ତପ୍ତ ବହ୍ନିରେ ଝାସ ଦେଇଥିଲେ, ସେମାନଙ୍କ ମଧ୍ୟରେ ସଦାଶିବ ତ୍ରିପାଠୀ ପ୍ରାତଃ ସ୍ମରଣୀୟ । ସରଳତା, ନିରାଡ଼ମ୍ବରତା, ନିସ୍ୱାର୍ଥପରତା, ସେବା ମନୋବୃତ୍ତି ଥିଲା ତାଙ୍କର ଆଦର୍ଶ । ଏହି ଆଦର୍ଶକୁ ପାଥେୟ କରି ଜଣେ ସାଧାରଣ ସ୍କୁଲ ଶିକ୍ଷକରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦବୀ ପର୍ଯ୍ୟନ୍ତ ସେ ଆସିପାରିଥିଲେ ।

ସଦାଶିବ ତ୍ରିପାଠୀ ୧୯୧୦ ମସିହା ଏପ୍ରିଲ୍ ୨୧ ତାରିଖରେ ନବରଙ୍ଗପୁର ଅଞ୍ଚଳର ଏକ ଜମିଦାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ପିଲାଟି ଦିନରୁ ପାଠପଢ଼ା ପ୍ରତି ତାଙ୍କର ଅତ୍ୟନ୍ତ ଆଗ୍ରହ ଥିଲା । କଠିନ ପରିଶ୍ରମ କରି ସେ ପ୍ରଥମରୁ ମାଟ୍ରିକ୍ ଯାଏଁ ଠିକ୍ ସମୟରେ ପଢ଼ାଶେଷ କରିଥିଲେ । ମାତ୍ର ସେସମୟରେ କୋରାପୁଟ ଅଞ୍ଚଳ ତଥା ଆଖପାଖରେ ଉଚ୍ଚଶିକ୍ଷା ପାଇଁ ସୁବିଧା ସୁଯୋଗ ନଥିଲା ତେଣୁ ମାଟ୍ରିକ୍ ପରବର୍ତ୍ତୀ ସମୟରେ ସେ ଶିକ୍ଷକତା କରିବା ପାଇଁ ବ୍ରହ୍ମପୁର ଆସି ସେଠାରେ ଶିକ୍ଷକ ତାଲିମ ଗ୍ରହଣ କରିଥିଲେ । ମାତ୍ର ସ୍କୁଲ ପଢୁଥିବା ସମୟରୁ ମନ ଭିତରେ ସେ ସ୍ୱାଧୀନତା ଆନ୍ଦୋଳନକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରି ଆସୁଥିଲେ । କିନ୍ତୁ ଆନ୍ଦୋଳନରେ ଯୋଗଦେବା ପାଇଁ ସୁଯୋଗ ପାଉନଥିଲେ । ଶିକ୍ଷକ ତାଲିମ୍ ଗ୍ରହଣ କରିସାରିବା ପରେ ସେ ଜୟପୁର ହାଇସ୍କୁଲରେ ଶିକ୍ଷକତା ଜୀବନ ଆରମ୍ଭ କଲେ । ଶିକ୍ଷକତା ସମୟରେ ସେ ଛାତ୍ରମାନଙ୍କର ଅତି ଆଦରଣୀୟ ଶିକ୍ଷକ ଭାବେ ପ୍ରିୟଭାଜନ ହୋଇପାରିଥିଲେ । ସେ ଜଣେ ସୁବକ୍ତା ମଧ୍ୟ ଥିଲେ । ବିଭିନ୍ନ ସଭାସମିତିରେ ବକ୍ତାଭାବେ ତାଙ୍କୁ ନିମନ୍ତ୍ରିତ କରାଯାଉଥିଲା । ଶିକ୍ଷକତା କରିବାର କିଛିଦିନ ମଧ୍ୟରେ ସଦାଶିବ ଅନୁଭବ କଲେ ଯେ ଦେଶର ଘଡ଼ିସନ୍ଧି ମୁହୂର୍ତ୍ତରେ ସମସ୍ତେ ସ୍ୱାଧୀନତାର ନୂତନ ସ୍ୱାଦ ଚାଖିବା ପାଇଁ ବ୍ୟାକୁଳ ଭାବେ ଅପେକ୍ଷା କରିଛନ୍ତି । ଘରେ ଘରେ, ଗାଁ ଗାଁରେ, ସହର ସହରରେ ସବୁଆଡ଼େ ସ୍ୱାଧୀନତା ପ୍ରାପ୍ତିର ସ୍ୱପ୍ନ । ହଜାର ହଜାର ସଂଖ୍ୟାରେ ଲୋକେ ସ୍ୱାଧୀନତା ସଂଗ୍ରାମର ସ୍ରୋତରେ ସାମିଲ ହେଉଛନ୍ତି । ଦେଶପାଇଁ କିଛି କରିବାକୁ ଏହା ହିଁ ହେଉଛି ପ୍ରକୃଷ୍ଟ ସମୟ । ସ୍ୱାଧୀନତା ପ୍ରତି ପିଲାଦିନୁ ମନ ଭିତରେ ଭରି ରହିଥିବା ଅଦମ୍ୟ ଉତ୍ସାହ ହଠାତ୍ ବିସ୍ଫୋରିତ ହେଲା ଏବଂ ସେ ନିଷ୍ପତ୍ତି ନେଲେ ଯେ ଚାକିରି ଛାଡ଼ିଦେବେ କାରଣ ଚାକିରି ହେଉଛି ଗୋଟିଏ ଶୃଙ୍ଖଳ ଏଥିରେ ରହିଲେ ମନ ଭିତରେ ଭୟ ରହିବ, ଚାକିରି ଛାଡ଼ି ଦେଲେ ସେ ସ୍ୱାଧୀନ ହୋଇଯିବେ ଏବଂ ଦେଶର ସେବା କରିପାରିବେ । ଏପରି ଏକ ଦୋଦୁଲ୍ୟମାନ ପରିସ୍ଥିତିରେ ହଠାତ୍ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ଦେଶପାଇଁ ସମ୍ମୋହନକାରିଣୀ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ଚାକିରି ଛାଡ଼ି ସଦାଶିବବାବୁ ଆଗେଇ ଆସିଲେ ଦେଶକୁ ପରାଧୀନତାରୁ ମୁକ୍ତ କରିବା ପାଇଁ । ମହାତ୍ମା ଗାନ୍ଧୀଙ୍କର ପ୍ରତିଟି ଆହ୍ୱାନକୁ ଅବିଭକ୍ତ କୋରାପୁଟ ଜିଲ୍ଲାରେ ପ୍ରତିଫଳିତ କରିବା ପାଇଁ ସେ ମଙ୍ଗୁଆଳ ସାଜିଲେ । ତାଙ୍କର ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ସମଗ୍ର ଜିଲ୍ଲାରେ ଏପରିକି ଗାଁ ଗାଁରେ ବ୍ୟାପିବାକୁ ଲାଗିଲା । ତାଙ୍କ ସହିତ ତାଙ୍କର ସମକକ୍ଷ ସଂଗ୍ରାମୀ ଭାବେ ଥିଲେ ରାଧାକୃଷ୍ଣ ବିଶ୍ୱାସରାୟ, ଲକ୍ଷ୍ମଣ ନାଏକ, ରାଧାମୋହନ ସାହୁ ପ୍ରଭୃତି ଏବଂ ସେମାନଙ୍କ ପଛରେ ଥିଲେ ସମଗ୍ର କୋରାପୁଟ ଜିଲ୍ଲାର ଆଦିବାସୀ ସଂପ୍ରଦାୟ । ସଂଗ୍ରାମୀମାନେ ବିଭିନ୍ନ ସତ୍ୟାଗ୍ରହ ମାଧ୍ୟମରେ ସମସ୍ତଙ୍କ ମନରେ ଭରି ଦେଇଥିଲେ ସ୍ୱାଧୀନତାର ସ୍ୱପ୍ନ – କିଭଳି ଭାବେ ଆମେମାନେ ଇଂରେଜ ଶାସକଙ୍କୁ ଆମ ଦେଶରୁ ତଡ଼ି ଆମ ଦେଶ ଆମେ ନିଜେ ଚଳାଇବା । ସଦାଶିବ, ଲକ୍ଷ୍ମଣ ଏବଂ ରାଧାକୃଷ୍ଣଙ୍କ ନେତୃତ୍ୱରେ ସମସ୍ତେ ହାତରେ ତ୍ରିରଙ୍ଗା ପତାକା ଧରି ଆନ୍ଦୋଳନକୁ ଅଧିକରୁ ଅଧିକତର ତୀବ୍ର କରି ଇଂରେଜ ସରକାରଙ୍କୁ ବ୍ୟତିବ୍ୟସ୍ତ କରିପକାଇଲେ । ସଂଗ୍ରାମୀମାନେ ବିଭିନ୍ନ ସରକାରୀ ଅଫିସ୍‌ମାନଙ୍କରେ ତ୍ରିରଙ୍ଗା ପତାକା ଉଡ଼ାଇଲେ । ଏପରି ଏକ ମୁହୂର୍ତ୍ତରେ ୧୯୪୨ ମସିହା ଅଗଷ୍ଟ ୨୧ ତାରିଖରେ

ସଂଗ୍ରାମୀମାନେ ମାତିଲି ଥାନା ଉପରେ ତ୍ରିରଙ୍ଗା ପତାକା ଉଡ଼ାଇବାର ଅଭିଯାନ କରିଥିଲେ, ମାତ୍ର ପୋଲିସ୍‌ର ଅସହ୍ୟ ଦମନଲୀଳାରେ ଅଗ୍ରସର ହୋଇ ନଥିଲେ । ପୋଲିସ୍‌ର ବନ୍ଧୁକ ଗୁଳିରେ ଘଟଣାସ୍ଥଳରେ କେତେଜଣ ସଂଗ୍ରାମୀ ଶହୀଦ୍ ହୋଇଯାଇଥିଲେ । ଲାଠି ମାଡ଼ରେ ଅନେକ ଆହତ ହୋଇଥିଲେ । ଲକ୍ଷ୍ମଣ ନାଏକଙ୍କ ଉପରେ ପ୍ରବଳ ଅତ୍ୟାଚାର କରାଯାଇଥିଲା ଏବଂ ପୋଲିସ୍ ଏକ ମିଥ୍ୟା ନରହତ୍ୟା ମାମଲା (ଫରେଷ୍ଟ ଗାର୍ଡ଼ଙ୍କୁ ହତ୍ୟା)ରେ ଫସାଇ ତାଙ୍କୁ ଗିରଫ କରିନେଲା । ମାତ୍ର ସଦାଶିବ ବାବୁଙ୍କୁ ପୋଲିସ୍ ସେଠାରେ ଧରି ପାରିନଥିଲା । କିଛି ଦିନ ଲୁଚିଛପି ସଂଗ୍ରାମ କରିବା ପରେ ସଦାଶିବ ବାବୁଙ୍କୁ ମଧ୍ୟ ପୋଲିସ୍ ଗିରଫ କରିନେଲା । ସଦାଶିବ ବାବୁ, ଲକ୍ଷ୍ମଣ ନାଏକ ଉଭୟ ବ୍ରହ୍ମପୁର ଜେଲ୍‌ରେ ବନ୍ଦୀ ଭାବେ ରହିଲେ । ମିଥ୍ୟା ନରହତ୍ୟା ଅପରାଧରେ ଲକ୍ଷ୍ମଣ ନାଏକ ୧୯୪୩ ମସିହା ମାର୍ଚ୍ଚ ୨୯ ତାରିଖରେ ଫାଶୀ ପାଇଲେ । ଦେଶ ପାଇଁ ହସି ହସି ପ୍ରାଣବଳି ଦେଲେ । ଫାଶୀ ଖୁଣ୍ଟକୁ ଯିବା ପୂର୍ବରୁ ଲକ୍ଷ୍ମଣ ନାଏକ ତାଙ୍କର ସଂଗ୍ରାମୀ ବନ୍ଧୁ ସଦାଶିବଙ୍କୁ ଦେଶ ନିଶ୍ଚୟ ସ୍ୱାଧୀନତା ପ୍ରାପ୍ତି ହେବ ବୋଲି ଆଶ୍ୱାସନା ଦେଇ କହିଥିଲେ 'ଯଦି ଆକାଶରେ ସୂର୍ଯ୍ୟ ଚନ୍ଦ୍ର ସତ ତେବେ ଦେଖିବ ସ୍ୱରାଜ ନିଶ୍ଚେ ଆସିବ ।' ଲକ୍ଷ୍ମଣ ନାଏକ ଥିଲେ ସଦାଶିବଙ୍କର ଅତି ଅନ୍ତରଙ୍ଗ ସଂଗ୍ରାମୀବନ୍ଧୁ । ତାଙ୍କର ବଳିଦାନକୁ ସଦାଶିବ ଶେଷ ପର୍ଯ୍ୟନ୍ତ ମଧ୍ୟ ଭୁଲି ପାରୁନଥିଲେ । ଯେତେବେଳେ ବ୍ରହ୍ମପୁର ଯାଆନ୍ତି, ତାଙ୍କ ମନକୁ ଆନ୍ଦୋଳିତ କରୁଥାଏ ବ୍ରହ୍ମପୁର ଜେଲ୍‌ର ସେହି କାଳରାତ୍ରି ଏବଂ ତାଙ୍କର ମନେ ପଡ଼ିଯାଏ ତାଙ୍କର ପ୍ରିୟ ସଂଗ୍ରାମୀ ବନ୍ଧୁ ଲକ୍ଷ୍ମଣ ନାଏକଙ୍କ କଥା । ଲକ୍ଷ୍ମଣ ନାଏକ ଫାଶୀ ପାଇବାର କିଛି ଦିନ ପରେ ଅନ୍ୟ ସମସ୍ତ ବନ୍ଦୀମାନେ ଧୀରେ ଧୀରେ ମୁକ୍ତ ହେଲେ ଏବଂ ଆନ୍ଦୋଳନର କାରଣ ସ୍ୱରୂପ ପରିଶେଷରେ ଦେଶ ସ୍ୱାଧୀନ ହେଲା ।

ଭୂ-ସଂସ୍କାର ଆଇନ୍‌ର ସେ ମୁଖ୍ୟ କର୍ଣ୍ଣଧାର ଥିଲେ । ନିଜେ ଆଇନ ପ୍ରଚଳନ କରିବା ସହିତ ନିଜ ଜମିଦାରୀର ଶହ ଶହ ଏକର ଜମିକୁ ମଧ୍ୟ ସେ ଗରିବ ଲୋକଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ ।

ସ୍ୱାଧୀନୋତ୍ତର ଓଡ଼ିଶାର ବିଧାନସଭାକୁ କଂଗ୍ରେସ ପ୍ରାର୍ଥୀଭାବେ ନବରଙ୍ଗପୁର ବିଧାନସଭା ଆସନରୁ ବହୁ ସଂଖ୍ୟକ ଭୋଟ ପାଇ ସଦାଶିବ ବାବୁ ବିଧାୟକ ଭାବେ ତାଙ୍କର କାର୍ଯ୍ୟ ଆରମ୍ଭ କଲେ । ମନ ଭିତରେ ତାଙ୍କର ଭରି ରହିଥିଲା ସାଧାରଣ ଜନତାଙ୍କ ପାଇଁ ସେବା ମନୋବୃତ୍ତି । ନିର୍ବାଚିତ ଜନପ୍ରତିନିଧି ଭାବେ ଗରିବ ଲୋକଙ୍କର ସୁଖଦୁଃଖ ବୁଝିବା ତାଙ୍କର ପ୍ରଥମ କର୍ତ୍ତବ୍ୟ । ସରଳ, ନିରାଡ଼ମ୍ବର ଭାବେ ଜୀବନ ବିତାଇବା ସହ ଗରିବ ଜନତାଙ୍କ ସେବାରେ ସେ ନିଜକୁ ସମର୍ପିତ କରିଦେଇଥିଲେ । ବିଧାନସଭାରେ ନିଜ ଅଞ୍ଚଳର ଗରିବ ଲୋକମାନଙ୍କର ଅଭାବ ଅସୁବିଧାକୁ ସେ ଦୃଢ଼ ଭାବେ ଉପସ୍ଥାପନ କରୁଥିଲେ । ନିଜ ଅଞ୍ଚଳକୁ ସର୍ବଦା ଯାଇ ଲୋକଙ୍କର ଭଲମନ୍ଦ ବୁଝିବା ସହ କିପରି ସେମାନଙ୍କର ସୁବିଧା ସୁଯୋଗ ମିଳିବ ସେଥିପ୍ରତି ମଧ୍ୟ ଯତ୍ନବାନ ହେଉଥିଲେ ।

୧୯୪୯ ମସିହା ମେ ମାସ ୧୫ ତାରିଖରେ ଡଃ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଓଡ଼ିଶାର ମନ୍ତ୍ରିମଣ୍ଡଳ ଗଠିତ ହେଲା । ସଦାଶିବ ବାବୁଙ୍କୁ ଏଥିରେ ରାଜସ୍ୱ, ଯୋଗାଣ ଓ ପରିବହନ ବିଭାଗର ମନ୍ତ୍ରୀ ପଦ ମିଳିଥିଲା । ସଦାଶିବ ବାବୁ ଥିଲେ ଜଣେ ରାଜସ୍ୱ ବିଶାରଦ ବ୍ୟକ୍ତି । କେବଳ ହରେକୃଷ୍ଣ ମହତାବଙ୍କ ମୁଖ୍ୟମନ୍ତ୍ରିତ୍ୱ ବେଳେ ନୁହଁ ପରେ ପରେ ନବକୃଷ୍ଣ ଚୌଧୁରୀ, ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର ପ୍ରଭୃତି ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱାଧୀନ ସରକାରରେ ସେ କ୍ରମାଗତ ଭାବେ ରାଜସ୍ୱ ମନ୍ତ୍ରୀ ରୂପେ କାର୍ଯ୍ୟ କରିଥିଲେ । ତାଙ୍କରି ରାଜସ୍ୱ ମନ୍ତ୍ରୀ କାଳରେ ଓଡ଼ିଶାରେ ଭୂ-ସଂସ୍କାର ଆଇନ୍ ପ୍ରଚଳନ ସହିତ ଜମିଦାରୀ ଉଚ୍ଛେଦ କରାଗଲା । ଭୂମିହୀନ, ଗରିବ ଖଟିଖିଆ ନ୍ୟାଯ୍ୟ ଅଧିକାର ପାଇଲେ । ଏହି ଭୂ-ସଂସ୍କାର ଆଇନ୍‌ର ସେ ମୁଖ୍ୟ କର୍ଣ୍ଣଧାର ଥିଲେ । ନିଜେ ଆଇନ ପ୍ରଚଳନ କରିବା ସହିତ ନିଜ ଜମିଦାରୀର ଶହ ଶହ ଏକର ଜମିକୁ ମଧ୍ୟ ସେ ଗରିବ ଲୋକଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ଜଣେ ଦକ୍ଷ ରାଜସ୍ୱ ମନ୍ତ୍ରୀ ଭାବେ ତାଙ୍କର ଖୁବ୍ ପ୍ରସିଦ୍ଧି ଥିଲା । ୧୯୬୫ ମସିହାରେ ମୁଖ୍ୟମନ୍ତ୍ରୀ ପଦବୀରୁ ବୀରେନ୍ ମିତ୍ରଙ୍କର ଇସ୍ତଫା ପ୍ରଦାନ ପରେ ସଦାଶିବ ବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦବୀ ଗ୍ରହଣ କରି ୧୯୬୫-୬୭ ଦୁଇ ବର୍ଷ ଧରି ସୂଚାରୁ ରୂପେ ତାଙ୍କର ଦାୟିତ୍ୱ ତୁଲାଇ ଥିଲେ । ରାଜସ୍ୱ ବିଭାଗ ସହିତ ଅନ୍ୟାନ୍ୟ ବିଭାଗ ଯଥା- ଶିଳ୍ପ, ଶିକ୍ଷା, ଜଳସେଚନ, ଶକ୍ତି ପ୍ରଭୃତି ଜନମଙ୍ଗଳକାରୀ ବିଭାଗର ଉନ୍ନତି ପ୍ରତି ମଧ୍ୟ ସେ ବିଶେଷ ଧ୍ୟାନ ଦେଉଥିଲେ । ରାଜ୍ୟର ସର୍ବୋଚ୍ଚ ଆସନରେ ବସି ସାରିବା ପରେ ମଧ୍ୟ ତାଙ୍କର ଚଳଣୀରେ କୌଣସି ପରିବର୍ତ୍ତନ ନଥିଲା । ସେ ଅତି ସାଧାରଣ ଭାବରେ ଜୀବନଯାପନ କରୁଥିଲେ । ମୁଖ୍ୟମନ୍ତ୍ରୀ ପଦବୀ ପରେ ସେ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱାଧୀନ ସରକାର ବେଳେ ବିରୋଧୀ ଦଳ ନେତା ଭାବେ ବିଧାନସଭାରେ ଦାୟିତ୍ୱ ତୁଲାଇଥିଲେ । ବିରୋଧୀ ଦଳ ନେତା ଭାବେ ସେ ସରକାରଙ୍କୁ ଅଯଥା ସମାଲୋଚନା ନକରି ସର୍ବଦା ଗଠନମୂଳକ ପରାମର୍ଶ ଦେଉଥିଲେ । ମୁଖ୍ୟମନ୍ତ୍ରୀ ଭାବେ ଅଥବା

ବିରୋଧୀ ଦଳ ନେତାଭାବେ ଯେଉଁ ଆସନରେ ଥିଲେ ମଧ୍ୟ ସେ ସର୍ବଦା ଜନସାଧାରଣଙ୍କ ସ୍ୱାର୍ଥ ପ୍ରତି ନଜର ଦେଉଥିଲେ । ନିରାଡ଼ମ୍ବର ଜୀବନଯାପନକୁ ସେ ଭଲ ପାଉଥିଲେ । ସର୍ବଦା ଗରିବ ଓ ଅସହାୟ ଲୋକଙ୍କୁ ସାହାଯ୍ୟ କରୁଥିଲେ । ସଦାଶିବବାବୁ ଦୀର୍ଘଦିନ ଧରି ନବରଙ୍ଗପୁର ଓ ଉମରକୋଟରୁ ନିର୍ବାଚିତ ହୋଇ ବିଧାୟକଭାବେ ବହୁ ଲୋକ ହିତକର କାର୍ଯ୍ୟ କରିଯାଇଛନ୍ତି । ରାଜନୀତିରୁ ଅବସର ନେଇ ପୁଣିଥରେ ସାଧାରଣ ମନୁଷ୍ୟ ଭାବେ ସମାଜସେବା କରିବା ପାଇଁ ସେ ନିଜର ଭିଟାମାଟି ନବରଙ୍ଗପୁର ଅଞ୍ଚଳକୁ ଫେରି ଯାଇଥିଲେ । ପୂର୍ବତନ ମୁଖ୍ୟମନ୍ତ୍ରୀ ଭାବେ ଯଦି ସେ ଚାହିଁଥାନ୍ତେ ତେବେ ରାଜଧାନୀରେ ମଧ୍ୟ ଘରଟିଏ କରି ରହିପାରିଥାନ୍ତେ । ମାତ୍ର ସେ ହେଉଛନ୍ତି ଜଣେ ଆଦର୍ଶବାଦୀ ଦେଶ ସେବକ । ସେଥିପାଇଁ ସେ ରାଜନୀତିରୁ ଅବସର ନେଇଯାଇଥିଲେ । ଅବସର ନେଇଥିଲେ ରାଜନୀତିରୁ, କିନ୍ତୁ ସମାଜସେବାରୁ ନୁହେଁ । ତାଙ୍କ ଅଞ୍ଚଳର ପିଲାମାନଙ୍କର କିଭଳି ସର୍ବବିଧ ଉନ୍ନତି ଘଟିବ, ଶିକ୍ଷା ବ୍ୟବସ୍ଥାର କିଭଳି ଉନ୍ନତି ଘଟିବ, ଗାଁ ଗହଳିରୁ କିଭଳି ଅସୁବିଧା ଦୂର ହେବ ଏସବୁ କାମରେ ସେ ନିଜକୁ ସମ୍ପୂର୍ଣ୍ଣ ରୂପେ ନିୟୋଜିତ କରିଦେଲେ । ମନ୍ତ୍ରୀ ଥିଲାବେଳେ ସମଗ୍ର ଓଡ଼ିଶାର ଶିକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିବା ପାଇଁ ସେ ମଧ୍ୟ ବହୁ ପଦକ୍ଷେପ ନେଇଥିଲେ । ଶିକ୍ଷା ବିକାଶ କ୍ଷେତ୍ରରେ ଅବଦାନ ପାଇଁ ତାଙ୍କୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ସମ୍ମାନଜନକ ଡକ୍ଟରେଟ୍ ଉପାଧି ପ୍ରଦାନ କରାଯାଇଥିଲା ।

ଏହି ମହାନ୍ ଜନନାୟକ ନିଃସ୍ୱାର୍ଥପର ଦେଶସେବକଙ୍କର ୧୯୮୦ ମସିହା ସେପ୍ଟେମ୍ବର ୯ ତାରିଖ ଦିନ କଟକସ୍ଥିତ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ବିୟୋଗ ଘଟିଥିଲା । ତାଙ୍କ ବିୟୋଗରେ ଓଡ଼ିଶାର ରାଜନୀତିକ ତଥା ସାମାଜିକ ଆକାଶରୁ ଏକ ଉଜ୍ଜ୍ୱଳତମ ଜ୍ୟୋତିଷ୍କର ଅବସାନ ଘଟିଥିଲା । ତାଙ୍କର ନୀତି, ଆଦର୍ଶ ଏବଂ ବ୍ୟବହାର ସର୍ବଦା ଜନସାଧାରଣଙ୍କୁ ପ୍ରଭାବିତ କରିଆସୁଥିଲା । ସେ ଆଜି ନାହାନ୍ତି ସତ କିନ୍ତୁ ତାଙ୍କର ଅମର ସ୍ମୃତି ଚିରଦିନ ପାଇଁ ଆମ ନିମନ୍ତେ ପ୍ରେରଣାର ଉତ୍ସ ହୋଇ ରହିଥିବ, ଏହା ନିଃସନ୍ଦେହ ।

ରଚନା ଶାଖା
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

---

## କୋଣାର୍କ ମନ୍ଦିରର ସୁରକ୍ଷା ପାଇଁ ପ୍ରଧାନମନ୍ତ୍ରୀଙ୍କୁ ମୁଖ୍ୟମନ୍ତ୍ରୀଙ୍କ ଚିଠି

କୋଣାର୍କ ସୂର୍ଯ୍ୟ ମନ୍ଦିରରୁ ପଥର ଖସିବା ପରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସଂସ୍ଥା (ଆଇ.ଏସ୍.ଆଇ.)ର କାର୍ଯ୍ୟ ଦକ୍ଷତା ଉପରେ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏଥିପାଇଁ ଉଦ୍‌ବେଗ ପ୍ରକାଶ କରିବା ସହିତ ପ୍ରଧାନମନ୍ତ୍ରୀ ଡଃ ମନମୋହନ ସିଂଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ମୁଖ୍ୟମନ୍ତ୍ରୀ ଏ ସଂକ୍ରାନ୍ତରେ ପ୍ରଧାନମନ୍ତ୍ରୀଙ୍କୁ ଚିଠି ଲେଖିଛନ୍ତି । ମୁଖ୍ୟମନ୍ତ୍ରୀ ତାଙ୍କ ପତ୍ରରେ ଦର୍ଶାଇଛନ୍ତି ଯେ କୋଣାର୍କ ସୂର୍ଯ୍ୟ ମନ୍ଦିରର ଆନ୍ତର୍ଜାତିକ ମହତ୍ୱ ରହିଛି । ଏହା କେବଳ ଓଡ଼ିଶାର ନୁହେଁ, ଦେଶର ଗର୍ବ ଓ ଗୌରବ । ପ୍ରତିଦିନ ହଜାର ହଜାର ପର୍ଯ୍ୟଟକ କୋଣାର୍କର ସୂର୍ଯ୍ୟ ମନ୍ଦିର ଦେଖିବାକୁ ଆସିଥାନ୍ତି । କିନ୍ତୁ ଆଇ.ଏସ୍.ଆଇ.ର ରକ୍ଷଣାବେକ୍ଷଣ ଅଭାବରୁ ଏହି ମନ୍ଦିରର କ୍ଷତି ସାଧନ ହେଉଛି । ଅନେକ ସମୟରେ ମନ୍ଦିରଗାତ୍ରରୁ ପଥର ଖସିବା ଭଳି ଘଟଣା ଘଟୁଛି । ନିକଟରେ ମନ୍ଦିରର ଘୋଡ଼ାଦ୍ୱାର ନିକଟରେ ଏକ ପଥର ଝୁଲନ୍ତା ଅବସ୍ଥାରେ ରହିଥିବାରୁ ତାହା ଦର୍ଶକଙ୍କ ମନରେ ଗଭୀର ଅସନ୍ତୋଷ ସୃଷ୍ଟି କରିଛି । ଆଇ.ଏସ୍.ଆଇ. ଯେଉଁଭଳି ଢଙ୍ଗରେ ଏହି ପ୍ରାଚୀନ କୀର୍ତ୍ତିରାଜିର ରକ୍ଷଣାବେକ୍ଷଣ କରୁଛି ତାହା ମନ୍ଦିରର ସ୍ଥାୟିତ୍ୱ ଓ ଭବିଷ୍ୟତପ୍ରତି ସନ୍ଦେହ ସୃଷ୍ଟି କରିଛି । କୋଣାର୍କ ଭଳି ଏକ ଅମୂଲ୍ୟ କୀର୍ତ୍ତିରାଜିର ରକ୍ଷଣାବେକ୍ଷଣ ପାଇଁ ଏକ ଦୀର୍ଘମିଆଦୀ ଯୋଜନା ପ୍ରସ୍ତୁତ କରିବା ସହିତ ମନ୍ଦିରର ଉପଯୁକ୍ତ ଯାଞ୍ଚ ପାଇଁ ଏକ ବିଶେଷଜ୍ଞ ଦଳ ପଠାଇବାକୁ ମୁଖ୍ୟମନ୍ତ୍ରୀ ପ୍ରଧାନମନ୍ତ୍ରୀଙ୍କୁ ଅନୁରୋଧ କରିଛନ୍ତି ।

# କର୍ତ୍ତବ୍ୟନିଷ୍ଠ ସଦାଶିବ ତ୍ରିପାଠୀ

ବିପିନ ବିହାରୀ ରାଉତ

**ଉ**ତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କର ଭାଷାରେ –

'ମନୁଷ୍ୟ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।'

ବାସ୍ତବରେ ସ୍ଥାନ, କାଳ, ପାତ୍ର ନିର୍ବିଶେଷରେ କର୍ମ ହିଁ ମନୁଷ୍ୟର ପ୍ରକୃତ ପରିଚୟ, ମହାନତାର ମାପକାଠି । ଏହିଭଳି କର୍ତ୍ତବ୍ୟନିଷ୍ଠା ଓ କର୍ମପ୍ରବଣତା ମାଧ୍ୟମରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲେ ଓଡ଼ିଶାର ଜଣେ ସୁଯୋଗ୍ୟ ସନ୍ତାନ, ଭୂତପୂର୍ବ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ । ବନ, ପାହାଡ଼ ଘେରା ବନବାସୀ ଅଧୁଷିତ ବିକାଶର ଆଲୋକଠାରୁ ଅନେକ ଦୂରରେ ଥିବା କୋରାପୁଟ ଜିଲ୍ଲାର ନବରଙ୍ଗପୁରଠାରେ ଆବିର୍ଭୂତ ହୁଅନ୍ତି ଶ୍ରୀ ତ୍ରିପାଠୀ ୧୯୧୦ ମସିହା ଏପ୍ରିଲ ୨୧ର ଏକ ଶୁଭ ମୁହୂର୍ତ୍ତରେ । କିଏ ଜାଣେ ଏହି ଶିଶୁ ଦିନେ କେବଳ କୁଳକୁ ନୁହେଁ ସମଗ୍ର ଓଡ଼ିଶା ପ୍ରଦେଶକୁ ଗୌରବ ଆଣି ଦେବ ବୋଲି ? ସେମିତିତ ଦେଖିବାକୁ ଗଲେ ଶ୍ରୀ ତ୍ରିପାଠୀ ତାଙ୍କର ସାର୍ବଜନୀନ ଜୀବନ ଆରମ୍ଭ କରିଥିଲେ ଶିକ୍ଷକତାରୁ । ଜଣେ ଛାତ୍ରବତ୍ସଳ, କର୍ମକୁଶଳ ଶିକ୍ଷକ ଭାବରେ ପ୍ରସିଦ୍ଧି ଓ ସ୍ଥାନୀୟ ସ୍ତରରେ ଲୋକପ୍ରିୟତା ଅର୍ଜନ କରିଥିଲେ ମଧ୍ୟ ତାଙ୍କ ପାଇଁ ଜନସେବାର ଏକ ବିସ୍ତୃତ କ୍ଷେତ୍ର ସତେ ଯେପରି ଅପେକ୍ଷା କରି ରହିଥିଲା । କିଛି କାଳ ଶିକ୍ଷକତା କରିବା ପରେ ସେ ରାଜନୀତିକୁ ଜନସେବାର ମାଧ୍ୟମ ଭାବେ ଆଦରି ନେଲେ । ଯୋଗଦେଲେ ଜାତୀୟ କଂଗ୍ରେସରେ । ଅନୁନ୍ନତ, ଅଶିକ୍ଷିତ, ସରଳ, ନିରୀହ, ନିରକ୍ଷର ଆଦିବାସୀମାନଙ୍କ ମଧ୍ୟରେ ସେ ଖେଳାଇ ଦେଲେ ନୂତନ ଜାଗରଣ, ଭରି ଦେଲେ ଅଭିନବ ପ୍ରେରଣା । ସେତେବେଳେ ଗାନ୍ଧିଜୀଙ୍କ ନେତୃତ୍ୱରେ ସମଗ୍ର ଦେଶରେ ଚାଲିଥାଏ ସ୍ୱାଧୀନତା ଆନ୍ଦୋଳନ । ହେଉଥାଏ ସଭାସମିତି, ସତ୍ୟାଗ୍ରହ ଓ ଧର୍ମଘଟ । ବ୍ରିଟିଶ ଶାସନ ବିରୋଧରେ ଲଢ଼େଇ କରି ସଂଗ୍ରାମୀମାନେ କାରାବରଣ କରୁଥାଆନ୍ତି । ସ୍ୱର୍ଗତଃ ତ୍ରିପାଠୀ ମଧ୍ୟ କୋରାପୁଟ ଜିଲ୍ଲାରେ ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନେଇ ଜନଜାଗରଣ କରିବାକୁ ଲାଗିଲେ । ଫଳସ୍ୱରୂପ ତାଙ୍କୁ ୧୯୪୧ ମସିହାରେ ବ୍ୟକ୍ତିଗତ ଭାବେ ସତ୍ୟାଗ୍ରହ କରିବା ଲାଗି ଏକ ବର୍ଷ ପାଇଁ କାରାବରଣ କରିବାକୁ ପଡ଼ିଥିଲା । ଏହାପରେ ମହାତ୍ମା ଗାନ୍ଧୀଙ୍କଦ୍ୱାରା ଡାକରା ଦିଆଗଲା ଭାରତଛାଡ଼ ଆନ୍ଦୋଳନ । ଏଥିରେ ମଧ୍ୟ ସ୍ୱର୍ଗତଃ ତ୍ରିପାଠୀ ଝାସ ଦେଲେ ଏବଂ କାରାଗାରରେ ବନ୍ଦୀ ଜୀବନ ବିତାଇଲେ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା କିନ୍ତୁ ସଦାଶିବ ବାବୁଙ୍କ ସଂଗ୍ରାମୀ ଜୀବନରେ କୌଣସି ପରିବର୍ତ୍ତନ ପରିଦୃଷ୍ଟ ହେଲା ନାହିଁ । ସେ ଦ୍ୱିଗୁଣ ଉତ୍ସାହିତ ହୋଇ ନିଜକୁ ନିୟୋଜିତ କଲେ ସନ୍ଥ ବିନୋବା ଭାବେଙ୍କର ଭୂଦାନ ଆନ୍ଦୋଳନରେ । ନିଜର ତ୍ୟାଗ, ନିଷ୍ଠା ଓ କର୍ତ୍ତବ୍ୟ ପରାୟଣତା ଯୋଗୁଁ ତାଙ୍କୁ ଓଡ଼ିଶା ଭୂଦାନ ସମିତିର ସଂପାଦକ କରାଗଲା । ଏହି ଦାୟିତ୍ୱରେ ସେ ୧୯୫୮ରୁ ୧୯୬୧ ମସିହା ପର୍ଯ୍ୟନ୍ତ ରହିଥିଲେ । ଏଥିସହ ସେ ଅଖିଳ ଭାରତୀୟ କଂଗ୍ରେସ କମିଟିର ସଭ୍ୟ ରୂପେ ମଧ୍ୟ କାର୍ଯ୍ୟ କରି ଜାତୀୟ ସ୍ତରରେ ନିଜର ବିଶେଷ ଭୂମିକା ନିର୍ବାହ କରିଥିଲେ । ୧୯୩୮ରୁ ୧୯୫୫ ମସିହା ପର୍ଯ୍ୟନ୍ତ ଦୀର୍ଘ ସତର ବର୍ଷ ଧରି ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର କାର୍ଯ୍ୟକାରୀ ସମିତିର ସଦସ୍ୟ ଥିଲେ । ଓଡ଼ିଶା ସରକାରରେ ଜଣେ ମନ୍ତ୍ରୀ ଭାବେ ଦୀର୍ଘକାଳ ଧରି କାର୍ଯ୍ୟ କଲାବେଳେ ସେ ନିଜର ଦକ୍ଷତା ପ୍ରମାଣ କରିଥିଲେ । ରାଜସ୍ୱ ବିଭାଗର ସଂସ୍କାର, ସୁପରିଚାଳନା ଓ କ୍ଷମତା ବୃଦ୍ଧି ଦିଗରେ ସଦାଶିବ ବାବୁଙ୍କର ଯଥେଷ୍ଟ ଅବଦାନ ଥିଲା । କାରଣ ତାଙ୍କର ଦୀର୍ଘ ପ୍ରାୟ ଉଣେଇଶ ବର୍ଷର ମନ୍ତ୍ରିତ୍ୱ କାଳରେ ସେ ମୁଖ୍ୟତଃ ରାଜସ୍ୱ ବିଭାଗର ଦାୟିତ୍ୱ ହିଁ ପାଇଥିଲେ ଏବଂ ତାହାକୁ ପ୍ରଭାବଶାଳୀ ଢଙ୍ଗରେ କାର୍ଯ୍ୟକାରୀ କରିଥିଲେ । ସେ ରାଜସ୍ୱ ମନ୍ତ୍ରୀ ଥିବାବେଳେ ହିଁ ଜମିଦାରୀ ଉଚ୍ଛେଦ ଏବଂ ଭୂ-ସଂଶୋଧନ ବିଲ୍ ପାସ୍ ହୋଇଥିଲା ଯାହାକୁ ସେ ଦକ୍ଷତାର ସହ ବିଧାନସଭାରେ ପରିଚାଳନା କରିଥିଲେ । ତାହାଥିଲା ତାଙ୍କ ମନ୍ତ୍ରିତ୍ୱକାଳର ସବୁଠାରୁ ବଡ଼ ଯୁଗାନ୍ତକାରୀ ପଦକ୍ଷେପ ଏବଂ ଉପଲବ୍ଧି ।

ସାର୍ବଜନୀନ ଜୀବନରେ ସେବାଭାବେ, କର୍ତ୍ତବ୍ୟନିଷ୍ଠା ଓ ଦକ୍ଷତା ପ୍ରତିପାଦନ ଉପରେ ବିଶ୍ୱାସ ସ୍ଥାପନ କରିଥିବା ସଦାଶିବ ବାବୁ ଶେଷରେ ଓଡ଼ିଶା ପ୍ରଦେଶର ମୁଖ୍ୟମନ୍ତ୍ରୀ ମଧ୍ୟ ହେଲେ । ୧୯୬୫ ଫେବୃଆରୀ ୨୧ରୁ ୧୯୬୭ ମାର୍ଚ୍ଚ ଯାଏଁ – ମାତ୍ର ଦୁଇ ବର୍ଷ ପାଇଁ ସେ ଏହି ଦାୟିତ୍ୱରେ ଅବସ୍ଥାପିତ ହୋଇଥିଲେ ହେଁ ଜଣେ ଦକ୍ଷ ପ୍ରଶାସକ ନୀତିନିଷ୍ଠ ଜନସେବକ ଭାବେ ସେ ତାଙ୍କର ଏକ ବିଶେଷ ପ୍ରଭାବ ଓଡ଼ିଶା ରାଜନୀତିରେ ଛାଡ଼ି ଯିବାକୁ ସକ୍ଷମ ହୋଇଥିଲେ । ବନବାସୀ ଅଧ୍ୟୁଷିତ କୋରାପୁଟ ଜିଲ୍ଲାର ନବରଙ୍ଗପୁର ଓ ଉମରକୋଟ ନିର୍ବାଚନ ମଣ୍ଡଳୀରୁ ସେ ୧୯୩୭, ୧୯୪୬, ୧୯୫୨, ୧୯୫୭, ୧୯୬୧ ଓ ୧୯୬୭ରେ ଜନପ୍ରତିନିଧି ଭାବେ ନିର୍ବାଚିତ ହୋଇଥିଲେ ଯାହାକି ତାଙ୍କର ଲୋକପ୍ରିୟତାର ପରିଚାୟକ । ଏହିଭଳି ସଦାଶିବ ବାବୁଙ୍କର ରାଜନୈତିକ ଜୀବନକାଳ ଅନେକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟବସାୟ ଓ ଉପଲବ୍ଧିରେ ପରିପୂର୍ଣ୍ଣ । ତେବେ ଜଣେ ଲୋକପ୍ରିୟ ନେତା ହିସାବରେ ସେ କ'ଣ ଜଙ୍ଗଲ ପାହାଡ଼ ଘେରା ଅନୁନ୍ନତ କୋରାପୁଟ ଜିଲ୍ଲାରେ ଯେଉଁ ଅଭୁତପୂର୍ବ ଜନସଚେତନତା ସୃଷ୍ଟି କରିବା ସହ ବିକାଶର ନୂତନ ବାର୍ତ୍ତା ପହଞ୍ଚାଇ ଥିଲେ ତା'ର ପଟ୍ଟାନ୍ତର ନାହିଁ । ବାସ୍ତବରେ ସଦାଶିବ ବାବୁ ଥିଲେ କାମ କରିବା ମଣିଷ । ନିଜର କର୍ତ୍ତବ୍ୟକୁ ପାଥେୟ କରି ସେ ବଞ୍ଚିଥିଲେ ଏବଂ ଏହାଥିଲା ତାଙ୍କ ଜୀବନର ମାନଦଣ୍ଡ । ଜନ୍ମ ଶତବାର୍ଷିକ ଅବସରରେ ତାଙ୍କଭଳି ଜଣେ ପ୍ରଭାବଶାଳୀ ବ୍ୟକ୍ତିତ୍ୱ ଆମମାନଙ୍କର ସ୍ମରଣୀୟ ।

'ରାଷ୍ଟ୍ରଦୀପ'
ବକ୍ସିବଜାର, କଟକ – ୧

# ଓଡ଼ିଶାରେ କେନ୍ଦ୍ର ଜାତୀୟ ଅନୁସୂଚିତ ଜାତି କମିଶନଙ୍କ ଶୁଣାଣି

କେନ୍ଦ୍ର ସରକାରଙ୍କ ଜାତୀୟ ଅନୁସୂଚିତ କମିଶନ ଅଧ୍ୟକ୍ଷ ଡଃ ବୁଟା ସିଂ, ଉପାଧ୍ୟକ୍ଷ ଏନ୍.ଏମ୍. କାମ୍ବଲେ ଓ କମିଶନର ସଦସ୍ୟବୃନ୍ଦ ଓଡ଼ିଶା ଗସ୍ତରେ ଆସି ଗତ ଅକ୍ଟୋବର ୭ ତାରିଖରେ ସଚିବାଳୟଠାରେ ରାଜ୍ୟର ଅନୁସୂଚିତ ଜାତିର ସାଂସଦ, ପୂର୍ବତନ ସାଂସଦ, ବିଧାୟକ, ପୂର୍ବତନ ବିଧାୟକ ଓ ଅନୁସୂଚିତ ଜାତି ବର୍ଗର ଲୋକମାନଙ୍କ କଲ୍ୟାଣ ନିମନ୍ତେ କାର୍ଯ୍ୟ କରୁଥିବା ବିଭିନ୍ନ ସମାଜସେବୀ ସଂଗଠନର କର୍ମକର୍ତ୍ତାମାନଙ୍କୁ ନେଇ ଏକ ଉଚ୍ଚସ୍ତରୀୟ ବୈଠକ ଅନୁଷ୍ଠିତ ହୋଇଛି । ଏହି ବୈଠକରେ ରାଜ୍ୟ ଅନୁସୂଚିତ ଜାତି ଓ ଜନଜାତି କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବିଜୟ ରଂଜନ ସିଂ ବରିହା ଅଧ୍ୟକ୍ଷତା କରିଥିଲେ । ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଆସିଥିବା ସାଂସଦ, ବିଧାୟକ ସଂଗଠନର କର୍ମକର୍ତ୍ତାମାନେ ରାଜ୍ୟରେ ଅନୁସୂଚିତ ଜାତି ବର୍ଗର ଲୋକମାନଙ୍କ ପାଇଁ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ କଲ୍ୟାଣମୂଳକ କାର୍ଯ୍ୟକ୍ରମ ଉପରେ ଆଲୋଚନା କରିଥିଲେ । କେତେକ ସ୍ଥଳରେ ଏହି ବର୍ଗର ଲୋକମାନେ ସୁବିଧାରୁ ବଞ୍ଚିତ ହେଉଥିବା ଦର୍ଶାଇଥିଲେ । ବୈଠକରେ ଯୋଗ ଦେଇଥିବା ବହୁ ସଦସ୍ୟ ସେମାନଙ୍କ ବକ୍ତବ୍ୟ ଉପସ୍ଥାପନ କରିପାରି ନଥିବାରୁ କମିଶନ ସେଦିନ ଅପରାହ୍ନରେ ପୁଣି ଶୁଣାଣି କାର୍ଯ୍ୟ ଜାରି ରଖିଥିଲେ ।

ଦ୍ୱିତୀୟ ପର୍ଯ୍ୟାୟରେ ରାଜ୍ୟ ସରକାରଙ୍କ ଅଧିକାରୀମାନଙ୍କ ବୈଠକକୁ ଅକ୍ଟୋବର ୮ ତାରିଖକୁ ଘୁଞ୍ଚାଇ ଦିଆଯିବା କଥା କମିଶନ୍ଙ୍କ ଅଧ୍ୟକ୍ଷ ଡଃ ସିଂ ପ୍ରକାଶ କରିଥିଲେ ।

# ଦେଶଭକ୍ତ ସଦାଶିବ

କାଞ୍ଚନାରାୟଣ ମହାନ୍ତି

୧୯୪୩ ମସିହା ମାର୍ଚ୍ଚ ମାସ ଅଠେଇଶ ତାରିଖ । ରାତି ପାହିଲେ, ଦେଶଭକ୍ତ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଯିବ । ତେଣୁ କୋରାପୁଟ ଜେଲ୍‌ରେ ଥିବା ସମସ୍ତ ସ୍ୱାଧୀନତା ସଂଗ୍ରାମୀ, ଶୁଭେଚ୍ଛୁ, ଦେଶପ୍ରେମୀମାନେ ସାରାରାତି ଉପବାସ ଓ ଉଜାଗର ରହିଥିଲେ ଏବଂ ଲକ୍ଷ୍ମଣ ନାଏକଙ୍କ ପରି ଭାରତମାତାର ବୀର ସନ୍ତାନଙ୍କୁ ଅନ୍ୟାୟ ଭାବରେ ବ୍ରିଟିଶ ସରକାରର ଫାଶୀ ଆଦେଶକୁ ପ୍ରତିବାଦ କରି କୋରାପୁଟ କାରାଗାରର ସମସ୍ତ ସ୍ୱାଧୀନତା ସଂଗ୍ରାମୀ ଠିକ୍ ସେହି ସମୟରେ ସମୂହ ଆତ୍ମାହୁତି ଦେବା ପାଇଁ ସ୍ଥିର କଲେ । ଏ ଖବର ଚାରିଆଡ଼େ ରାଷ୍ଟ୍ର ହୋଇଗଲା । ନବରଙ୍ଗପୁରର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ପରବର୍ତ୍ତୀକାଳରେ ଯିଏ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ ଅଧିଷ୍ଠିତ ହୋଇଥିଲେ ପୂଜ୍ୟ ଶ୍ରୀ ସଦାଶିବ ତ୍ରିପାଠୀ କୋରାପୁଟ ଜେଲ୍‌କୁ ରାଧାକୃଷ୍ଣ ବିଶ୍ୱାସରାୟ, ଲକ୍ଷ୍ମୀଧର ଦାସ, ମାଧବ ପ୍ରଧାନୀ, ରାଧାକୃଷ୍ଣ ସାହୁ ଓ ଅନ୍ୟ ସହଯୋଗୀ ସଂଗ୍ରାମୀ ଓ କର୍ମୀମାନଙ୍କୁ ନେଇ ସେମାନଙ୍କୁ ପ୍ରବୋଧନା ଦେଇ ଆତ୍ମାହୁତି ନିଷ୍ପତ୍ତିରୁ ନିବୃତ୍ତ କରାଇଥିଲେ ।

ବ୍ରହ୍ମପୁର କାରାଗାରରେ ମୁକ୍ତି ସଂଗ୍ରାମୀ, ଦେଶପ୍ରେମୀ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଦେବାର ପୂର୍ବରାତି । ବହୁ ବିଶିଷ୍ଟ ବ୍ୟକ୍ତି, ସ୍ୱାଧୀନତା ସଂଗ୍ରାମୀମାନେ ତାଙ୍କ ସହ ଶେଷ ଦର୍ଶନ ଓ ସାକ୍ଷାତ ପାଇଁ ଯାଉଥାନ୍ତି ।

ଲକ୍ଷ୍ମଣ ନାଏକ ଶହୀଦ ହେବା ପୂର୍ବରୁ ତାଙ୍କର ସମସ୍ତ ସଂଗ୍ରାମୀ ଦେଶପ୍ରେମୀମାନଙ୍କୁ ଦେଖା କରିବାକୁ ଚାହିଁଥିଲେ । କୋରାପୁଟ ଓ ଅନ୍ୟାନ୍ୟ ଅଞ୍ଚଳରୁ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିବା ବନ୍ଧୁମାନେ ଏତେ ମ୍ରିୟମାଣ ହୋଇ ପଡ଼ିଥିଲେ ଯେ ସେମାନେ କାନ୍ଦି କାନ୍ଦି ମୂର୍ଚ୍ଛା ହୋଇଯାଉଥିଲେ । ସେମାନଙ୍କ ମଧ୍ୟରୁ ଜଣେ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲେ । ସେ ଥିଲେ ଧୈର୍ଯ୍ୟଶୀଳ, ଉଦାର ବ୍ୟକ୍ତି ସଦାଶିବ ତ୍ରିପାଠୀ । ନିଜକୁ ଯେତେ କଠୋର କଲେ ମଧ୍ୟ ଲକ୍ଷ୍ମଣଙ୍କୁ ଦେଖି ତାଙ୍କ ଛାତି ଫାଟି ଯାଇଥିଲା– ଆଖିରେ ଛଳ ଛଳ ଲୁହ । ବୀର ସନ୍ତାନ ଆଣ୍ଠୁମାଡ଼ି ବସିଥାନ୍ତି । ମୁଦ୍ରିତ ନୟନ । ଯୋଡ଼ହସ୍ତ, କଣ୍ଠରେ ପବିତ୍ର ରାମଧୂନ୍ । ଶ୍ରୀ ସଦାଶିବ ତ୍ରିପାଠୀ ଧୀର ସ୍ୱରରେ ଡାକିଲେ – 'ଲକ୍ଷ୍ମଣ' ।

ସେ ଆଖି ଖୋଲିଲେ ଏବଂ ବିନମ୍ର ପ୍ରଣାମ କଲେ ଶ୍ରୀ ତ୍ରିପାଠୀଙ୍କୁ ।

ଶ୍ରୀ ତ୍ରିପାଠୀ ପଚାରିଲେ – 'କିଛି କହିବ ?'

ଲକ୍ଷ୍ମଣ ରୁଦ୍ଧ କଣ୍ଠରେ କହିଥିଲେ – 'କ'ଣ ଆଉ କହିବି, ମୋର ତ ଶହ ଶହ ଭାଇ ମୁକ୍ତି ସଂଗ୍ରାମରେ ଆତ୍ମବଳି ଦେଉଛନ୍ତି, ଜେଲ୍ ଯନ୍ତ୍ରଣାରେ ସଢ଼ୁଛନ୍ତି । ମୋ' ଦେଶ ମା'ର ଆଖିରେ ଲୁହ । ମୋ' ମାଆ ମୁହଁରେ ହସ ଦେଖିବା ପର୍ଯ୍ୟନ୍ତ ମୁଁ ରହିପାରୁନାହିଁ । ଯେଉଁ ସ୍ୱରାଜ୍ୟ ପାଇଁ ଆମେ ଲଢ଼ୁଛେଁ, ସେହି ସ୍ୱରାଜ୍ୟ ଫେରି ଆସିବାକୁ ବେଶୀ ଡେରି ନାହିଁ । ସୂର୍ଯ୍ୟ ଯଦି ସତ୍ୟ ହୋଇଥାଏ, ଚନ୍ଦ୍ର ଯଦି ସତ୍ୟ ହୋଇଥାଏ ତେବେ ଭାରତମାତା ଯେ ସ୍ୱାଧୀନ ହେବ ଏହା ମଧ୍ୟ ସେହିଭଳି ସତ୍ୟ । ଭାରତମାତାର ଛାତିରେ ତ୍ରିରଙ୍ଗା ଫର୍ ଫର୍ ହୋଇ ଉଡ଼ୁଥିବ । ମୋ' ସ୍ୱାଧୀନ ଭାରତବର୍ଷର ମୁକ୍ତିର ମୁହଁ ମୁଁ ଦେଖି ପାରିବି ନାହିଁ କେବଳ ଏଥିପାଇଁ ମନରେ ଦୁଃଖ ଆସୁଛି ।

ଶ୍ରୀ ତ୍ରିପାଠୀ କହିଥିଲେ – 'ଧନ୍ୟ ତୁମେ ଲକ୍ଷ୍ମଣ, ଧନ୍ୟ ତୁମର ବୀରତ୍ୱ, ମହାନତା ।

କେବେ ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ କୋରାପୁଟ ପରି ଅଗମ୍ୟ ଅରଣ୍ୟ ଇଲାକାରୁ ଯେଉଁ କେତେଜଣ ମୁକ୍ତିଯୋଦ୍ଧା ସାମିଲ ହୋଇଥିଲେ, ସେମାନଙ୍କ ମଧ୍ୟରୁ ଶ୍ରୀ ସଦାଶିବ ତ୍ରିପାଠୀ ଅନ୍ୟତମ । ୧୯୧୦ ମସିହା ଏପ୍ରିଲ୍ ୨୧ ତାରିଖରେ ନବରଙ୍ଗପୁରର ଏକ ଅଖ୍ୟାତ ପଲ୍ଲୀରେ ଜନ୍ମ ହୋଇଥିଲେ । ପିତାଙ୍କ ନାମ ରାମନାଥ ତ୍ରିପାଠୀ । କକା ଲିଙ୍ଗରାଜ ତ୍ରିପାଠୀ

ତାଙ୍କୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କରିଥିଲେ । ଶିକ୍ଷା ଶେଷରେ ସେ ଜୟପୁରରେ ଶିକ୍ଷକତା କଲେ । ସେହି ସମୟରେ କଂଗ୍ରେସ ନେତା, ରାଧାକୃଷ୍ଣ ବିଶ୍ୱାସରାୟ ରାଧାକୃଷ୍ଣ ସାହୁ, ଲକ୍ଷ୍ମୀଧର ଦାସ, ମାଧବ ପ୍ରଧାନ, ସଦାନନ୍ଦ ମହାନ୍ତି, ଯୁମରର ନୀଳକଣ୍ଠ ପାତ୍ର, କୋଠପାଡ଼ର ସୂର୍ଯ୍ୟନାରାୟଣ ମାଝୀ, କପିଳ ପାତ୍ର ପ୍ରଭୃତିଙ୍କର ପ୍ରଭାବରେ ସେ ସ୍ୱାଧୀନତାର ମୁକ୍ତି ସ୍ରୋତରେ ମିଶିଗଲେ । ସେ ୧୯୩୭ ମସିହାଠାରୁ କୋରାପୁଟ ଅଞ୍ଚଳରେ ସେ ମୁରବୀ ଓ ପ୍ରତିନିଧି । ସ୍ୱାଧୀନତା ପରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ଓ ଭୂଦାନ ଆନ୍ଦୋଳନରେ ତାଙ୍କର ପ୍ରମୁଖ ଭୂମିକା ରହିଛି । ସେ ୧୯୪୭ ମସିହାରୁ ୧୯୬୭ ମସିହା ମଧ୍ୟରେ ନବରଙ୍ଗପୁର ଓ ଉମରକୋଟ ନିର୍ବାଚନ ମଣ୍ଡଳୀରୁ ବହୁବାର ନିର୍ବାଚିତ ହୋଇଛନ୍ତି । ଓଡ଼ିଶାର ଭୂ-ରାଜସ୍ୱ ସଂସ୍କାର ପାଇଁ ତାଙ୍କର ଐତିହାସିକ ପଦକ୍ଷେପ ସ୍ମରଣୀୟ ହୋଇରହିବ । ସେ ଓଡ଼ିଶା ଶାସନ ଦାୟିତ୍ୱରେ ଥାଇ ରାଜସ୍ୱ ମନ୍ତ୍ରୀ ଥିଲେ ତା'ଛଡ଼ା ଯୋଗାଣ, ପରିବହନ, ଅବକାରୀ, ଉନ୍ନୟନ, ଖଣି, ଜଙ୍ଗଲ, ଯୋଜନା ସମନ୍ୱୟ ବିଭାଗକୁ ବିଭିନ୍ନ ସମୟରେ ସୁପରିଚାଳନା କରୁଥିଲେ । ୧୯୬୫ ମସିହା ଫେବୃଆରୀ ୨୧ ତାରିଖରେ ସେ ଓଡ଼ିଶାର ପଞ୍ଚମ ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରି ୧୯୬୭ ମାର୍ଚ୍ଚ ମାସ ଆଠ ତାରିଖ ପର୍ଯ୍ୟନ୍ତ କାର୍ଯ୍ୟଭାର ତୁଲାଇଥିଲେ । ଓଡ଼ିଶାର ରାଜନୀତିରେ ତାଙ୍କର ଘଟଣାବହୁଳ ଜୀବନ ନିର୍ମଳ ସ୍ୱଚ୍ଛଳ, ନିଷ୍କଳଙ୍କ ଅଧ୍ୟାୟ । ତା'ଛଡ଼ା ଜଣେ ନିଃସ୍ୱାର୍ଥପର ଓ ନିଷ୍ପାପର ବିରୋଧୀ ଦଳର ନେତା ଭାବେ ତାଙ୍କର ପ୍ରତିନିଧିତ୍ୱ ଅବିସ୍ମରଣୀୟ । ତାଙ୍କ ସମୟରେ ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାନ ଶିକ୍ଷାର ପ୍ରଭୂତ ବିକାଶ ଘଟିଥିଲା । ନିଷ୍ପାପର ରାଜନେତା ଲୋକପ୍ରତିନିଧି ଭାବରେ ଶ୍ରୀ ତ୍ରିପାଠୀଙ୍କର ମନ୍ତ୍ରିତ୍ୱ ସମୟର ଗୋଟାଏ ଘଟଣା ଉଲ୍ଲେଖଯୋଗ୍ୟ ।

୧୯୫୨ ମସିହା । ଜମିଦାରୀ ଉଚ୍ଛେଦ ଆଇନ ପାଶ୍ ହୋଇଗଲା । ଫଳରେ ଓଡ଼ିଶାର ସମସ୍ତ ଜମିଦାରୀ ମକଦ୍ଦମାକୁ ଉଚ୍ଛେଦ କରାଗଲା । କିଛି ପ୍ରତିପତ୍ତିଶାଳୀ ଲୋକେ ବିଭିନ୍ନ ଅଞ୍ଚଳରେ ରାଜଭୋଗର ବିଳାସରୁ ବଞ୍ଚିତ ହେବା ଜାଣି ବିଭିନ୍ନ ରଣକୌଶଳ, ଷଡ଼ଯନ୍ତ୍ର ପ୍ରୟୋଗ କରିବାର ସମ୍ଭାବନା ଥିଲା ।

ଶ୍ରୀ ସଦାଶିବ ତ୍ରିପାଠୀ ସେତେବେଳେ ରାଜସ୍ୱ ବିଭାଗର ମନ୍ତ୍ରୀ ଥାଆନ୍ତି । ସେ ଅତି ସରଳ, ସତ୍ୟନିଷ୍ଠ ବ୍ୟକ୍ତି ଥିଲେ । ଉପକୂଳ ଅଞ୍ଚଳରେ ଯେଉଁ ରିଫ୍ୟୁଜି ବଙ୍ଗାଳୀମାନେ ଲୁଣ ଆବରାଗୁଡ଼ିକୁ ଦଖଲ କରିଥିଲେ, ସେମାନଙ୍କୁ ସେଥିରୁ ବେଦଖଲ କରିବା ପାଇଁ ଶହ ଶହ ଚାଷୀ ମୂଲିଆ ଜାଗି ଉଠିଲେ । ସେଥିମଧ୍ୟରୁ କିଛି ଆବରାଜମି କେତେକ ଗରିବ ଲୋକ ଫେରିପାଇଲେ । ତେବେ ବି ବହୁ ସରକାରୀ ଜମି ଅନ୍ୟାୟ ଭାବରେ ବଙ୍ଗାଳୀମାନେ ଜବର ଦଖଲ କରି ରହିଗଲେ ।

ସେତିକିରେ ଆନ୍ଦୋଳନ ସରିଲା ନାହିଁ । ଆହୁରି ତୀବ୍ରତର ହେଲା । ଯେତେ ସବୁ ଶ୍ମଶାନ, ଗୋଚର, ନଈପଠା, ପାଟଜମି ଆଦିକୁ ଜମିଦାରମାନେ ସେହି ବଙ୍ଗାଳୀମାନଙ୍କୁ ଏକ ଆଇନ ଭାବେ ପଟ୍ଟା ଦେଇଥିଲେ, ସେଥିରୁ ଅଧିକାଂଶ ଜମିକୁ ହସ୍ତାନ୍ତର କରାଯାଇ ପାରିଥିଲା ।

ଶ୍ରୀ ତ୍ରିପାଠୀଙ୍କ ସମୟରେ ଜମିଦାରୀ ଉଚ୍ଛେଦ ଆଇନ ପାଶ୍ ହେଲା । ସେତେବେଳେ ସେହି କାଗଜପତ୍ରକୁ କାଳେ ପ୍ରଭାବଶାଳୀ ଜମିଦାରମାନେ କୌଶଳରେ ଗାଏବ କରିନେବେ ବୋଲି ସେ ସେସବୁ କାଗଜପତ୍ର ଫାଇଲ୍‌କୁ ଛପାଯାଇ ନୋଟିଫିକେସନ୍ ହେବା ପର୍ଯ୍ୟନ୍ତ ନିଜ ଶୋଇବାଘର ତକିଆତଳେ ରଖି ଶୋଉଥିଲେ । ତାହାକୁ ଯେତେଶୀଘ୍ର ଛପାଇବା ବ୍ୟବସ୍ଥା ସହ କାର୍ଯ୍ୟକାରୀ କରିବା ପାଇଁ ବଡ଼ ବଡ଼ ଇଷ୍ଟେଟ୍‌ଗୁଡ଼ିକୁ ପଠାଇ ଦେଇଥିଲେ । ଏହା ଜଣେ ଜଣେ ମାଜିଷ୍ଟ୍ରେଟଙ୍କଦ୍ୱାରା କାର୍ଯ୍ୟକାରୀ କରାଯିବାର ବ୍ୟବସ୍ଥା କରାଇଥିଲେ । ଫଳରେ ମାଜିଷ୍ଟ୍ରେଟମାନେ ଜମିଦାରଙ୍କ ଷ୍ଟେଟ୍‌ରେ ପହଞ୍ଚି ସେମାନଙ୍କ କଚେରୀ ଘରଗୁଡ଼ିକୁ ତାଲା ପକାଇ ଦେଇଥିଲେ । ଧୀରେ ଧୀରେ ଦରିଦ୍ର ପ୍ରଜାମାନଙ୍କ ଉପରେ ଜମିଦାରମାନଙ୍କର ଶୋଷଣ କମି ଯାଇଥିଲା । 'ସଂଗ୍ରାମୀ ସ୍ମରଣେ' ପୁସ୍ତକରେ ଲେଖକ ଶୁଭ ନାରାୟଣ ସ୍ୱାଇଁ କୁଜଙ୍ଗ, ଏରସମା, ଜଗତସିଂହପୁର, ଗୋବିନ୍ଦପୁର, ରଘୁନାଥପୁର ତଥା ଉପକୂଳ ଓଡ଼ିଶାର ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀମାନଙ୍କ ସଂପର୍କରେ ଆଲୋକପାତ କଲା ସମୟରେ (୧୩୩ ପୃଷ୍ଠା) ଶ୍ରୀ ସଦାଶିବ ତ୍ରିପାଠୀଙ୍କ ସଂପର୍କରେ କିଂଚିତ ସୂଚନା କରିଛନ୍ତି ।

ଶହୀଦ ବୀର ଲକ୍ଷ୍ମଣ ନାଏକଙ୍କ ସହିତ ସଦାଶିବ ତ୍ରିପାଠୀ ବ୍ରହ୍ମପୁର ଜେଲ୍‌ରେ ଥିଲେ । ଫାଶୀ ଦଣ୍ଡାଦେଶ ପରେ ସମଗ୍ର ଓଡ଼ିଶାର କଂଗ୍ରେସ କର୍ମୀ ନେତୃବୃନ୍ଦ ଏକତ୍ର ପ୍ରତିବାଦର ସ୍ୱର ଉଠାଇଥିଲେ । ସେଇ ରକ୍ତଚକ୍ଷୁ, ଉଗ୍ରତାନ ଦେଖି ବ୍ରିଟିଶ ସରକାର ଦମନ ଲୀଳାକୁ ତୀବ୍ରତର କରି ଯେଉଁମାନଙ୍କୁ ସିକ୍ୟୁରିଟି ବନ୍ଦୀ ଭାବେ ଘୋଷଣା କରିଥିଲେ, ସେମାନେ ଥିଲେ ଗୋପବନ୍ଧୁ ଚୌଧୁରୀ, ବୀରବର ଦାସ, ବିଶ୍ୱନାଥ ଦାସ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ର, ରାଧାନାଥ ରଥ, ଉମାଚରଣ ପଟ୍ଟନାୟକ, ସଦାନନ୍ଦ ମହାନ୍ତି, ଲକ୍ଷ୍ମୀଚନ୍ଦ୍ର ଦାସ, ଜୟକୃଷ୍ଣ ମହାନ୍ତି,

ନରସିଂହ ମହାନ୍ତି, ରଘୁନାଥପୁର ସାଧୁ ସାହି, ଜୁମରର ନୀଳକଣ୍ଠ ପାତ୍ର, କୋଠପାଡ଼ର କପିଳ ପାତ୍ର, ସୂର୍ଯ୍ୟ ନାରାୟଣ ମାଝୀ, ମହମ୍ମଦ ବାଜୀ, ଜନାବ୍ ହବିବୁଲ୍ଲା ଖାଁ, ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ, ମୁରଲୀଧର ପ୍ରଧାନ, ଗୌରିଶ୍ୟାମ ନାୟକ, ନୀଳମଣି ପ୍ରଧାନ, ବିନୋଦ କାନୁନ୍‌ଗୋ, ରାଧାମୋହନ ସାହୁ, ବିପିନ ବିହାରୀ ଦାସ, ଉପେନ୍ଦ୍ର ମହାନ୍ତି, ସଚ୍ଚିଦାନନ୍ଦ ମହାନ୍ତି, ରବି ଘୋଷ, ପଦ୍ମଚରଣ ପଟ୍ଟନାୟକ, ଭାଗବତ ସାହୁ, ପଣ୍ଡିତ କୃପାସିନ୍ଧୁ ହୋତା, ଗୋକୁଳାନନ୍ଦ ମହାନ୍ତି, କରୁଣାକର ପାଣିଗ୍ରାହୀ, ଗୋବିନ୍ଦଚନ୍ଦ୍ର ପ୍ରଧାନ, ବଳଭଦ୍ର ପୂଜାରୀ, ହୃଷିକେଶ ତ୍ରିପାଠୀ, ଦ୍ୱାରିକାନାଥ ଦାସ, ଡାକ୍ତର ବ୍ରଜନାଥ ମିଶ୍ର, ନୀଳାମ୍ବର ଦାସ, ବୀରେନ୍ ମିତ୍ର, ନିତ୍ୟାନନ୍ଦ ମହାପାତ୍ର, ମୋହନ ଦାସ, ଗୌରଚନ୍ଦ୍ର ମହାପାତ୍ର, ନିଶାମଣି ଖୁଣ୍ଟିଆ, ଜଗନ୍ନାଥ ଦାସ, ଲୋକନାଥ ମିଶ୍ର ଏବଂ ଆହୁରି ଅନେକ । ତେବେ ସଦାଶିବ ତ୍ରିପାଠୀଙ୍କର କଂଗ୍ରେସ ଆନ୍ଦୋଳନ ଓ ଓଡ଼ିଶା ରାଜନୀତିରେ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ ।

୧୯୮୦ ମସିହା ସେପ୍ଟେମ୍ବର ୯ ତାରିଖରେ ଏହି ମହାନ୍ ବିପ୍ଳବୀ ତଥା ମହାନ୍ ଜନନାୟକଙ୍କର ଜୀବନଦୀପ ଲିଭି ଯାଇଥିଲେ ମଧ୍ୟ ସେ ଦେଶମାତୃକାର ଅମର ସନ୍ତାନ ଭାବେ ଚିର ବରେଣ୍ୟ । ତାଙ୍କ ନିଷ୍ଠା ଓ ନିର୍ମଳ ବ୍ୟକ୍ତିତ୍ୱ ଓଡ଼ିଶାବାସୀ ଚିରଦିନ ସ୍ମରଣ କରୁଥିବେ ।

ଆଶ୍ରମ
ଶ୍ରୀବିହାର କଲୋନି, କଟକ-୮




ଭୁବନେଶ୍ୱରର ଓ.ୟୁ.ଏ.ଟି. ପରିସରରେ କଟକ ଏନ୍.ସି.ସି. ଗ୍ରୁପ୍ ପକ୍ଷରୁ 'ସେଭ୍ ଗାର୍ଲ ଚାଇଲ୍ଡ'ର ଜାତୀୟ ସଂହତି ଶୋଭାଯାତ୍ରାକୁ ରାଜ୍ୟପାଳ ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଉଦ୍‌ଘାଟନ କରୁଛନ୍ତି । ୯.୧୦.୦୯

# ଶିକ୍ଷକତାରୁ ମୁଖ୍ୟମନ୍ତ୍ରୀ

ଦିଲ୍ଲୀପ କୁମାର ବେହୁରା

୧୯୧୦ ମସିହା ଏପ୍ରିଲ ୨୧ ତାରିଖରେ ପିତା ରାମନାଥ ତ୍ରିପାଠୀ ଏବଂ ମାତା ରାଧାରାଣୀଙ୍କର ଔରସରୁ ଜନ୍ମ ନେଇଥିଲେ ସଦାଶିବ । ସ୍ୱାଧୀନତା ଆନ୍ଦୋଳନର ଯଦିଓ ତାଙ୍କର ପିତା ପ୍ରତ୍ୟକ୍ଷ ଭାବେ ଜଡ଼ିତ ନଥିଲେ କିନ୍ତୁ ପରୋକ୍ଷରେ ସତ୍ୟାଗ୍ରହୀମାନଙ୍କୁ ସାହାଯ୍ୟ କରୁଥିଲେ । ନବରଙ୍ଗପୁରରେ ତାଙ୍କର ଜମିଦାର ହିସାବରେ ନାମ ଥାଏ । ସଦାଶିବଙ୍କର ଜନ୍ମ ପରେ ତାଙ୍କ ସାନଭାଇ ଲିଙ୍ଗରାଜ ତ୍ରିପାଠୀ ବଂଶରକ୍ଷା ପାଇଁ ସଦାଶିବଙ୍କୁ ପୁଅ କରି ନେଇଗଲେ । କକେଇଙ୍କର ପାଖରେ ବାଲ୍ୟଜୀବନ ଏବଂ ପାଠପଢ଼ା ଆରମ୍ଭ କରିଥିବା ସଦାଶିବ ଯେ ଦିନେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବେ ଏକଥା ସମସ୍ତଙ୍କର ଭାବନାର ବାହାରେ ଥିଲା । ସେ ଭଲ ପାଠ ପଢୁଥିଲେ । ନିର୍ଭୀକ ଓ ସଚ୍ଚୋଟ ହେବା ସହିତ କଠିନ ପରିଶ୍ରମ ହିଁ ତାଙ୍କୁ ବହୁତ ଉପରକୁ ନେଇ ଯାଇଥିଲା । ସ୍ୱାଧୀନଚେତା ବ୍ୟକ୍ତିତ୍ୱ କେଉଁଠାରେ ବନ୍ଧା ହୋଇ ରହିପାରେ ନାହିଁ । ଶିକ୍ଷକତାରୁ ଆରମ୍ଭ କରିଥିବା ଜୀବନ ଶେଷରେ ଜଣେ ସ୍ୱାଧୀନତା ସଂଗ୍ରାମୀର ରୂପନେଇ ସ୍ୱାଧୀନ ଭାରତର ଓଡ଼ିଶାରେ ଜଣେ ଲୋକ ପ୍ରତିନିଧି ହୋଇପାରିଥିଲେ । ସମୟକ୍ରମେ ମନ୍ତ୍ରୀ ପଦର ଗୁରୁଦାୟିତ୍ୱ ସୂଚାରୁରୂପେ ପାଳନ କରି ଶେଷରେ ମୁଖ୍ୟମନ୍ତ୍ରୀ ଭଳି ଉଚ୍ଚ ପଦବୀରେ ବସି ଯେଉଁ ଗଠନମୂଳକ କାର୍ଯ୍ୟ ସେ କରିଯାଇଛନ୍ତି ତାହା କିମ୍ବଦନ୍ତୀ ହୋଇ ରହିଯାଇଛି ।

ସ୍ୱାଧୀନଚେତା ଯୁବକ ହୋଇଥିବାରୁ ଶିକ୍ଷକତା ଚାକିରି ତାଙ୍କୁ ବାନ୍ଧି ରଖିପାରିଲା ନାହିଁ । ମହାତ୍ମା ଗାନ୍ଧୀଙ୍କର ଡାକରାରେ ପ୍ରଧାନଶିକ୍ଷକଙ୍କ ପାଖରେ ଇସ୍ତଫା ପ୍ରଦାନ କରି ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ ସେ । ତାଙ୍କ ସହିତ ଥାଆନ୍ତି ରାଧାକୃଷ୍ଣ ବିଶ୍ୱାସ ରାୟ, ରାଧାମୋହନ ସାହୁ, ଲକ୍ଷ୍ମଣ ନାଏକ ପ୍ରଭୃତି ସ୍ୱାଧୀନତା ସଂଗ୍ରାମୀ । ବାସ୍ତବରେ ସେ ଥିଲେ ଜଣେ ଦକ୍ଷ ସଂଗଠକ ଓ ବାଗ୍ମୀ । ଲକ୍ଷ୍ମଣ ନାଏକଙ୍କ ଭଳି ଜଣେ ବନ୍ଧୁ ସେ ପାଇ ଥିଲେ ।

ଫାଶୀଖୁଣ୍ଟରେ ଝୁଲିବା ବେଳେ ବନ୍ଧୁ ସଦାଶିବଙ୍କର ଆଖିରୁ ଲୁହ ଅବାରିତ ଭାବେ ବହି ଯାଉଥିଲା ଏବଂ ସେ ଲକ୍ଷ୍ମଣ ନାଏକଙ୍କ ଉଦ୍ଦେଶ୍ୟରେ କହିଥିଲେ, 'ଲକ୍ଷ୍ମଣରେ, ତୁମ ଜୀବନକୁ ଆମେ ରକ୍ଷା କରିପାରିଲୁ ନାହିଁ ।' ଲକ୍ଷ୍ମଣ ନାଏକଙ୍କ ଫାଶୀର ଚାରିବର୍ଷ ପରେ ଭାରତ ସ୍ୱାଧୀନ ହୋଇଥିଲା ।

କୋରାପୁଟ ଆଦିବାସୀ ପରଜା ସଂପ୍ରଦାୟର ଲୋକମାନେ ଅଣ୍ଟାଭିଡ଼ି ଦେଇଥାନ୍ତି ସ୍ୱାଧୀନତା ପ୍ରାପ୍ତି ଆଶାରେ । ସତ୍ୟାଗ୍ରହୀମାନେ ଥାନା, କଚେରୀ, ଅଫିସ୍ ଏବଂ ଅନ୍ୟାନ୍ୟ ସ୍ଥାନମାନଙ୍କରେ ତ୍ରିରଙ୍ଗା ପତାକା ଧରି ଭାରତ ମାତାକି ଜୟ, ମହାତ୍ମା ଗାନ୍ଧୀ କି ଜୟ ବୋଲି ସ୍ଲୋଗାନ ମାନ ଦେଇ ଜାତୀୟତାର ବୋଧ ସମସ୍ତଙ୍କର ହୃଦୟରେ ଜାଗରିତ କରୁଥାନ୍ତି । ତାଙ୍କର ନେତା ସେଠାରେ ଲକ୍ଷ୍ମଣ ନାଏକ । ସଭାସମିତିରେ ଭାଷଣ ଦେଉଥାନ୍ତି ସଦାଶିବ ତ୍ରିପାଠୀ । ଏଣୁ ମିଥ୍ୟାରେ ଜଣେ ଫରେଷ୍ଟଗାର୍ଡ଼୍‌କୁ ହତ୍ୟା ଅଭିଯୋଗରେ ଲକ୍ଷ୍ମଣ ନାଏକଙ୍କୁ ବାନ୍ଧି ନେଇ ବ୍ରହ୍ମପୁର ଜେଲ୍‌ରେ ରଖାଗଲା । ସଦାଶିବ ତ୍ରିପାଠୀଙ୍କୁ ଖୋଜା ଚାଲିଲା । ଶେଷରେ ସେ ମଧ୍ୟ ଧରା ପଡ଼ି ପ୍ରଥମେ କୋରାପୁଟ ଜେଲରେ କିଛିଦିନ ରହି ବ୍ରହ୍ମପୁର ଜେଲ୍‌କୁ ସ୍ଥାନାନ୍ତରିତ ହେଲେ । ସେଠି ଲକ୍ଷ୍ମଣ ନାଏକଙ୍କର ବିଚାର କରାଯାଇ ଫାଶୀ ଖୁଣ୍ଟରେ ତାଙ୍କୁ ଝୁଲିବାକୁ ପଡ଼ିଥିଲା । ଫାଶୀଖୁଣ୍ଟରେ ଝୁଲିବା ପୂର୍ବରୁ ଲକ୍ଷ୍ମଣ ନାଏକ ସଦାଶିବଙ୍କୁ କହିଥିଲେ, 'ଦେଖ ଭାଇ ମୁଁ ତ ଯାଉଛି । ମାତ୍ର ମୋ ଜନ୍ମଭୂମିକୁ ସ୍ୱାଧୀନ କରିବାର ଦାୟିତ୍ୱ ତୁମମାନଙ୍କର ଉପରେ ଛାଡ଼ି ଦେଇଯାଉଛି, ଏଥିରେ ଯେପରି ଅବହେଳା ନକର ।' ଫାଶୀଖୁଣ୍ଟରେ ଝୁଲିବା ବେଳେ ବନ୍ଧୁ ସଦାଶିବଙ୍କର ଆଖିରୁ ଲୁହ ଅବାରିତ ଭାବେ ବହି ଯାଉଥିଲା ଏବଂ ସେ ଲକ୍ଷ୍ମଣ ନାଏକଙ୍କ ଉଦ୍ଦେଶ୍ୟରେ କହିଥିଲେ, 'ଲକ୍ଷ୍ମଣରେ, ତୁମ

ଜୀବନକୁ ଆମେ ରକ୍ଷା କରିପାରିଲୁ ନାହିଁ ।' ଲକ୍ଷ୍ମଣ ନାଏକଙ୍କ ଫାଶୀର ଚାରିବର୍ଷ ପରେ ଭାରତ ସ୍ୱାଧୀନ ହୋଇଥିଲା ।

ଦେଶ ସ୍ୱାଧୀନ ପରେ ଓଡ଼ିଶାରେ ସାଧାରଣ ନିର୍ବାଚନ ହୋଇଥିଲା । ସଦାଶିବ ତ୍ରିପାଠୀ ନବରଙ୍ଗପୁରରୁ କଂଗ୍ରେସ ଟିକଟରେ ବହୁତ ସଂଖ୍ୟାରେ ବିଜୟୀ ହୋଇ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ଜମିଦାରର ପୁଅ ହୋଇ ମଧ ଜମିଦାରୀର ଟିକିଏ ହେଲେ ଡାଙ୍ଗା ତାଙ୍କ ପାଖରେ ନଥିଲା । ସେ ଥିଲେ ଜଣେ ଜନତାର ସେବକ । ସରଳ ନିରାଡ଼ମ୍ବର ଜୀବନଯାପନ ତାଙ୍କର ଥିଲା ସତେ ଯେମିତି ବଡ଼ଧର୍ମ । ଜନତାର ସେବା କରିବାର ଅଛି ତ ନିଜ ଅଞ୍ଚଳକୁ ଯାଇ ଲୋକମାନଙ୍କର ଭଲମନ୍ଦ କଥାବୁଝ, ତେବେ ଯାଇ ତୁମେ ଜଣେ ଜନତାର ପ୍ରକୃତ ସେବକଟିଏ ହୋଇପାରିବ । ଏହାଥିଲା ତାଙ୍କର ବଳିଷ୍ଠ ଯୁକ୍ତି ।

ଥରକର ଘଟଣା । ନିଜ ଅଞ୍ଚଳର ଏକ ଜରୁରୀ କାର୍ଯ୍ୟ ପାଇଁ ମାଲକାନଗିରିର ଘଞ୍ଚ ଜଙ୍ଗଲ ଦେଇ ଏକ କାରରେ ସେ ଯାଉଥାନ୍ତି । ଏକ ମହାବଳ ବାଘ ଗାଡ଼ି ସାମ୍ନାକୁ ଆସିଯିବାରୁ ଗାଡ଼ି ଚାଳକ ଡରି ଥରିବାକୁ ଲାଗିଲା । ଗାଡ଼ି ଅଟକି ଗଲା କିଛି ସମୟ ପାଇଁ । ସଦାଶିବ ବାବୁ ପ୍ରଣିପାତ କଲେ ଜଙ୍ଗଲ ଜୀବକୁ ଅତି ନିଜର ଭାବି । ସେ ଡ୍ରାଇଭରକୁ କହିଥିଲେ ଆମେ ହେଲୁଁ ଜଙ୍ଗଲି ଲୋକ । ଜଙ୍ଗଲର କାଇଦା କାନୁନ ଆମକୁ ଜଣା, ଆମେ ତ ବାଘର କ୍ଷତି କରିନେ । ବାଘ ଆମର କାହିଁକି କ୍ଷତି କରିବ ? ଏଥିରୁ ତାଙ୍କର ଜଙ୍ଗଲ ଓ ଜୀବଙ୍କପ୍ରତି ଶ୍ରଦ୍ଧା ଓ ଭକ୍ତି ଥିଲା ବୋଲି ଜଣାପଡ଼େ । ଲାଙ୍ଗୁଡ଼କୁ କେଇଥର ମାଟିରେ ବାଡ଼େଇ ବାଘ ତା'ର ବାଟରେ ସେଦିନ ଚାଲିଯାଇଥିଲା ।

ତାଙ୍କୁ ତିଳୋତ୍ତମା ନାମ୍ନୀ ଗୋଟିଏ ଚାଉଳରେ ଗଢ଼ା ତରୁଣୀ ସହିତ ହାତଛନ୍ଦି ଦେଇଥିଲେ ତାଙ୍କ ଘର ଲୋକମାନେ । ଯଦିଓ ସେ କଂଗ୍ରେସର ବହୁତଗୁଡ଼ିଏ କମିଟି ସହିତ ସଂଶ୍ଳିଷ୍ଟ ଥିଲେ, ତେଣୁ କଂଗ୍ରେସର ଚିନ୍ତା ସବୁବେଳେ ତାଙ୍କୁ ଘାରୁଥିଲା । ନିଜ ସଂସାର ପ୍ରତି ଟିକେ ଧ୍ୟାନ କମ୍ ଦେଉଥିଲେ । ତାଙ୍କର ସହଧର୍ମିଣୀ ନିଜର ମନକୁ ବୁଝାଇ ଦେଇଥିଲେ ସ୍ୱାମୀ ତାଙ୍କର ଜଣେ ଜନତାର ସେବକ । ସେମାନଙ୍କର ସେବା କରିବା ଆଗ ଦରକାର । ଉଚିତ୍ ସ୍ୱାମୀର ଉଚିତ୍ ସହଧର୍ମିଣୀ ଥିଲେ ତିଳୋତ୍ତମା ।

୧୯୪୯ ମସିହା ମଇ ମାସ ୧୫ ତାରିଖରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଓଡ଼ିଶାର ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା । ସେଥିରେ ସଦାଶିବ ତ୍ରିପାଠୀଙ୍କୁ ରାଜସ୍ୱ, ଯୋଗାଣ ଓ ପରିବହନ ବିଭାଗର ମନ୍ତ୍ରୀ ଭାବେ ଶପଥ ନେବାକୁ ପଡ଼ିଥିଲା । ଏହାପରେ ନବକୃଷ୍ଣ ଚୌଧୁରୀ, ବିଜୟାନନ୍ଦ ପଟ୍ଟନାୟକ ଓ ବୀରେନ୍ ମିତ୍ରଙ୍କ ମନ୍ତ୍ରିମଣ୍ଡଳରେ ସେ ରାଜସ୍ୱ ମନ୍ତ୍ରୀ ଥିଲେ । ସେହି ଦାୟିତ୍ୱଟି ତାଙ୍କ ପାଇଁ ପ୍ରତ୍ୟେକ ମନ୍ତ୍ରିମଣ୍ଡଳରେ ଥିଲା ଏକ ନିଶ୍ଚିତ ଭାବେ ସ୍ୱତନ୍ତ୍ରତା । ରାଜସ୍ୱ ବିଭାଗ ସହିତ ଅବକାରୀ, ଉନ୍ନୟନ, ଜଙ୍ଗଲ ଯୋଜନା ଓ ସମବାୟ ବିଭାଗର ମନ୍ତ୍ରୀ ଭାବେ ମଧ ସେ କାର୍ଯ୍ୟ ସଂପାଦନ କରିଥିଲେ । ଓଡ଼ିଶାରେ ଭୂସଂସ୍କାର ଆଇନ ପ୍ରଚଳନ କରାଗଲା । ଜମିଦାରମାନଙ୍କଠାରୁ ଜମିଛଡ଼ାଯାଇ ଗରିବ, ଜମିହୀନମାନଙ୍କ ମଧରେ ବଣ୍ଟାଯିବାର ବ୍ୟବସ୍ଥା କରାଯାଇଥିଲା । ସେ ନିଜେ ତାଙ୍କର ଶହ ଶହ ଏକର ଜମିକୁ ଗରିବମାନଙ୍କ ମଧରେ ସ୍ୱେଚ୍ଛାକୃତ ଭାବେ ଦାନ କରିବାକୁ ପଛାଇ ନଥିଲେ ।

କେବଳ ରାଜସ୍ୱ ବିଭାଗ ନୁହେଁ ଶିଳ୍ପ, ଶିକ୍ଷା ସମସ୍ତ କ୍ଷେତ୍ରରେ ତାଙ୍କର ଅବଦାନ ଅବିସ୍ମରଣୀୟ । ଶିଳ୍ପ କ୍ଷେତ୍ରରେ ତାଙ୍କର ମନ୍ତ୍ରିତ୍ୱ ସମୟରେ ନିଶ୍ଚିତ ଭାବେ ଓଡ଼ିଶା ପାଇଁ ଏକ ଗର୍ବ ଅଟେ । **ଯେତେବେଳେ ବୀରେନ୍ ମିତ୍ର ତାଙ୍କର ମୁଖ୍ୟମନ୍ତ୍ରୀ ପଦବୀରୁ ଇସ୍ତଫା ଦେଲେ ସେ ମାତ୍ର ଦୁଇବର୍ଷ ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ବହୁତଗୁଡ଼ିଏ ବିଭାଗ ହାତରେ ରଖିଥିଲେ ମଧ ତାହା ସୁଚାରୁ ରୂପେ ଚଳାଉଥିଲେ ।** ଏକ ଅପ୍ରୀତିକର ପରିସ୍ଥିତିରେ ସମସ୍ତ ମନ୍ତ୍ରୀ ଏକ ସାଙ୍ଗରେ ଇସ୍ତଫା ପ୍ରଦାନ କରିଦେଲେ । ସଦାଶିବ ତ୍ରିପାଠୀ ଜଣିଏ ମାତ୍ର ମୁଖ୍ୟମନ୍ତ୍ରୀ ଏ ପରିସ୍ଥିତିକୁ ମୁକାବିଲା କଲେ ଏବଂ ସମସ୍ତ ବିଭାଗକୁ ନିଜ ହାତରେ ରଖି ପୁନର୍ବାର ସାଧାରଣ ନିର୍ବାଚନ ହେବା ପର୍ଯ୍ୟନ୍ତ ଶାସନ ଚଳାଇଲେ । ନିଜ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ସେ କୌଣସି ଚାପର ଶିକାର ନହୋଇ ଧୈର୍ଯ୍ୟର ସହିତ କାର୍ଯ୍ୟ ଚଳାଇ ନିଜର ଦକ୍ଷତା ପ୍ରତିପାଦନ କରୁଥିଲେ । ଏକମାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟ ଭୁବନେଶ୍ୱରରେ ଥିବାରୁ ସମ୍ବଲପୁର ଏବଂ ବ୍ରହ୍ମପୁରରେ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ଜୋର୍‌ଦାର ଆନ୍ଦୋଳନ ମୁଣ୍ଡ ଟେକିଲା । ତେଣୁ ସେ ତାଙ୍କର ଶିକ୍ଷା ମନ୍ତ୍ରୀଙ୍କ ତତ୍ତ୍ୱାବଧାନରେ ଏକ କମିଟି ଗଠନ କରାଇ ତୁରନ୍ତ ସମାଧାନର ପନ୍ଥା ବାହାର କରିବାକୁ ନିର୍ଦ୍ଦେଶ ଦେଲେ । ଶେଷରେ ତାଙ୍କରି ସମୟରେ ହିଁ ବ୍ରହ୍ମପୁରରେ ଏବଂ ସମ୍ବଲପୁରରେ ନୂତନ ଭାବେ ଦୁଇଟି ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯାଇପାରିଥିଲା ।

ପୁରୀ ଜଗନ୍ନାଥ ମନ୍ଦିରରେ ସେତେବେଳେ ଆଲୁଅ ଲାଗି ନଥାଏ । ତେଣୁ ସନ୍ଧ୍ୟାରେ ମନ୍ଦିରକୁ ଭକ୍ତମାନେ ଯିବାକୁ ନାନା ଅସୁବିଧାର ସମ୍ମୁଖୀନ ହେଉଥିଲେ । ଏହାକୁ ଉପଲବ୍ଧି କରି ସେ ତାଙ୍କର ମନ୍ତ୍ରିମଣ୍ଡଳରେ ଥିବା ଶକ୍ତି ମନ୍ତ୍ରୀଙ୍କୁ ଯୁଦ୍ଧକାଳୀନ ଭିତ୍ତିରେ କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ପୁରୀ ଜଗନ୍ନାଥ ମନ୍ଦିରରେ ସେତେବେଳେ ଆଲୁଅ ଲାଗି ନଥାଏ । ତେଣୁ ସନ୍ଧ୍ୟାରେ ମନ୍ଦିରକୁ ଭକ୍ତମାନେ ଯିବାକୁ ନାନା ଅସୁବିଧାର ସମ୍ମୁଖୀନ ହେଉଥିଲେ । ଏହାକୁ ଉପଲବ୍ଧି କରି ସେ ତାଙ୍କର ମନ୍ତ୍ରିମଣ୍ଡଳରେ ଥିବା ଶକ୍ତି ମନ୍ତ୍ରୀଙ୍କୁ ଯୁଦ୍ଧକାଳୀନ ଭିତ୍ତିରେ କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ଭଲ କାମଟେ କରିବାକୁ ହେଲେ ନାନାପ୍ରକାରର ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଯିଏ ଏହାକୁ ଧୈର୍ଯ୍ୟର ସହିତ ମୁକାବିଲା କରି ଆଗକୁ ଯାଏ ସିଏ ହିଁ ପ୍ରକୃତ ମଣିଷ ବୋଲି ପରିଗଣିତ ହୁଏ । ସେହିଭଳି ଜଣେ ମଣିଷଭଳି ମଣିଷଟେ ଥିଲେ ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ । ଶେଷରେ ଶ୍ରୀମନ୍ଦିରରେ ଆଲୁଅ ଜଳିବା ସହିତ ଭକ୍ତମାନଙ୍କର ଦୁଃଖଦୁର୍ଦ୍ଦଶା ଦୂର ହୋଇପାରିଥିଲା । ଦୁଇ ବର୍ଷ ପରେ ସାଧାରଣ ନିର୍ବାଚନ ହେଲା । ସେଥିରେ ତାଙ୍କ ସରକାରଙ୍କର ପତନ ହେଲା । ତାଙ୍କୁ ବିରୋଧୀ ଦଳରେ ବସିବାକୁ ପଡ଼ିଲା ବିରୋଧୀ ଦଳର ନେତା ହିସାବରେ । ସରକାରଙ୍କୁ ଗଠନମୂଳକ କାର୍ଯ୍ୟରେ ସମସ୍ତ ପ୍ରକାର ସାହାଯ୍ୟ ସେ କରୁଥିଲେ । ଯେଉଁଠାରେ ଜନହିତକର କାର୍ଯ୍ୟରେ ସରକାରଙ୍କ ତରଫରୁ ଅବହେଳା ହେଉଥିଲା ସେ କ୍ଷେତ୍ରରେ କଠୋର ସମାଲୋଚନା କରିବାକୁ ପଛାଉ ନଥିଲେ ।

ଏକାଧାରାରେ ସେ ଥିଲେ ଜଣେ ସଂଗଠକ, ସ୍ପଷ୍ଟବାଦୀ ଓ ସ୍ଥିତପ୍ରଜ୍ଞ ବ୍ୟକ୍ତିତ୍ୱ । **ଥରେ କଟକରେ ତାଙ୍କୁ ଏକ ସରକାରୀ ଜାଗାବାଡ଼ି ଯୋଗାଇ ଦେବାକୁ ସରକାରଙ୍କ ତରଫରୁ ଆଦେଶ ପ୍ରଦାନ କରାଗଲା । ଏହାକୁ ସେ ସିଧାସଳଖ ଭାବେ ପ୍ରତ୍ୟାଖ୍ୟାନ କରିଦେଲେ । ତାଙ୍କର ଯୁକ୍ତି ରହିଲା ମୋର ତ ନବରଙ୍ଗପୁରରେ ବହୁତ ଜାଗା ଅଛି ମୁଁ କାହିଁକି କଟକରେ ଜାଗା ନେବି ?** କିଏବା ସେଠି ରହିବ ? ଥାଙ୍କ ପଟୁଆରରେ ଯିବାକୁ ସେ ଘୋର ବିରୋଧ କରୁଥିଲେ । ତାଙ୍କର କହିବାର କଥା ମୁଁ ବି ଆପଣମାନଙ୍କ ମଧ୍ୟରୁ ଜଣେ । ଏଣୁ ଏହାର ଆବଶ୍ୟକତା ନାହିଁ । ନବରଙ୍ଗପୁର ଏବଂ ଉମରକୋଟରୁ ସେ ନିର୍ବାଚିତ ହୋଇ ବିଧାନସଭାକୁ ଆସୁଥିଲେ । ଦୁଇ ଦୁଇଟି ବିଶ୍ୱବିଦ୍ୟାଳୟ ତାଙ୍କର ମୁଖ୍ୟମନ୍ତ୍ରିତ୍ୱ ସମୟରେ ହୋଇଥିବାରୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ତାଙ୍କୁ ଡକ୍ଟରେଟ ଉପାଧିରେ ଭୂଷିତ କରାଯାଇଥିଲା ।

ଶେଷରେ ତାଙ୍କ ସ୍ୱପ୍ନର ଓଡ଼ିଶା ପ୍ରଗତିରେ ବାଧା ଆସୁଥିବା ଅନୁଭବ କରି ରାଜନୀତିରୁ ଅବସର ନେଇଗଲେ । ପ୍ରଥମ ଥର ପାଇଁ ସେ ମଧୁମେହ ରୋଗରେ ପଡ଼ି ଯଦିଓ ଭଲ ହୋଇଗଲେ କିନ୍ତୁ ସେଥିରେ ସେ ବିଚଳିତ ନହୋଇ ନବରଙ୍ଗପୁରରେ ରହିଲେ ମଧ୍ୟ ଜନହିତକର କାର୍ଯ୍ୟରେ ସଦା ବ୍ରତୀ ଥିଲେ । ଦ୍ୱିତୀୟ ଥର ପାଇଁ ମଧୁମେହ ରୋଗର ଶିକାର ହୋଇ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲରେ ତାଙ୍କୁ ଭର୍ତ୍ତି କରି ଦିଆଯାଇଥିଲା । ଡାକ୍ତରମାନଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ୧୯୮୦ ମସିହା ସେପ୍ଟେମ୍ବର ମାସ ୯ ତାରିଖ ଦିନ ଓଡ଼ିଶାବାସୀ ସେଭଳି ଜଣେ ମହାନ ପୁରୁଷଙ୍କୁ ହରାଇଲେ । ଉତ୍କଳମାତାର ଯୋଗ୍ୟତମ ବରପୁତ୍ର ଯଦିଓ କମ୍ ଦିନ ପାଇଁ ମୁଖ୍ୟମନ୍ତ୍ରୀ ପଦରେ ଆସୀନ ହୋଇଥିଲେ କିନ୍ତୁ ସେ ଯାହା କରିଯାଇଛନ୍ତି ଆଜି ତାହା ଆମ୍ଭମାନଙ୍କ ପାଇଁ ଗର୍ବ ଓ ଗୌରବର ଗାଥା ହୋଇ ରହିଯାଇଛି ।

ଘର ନଂ-୯/୧, 'ଏଫ୍' ଟାଇପ୍
ୟୁନିଟ୍-୯ ଫ୍ଲାଟ୍, ଭୋଇନଗର
ଭୁବନେଶ୍ୱର-୨୨



# ଅଦ୍ୱିତୀୟ, ଅବିସ୍ମରଣୀୟ

ଗୁରୁକଲ୍ୟାଣ ମହାପାତ୍ର

**ସ୍ୱ**ର୍ଗତଃ ସଦାଶିବ ତ୍ରିପାଠୀ ଓଡ଼ିଶାର ଜଣେ ମହାନ୍ ସ୍ୱାଧୀନତା ସଂଗ୍ରାମୀ ଥିଲେ ବୋଲି ଖୁବ୍ କମ୍ ଲୋକେ ଓଡ଼ିଶାରେ ଜାଣିଛନ୍ତି । କାରଣ ସେସବୁ ଅତୀତର ଇତିହାସ । ଇତିହାସକୁ ଲିପିବଦ୍ଧ କରିବାକୁ କିମ୍ବା ସାଇତି ରଖିବାକୁ ଆମେମାନେ ବିଧିବଦ୍ଧ ଉଦ୍ୟମ କରିନାହୁଁ ଆଜିଯାଏଁ । ସରକାରୀ ସ୍ତରରେ ସେ ଦିଗରେ କିଛିଟା ଉଦ୍ୟମ ହୋଇଥିଲେ ହେଁ ବେସରକାରୀ ସ୍ତରରେ ସେପରି ଆଖିଦୃଶିଆ ଉଦ୍ୟମ ହୋଇଥିବା ପରି ମନେହୁଏ ନାହିଁ । ସେଥିପାଇଁ ସମ୍ଭବତଃ ଇତିହାସ ଆମର ବିକୃତ ବା ଅସମ୍ପୂର୍ଣ୍ଣ ।

ଦୁଃଖର କଥା ଭାରତର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା ଓ ଓଡ଼ିଆମାନଙ୍କର ଗୌରବୋଜ୍ଜ୍ୱଳ ଭୂମିକା ରହିଥିଲେ ହେଁ ସେ ବିଷୟରେ ଲେଖାଯାଇଛି ଅଳ୍ପ – ଆହୁରି ଅନେକ ଘଟଣା ରହିଯାଇଛି ଅନ୍ଧାରରେ । ସେ ଦୃଷ୍ଟିରୁ ସ୍ୱର୍ଗୀୟ ସଦାଶିବ ତ୍ରିପାଠୀଙ୍କ ସଂପର୍କରେ ସାମାନ୍ୟ କିଛି ଲେଖିବାକୁ ଏ ଲେଖକ ପ୍ରୟାସ କରିଛି ମାତ୍ର ।

ସ୍ୱର୍ଗୀୟ ତ୍ରିପାଠୀଙ୍କ ଜୀବନର ଘଟଣାବଳୀ ଉପରେ ଲେଖି ବସିଲେ ତାହା ହୁଏତ ଏକ ବିରାଟ ଗ୍ରନ୍ଥ ହେବ । ଜୀବନଠାରୁ ଜୀବନୀ ବଳିଯିବ । କିନ୍ତୁ ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହେବା ପରେ ସେ ଯେପରି ଅହିଂସା ଆନ୍ଦୋଳନରେ ଭାଗ ନେଇ ନିଜର ଜୀବନକୁ ଶୁଦ୍ଧପୂତ କରିଥିଲେ, ତାହା ତାଙ୍କର ରାଜନୀତିକ ଜୀବନକୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

ଅବଶ୍ୟ ଏବେ ସମାଜସେବାଠାରୁ ରାଜନୀତିକୁ ଆମେମାନେ ବଡ଼ ମନେ କରି ଆସୁଛୁଁ । ସେଥିପାଇଁ ଚର୍ଚ୍ଚାରେ ହେଉ ବା ଲେଖାରେ ହେଉ ରାଜନୀତିଜ୍ଞମାନେ ହିଁ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ରହି ଆସିଛନ୍ତି । ଅଥଚ ଜଣେ ନୀତିବାନ୍ ଆଦର୍ଶ ସ୍ଥାନୀୟ ସମାଜସେବୀର ଗୁରୁତ୍ୱ ହ୍ରାସ ପାଉଛି ଏ ସମାଜରେ ।

ପ୍ରାକ୍ ସ୍ୱାଧୀନତା କାଳରେ ୧୯୩୭ରୁ ୧୯୪୬ ପର୍ଯ୍ୟନ୍ତ ପ୍ରଥମ ଥର ଲାଗି ସେ ନବରଙ୍ଗପୁର ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ ଆଉ ଦ୍ୱିତୀୟ ଥର ଲାଗି ୧୯୪୬ରୁ ୧୯୫୨ ପର୍ଯ୍ୟନ୍ତ ସେ ସେହି ଆସନରୁ ଆଉଥରେ ନିର୍ବାଚିତ ହୋଇଥିଲେ । ଏହାପରେ ୧୯୫୨ରୁ ୧୯୫୭ ପର୍ଯ୍ୟନ୍ତ ସ୍ୱାଧୀନ ଭାରତରେ ପ୍ରଥମେ ସେ ସେହି ନବରଙ୍ଗପୁର ଆସନରୁ ବିଧାନସଭାକୁ ବିଜୟୀ ହୋଇଥିଲେ । ଦ୍ୱିତୀୟ ଥର ଲାଗି ମଧ୍ୟ ସେ ସେହି ଆସନରୁ ୧୯୫୭ରୁ ୧୯୬୧ ପର୍ଯ୍ୟନ୍ତ, ତୃତୀୟ ଥର ଲାଗି ୧୯୬୧ରୁ ୧୯୬୨ ପର୍ଯ୍ୟନ୍ତ ଓ ଚତୁର୍ଥ ଓ ଶେଷଥର ପାଇଁ ୧୯୬୭ରୁ ୧୯୭୧ ପର୍ଯ୍ୟନ୍ତ ନିର୍ବାଚିତ ହୋଇଥିଲେ । ଦୀର୍ଘ ଦିନର ସକ୍ରିୟ ରାଜନୀତିକ ଜୀବନରେ ସେ ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ହୋଇଥିଲେ ହେଁ ସେ ଥିଲେ ଗର୍ବରହିତ, ଆଡ଼ମ୍ବରହୀନ, ପରୋପକାରୀ ଓ ନିର୍ଲୋଭ । ସେ ବହୁବାର ମନ୍ତ୍ରୀ ଓ ଥରେ ମୁଖ୍ୟମନ୍ତ୍ରୀ ହୋଇଥିଲେ ମଧ୍ୟ ରାଜଧାନୀ ଭୁବନେଶ୍ୱରରେ ତାଙ୍କର ଜମି ବା ଘର ଖଣ୍ଡିଏ ନଥିଲା । କେତେ କାହାଙ୍କୁ ସେ ଆପଣାର କ୍ଷମତା ବଳରେ ରାଜଧାନୀ ଭୁବନେଶ୍ୱରରେ ଜମି କରାଇ ଦେଇଥିଲେ, ଅଥଚ ତାଙ୍କୁ ଜମି ଯଚା ଯିବାବେଳେ ସେ ରୋକଠୋକ୍ ନାହିଁ କରି ଦେଇଥିଲେ । ଏପରିକି ନବରଙ୍ଗପୁରରେ ଆପଣାର ବିପୁଳ ଜମି, ଜମିଦାରୀ ଓ ବାସଭବନକୁ ସେ ଦାନ କରି ଦେଇଥିଲେ । ଲୋକେ ଯେଉଁଠି ନିଜ ପାଇଁ ଓ ନିଜର ଭବିଷ୍ୟତ ବଂଶଧରଙ୍କ ପାଇଁ ବିପୁଳ ସଂପତ୍ତି ସଂରକ୍ଷିତ କରି ଚିରନିଦ୍ରାରେ ଶୋଇ ଯାଉଛନ୍ତି, ସେପରି ସ୍ଥଳେ ଦେଶପ୍ରେମୀ ଶ୍ରୀ ତ୍ରିପାଠୀ ଆଖି ବୁଜିବା ପୂର୍ବରୁ ବି ବୁଝିଲେ ନାହିଁ ବିନା ସଂପତ୍ତି ଓ ଜମିବାଡ଼ି ଯୋଗୁଁ ତାଙ୍କର ଭବିଷ୍ୟତ ବଂଶଧରଙ୍କ ଦୁରବସ୍ଥା । ଏପରି ତ୍ୟାଗର ପଟ୍ଟାନ୍ତର କାହିଁ ? ଏପରି ବିଶାଳ ହୃଦୟର ସ୍ଥାନ କାହିଁ ଆମ ସମାଜରେ ଆଜି ?

ଏବେ ତ ସାଧାରଣ ସେବା କ୍ଷେତ୍ରରେ ଆଦୌ କାର୍ଯ୍ୟ ନକରି କିମ୍ବା ରାଜନୀତିକ ଦଳର ନୀତି, ଆଦର୍ଶ ଓ କାର୍ଯ୍ୟକ୍ରମରେ ଆଦୌ ସାମିଲ ନ ହୋଇ ମଧ୍ୟ ନିର୍ବାଚନ ବେଳେ ଦଳୀୟ ଟିକେଟ ଖଣ୍ଡିଏ ପାଇବା ପାଇଁ କିମ୍ବା ଦଳୀୟ ଟିକେଟ ନ ମିଳିଲେ ମଧ୍ୟ ପଦପଦବୀରେ ରହିବା ପାଇଁ ଯେପରି ପ୍ରତିଯୋଗିତା ଚାଲିଛି

ତାହା ଦେଖିଲେ ଅବାକ୍ ହେବାକୁ ପଡ଼େ । କିନ୍ତୁ ଏକାଧିକବାର ବିଭିନ୍ନ ବିଭାଗରେ ମନ୍ତ୍ରୀ ହୋଇ ଏପରିକି ଥରେ ମୁଖ୍ୟମନ୍ତ୍ରୀ ଓ ଥରେ ବିଧାନସଭାର ବିରୋଧୀ ଦଳର ନେତା ହୋଇ ସେ କେବଳ ତାଙ୍କର ନିଷ୍କଳଙ୍କ ବ୍ୟକ୍ତିତ୍ୱ ଓ କାର୍ଯ୍ୟଦକ୍ଷତାକୁ ହିଁ ପ୍ରତିପାଦିତ କରିଛନ୍ତି । ଏପରି ଦୃଷ୍ଟାନ୍ତ ବିରଳ । ସତ କହିବାକୁ ଗଲେ ବ୍ୟକ୍ତିତ୍ୱ ଦୃଷ୍ଟିରୁ ଏବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କେବଳ ତାଙ୍କ ସହ ତୁଳନୀୟ ହୋଇପାରନ୍ତି, ସେପରି ମନେହୁଏ ମୋର ।

ଅନେକ ଥର ମନ୍ତ୍ରୀ ଭାବେ ରାଜସ୍ୱ ବିଭାଗର ଦାୟିତ୍ୱ ସେ ନେଇଥିଲେ । ୧୯୪୯ ମସିହା ମେ ୧୫ ତାରିଖରୁ ୧୯୫୦ ମସିହା ମେ ୧୨ ତାରିଖ ପର୍ଯ୍ୟନ୍ତ ସ୍ୱାଧୀନୋତ୍ତର ଭାରତର ଓଡ଼ିଶା ରାଜ୍ୟରେ ସେ ପ୍ରଥମେ ରାଜସ୍ୱ ମନ୍ତ୍ରୀ ହେବାର ଗୌରବ ଅର୍ଜନ କରିଥିଲେ । ଏପରିକି ୧୯୬୫ ମସିହା ଫେବୃଆରୀ ୨୧ରେ କୋରାପୁଟ ଅଞ୍ଚଳରୁ ସେ ପ୍ରଥମେ ମୁଖ୍ୟମନ୍ତ୍ରୀ ହେବା ସମୟରେ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ବିଭାଗ ଯଥା- ଅର୍ଥ, ଶିକ୍ଷା, ଯୋଜନା ଓ ସମନ୍ୱୟ, ଖଣି ଓ ଭୂତତ୍ତ୍ୱ, ଜଳସେଚନ ଓ ବିଦ୍ୟୁତ୍, ବାଣିଜ୍ୟ ସମବାୟ, ଜଙ୍ଗଲ, ଗ୍ରାମଗୋଷ୍ଠୀ ଓ ପଞ୍ଚାୟତିରାଜ ସହ ରାଜସ୍ୱ ବିଭାଗଟିକୁ ମଧ୍ୟ ନିଜ ଅଧୀନରେ ରଖିଥିଲେ । ଅବଶ୍ୟ ୧୯୬୭ରେ ସେ ନିଜ ମନ୍ତ୍ରିମଣ୍ଡଳର ବିଭାଗ ଅଦଳବଦଳ କରିବା ବେଳେ ନିଜେ ରାଜସ୍ୱ ବିଭାଗଟି ନିଜ ହାତରେ ନରଖି ମନ୍ତ୍ରୀ ଚନ୍ଦ୍ରମୋହନ ସିଂ (ଏବେ ସ୍ୱର୍ଗରେ)ଙ୍କ ଦାୟିତ୍ୱରେ ରଖିଥିଲେ । ମାତ୍ର ରାଜସ୍ୱ ବିଭାଗଟି ଦୀର୍ଘଦିନ ଧରି ତାଙ୍କରି ଦାୟିତ୍ୱରେ ରହି ଥିବାରୁ ସତେ ଯେପରି ଚଳଚଞ୍ଚଳ ହୋଇ ଉଠିଥିଲା ।

ଭାରତର ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ହରେକୃଷ୍ଣ ମହତାବଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଗତ ୧୯୪୬ ଏପ୍ରିଲ ୨୩ ତାରିଖରେ ଯେତେବେଳେ ନୂତନ ସରକାର ଗଠିତ ହୋଇଥିଲା, ସେତେବେଳେ ସଦାଶିବ ତ୍ରିପାଠୀଙ୍କ ଘନିଷ୍ଠ, ରାଧାକୃଷ୍ଣ ବିଶ୍ୱାସରାୟ ଅବିଭକ୍ତ କୋରାପୁଟ ଅଞ୍ଚଳରୁ ପ୍ରଥମେ ପୂର୍ତ୍ତ ମନ୍ତ୍ରୀ ହୋଇଥିଲେ । ମାତ୍ର ସ୍ୱାଧୀନତା ପ୍ରାପ୍ତି ପରେ ୧୯୪୯ ମେ ୧୫ରେ ହରେକୃଷ୍ଣ ମହତାବ ଆଉ ଓଡ଼ିଶାର ପ୍ରଧାନମନ୍ତ୍ରୀ ନହୋଇ ମୁଖ୍ୟମନ୍ତ୍ରୀ ଭାବେ ନୂତନ ସରକାର ଗଠନ କରିଥିଲେ । ସେହି ମନ୍ତ୍ରିମଣ୍ଡଳରେ ସଦାଶିବବାବୁ ପ୍ରଥମେ ମନ୍ତ୍ରୀ ହୋଇ ରାଜସ୍ୱ ବିଭାଗ ସହିତ ଯୋଗାଣ ଓ ପରିବହନ ବିଭାଗ ଦୁଇଟିର ଦାୟିତ୍ୱରେ ରହିଥିଲେ । ଏହାପରେ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ସେ ରାଜସ୍ୱ ବିଭାଗ ସହିତ ଯୋଗାଣ, ପରିବହନ ଓ ଅବକାରୀ ବିଭାଗର ଦାୟିତ୍ୱ ନେଇଥିଲେ ।

ଭାରତରେ ସମ୍ବିଧାନ ଅନୁଯାୟୀ ସାଧାରଣ ନିର୍ବାଚନ ହେବା ପରେ ପରେ ୧୯୫୨ ଫେବୃଆରୀ ୨୦ ତାରିଖରେ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ଯେଉଁ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା, ସେଥିରେ ସଦାଶିବବାବୁ ନଥିଲେ । ମାତ୍ର ୧୯୫୪ ମେ ୧୧ ତାରିଖରେ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ମନ୍ତ୍ରିମଣ୍ଡଳର ଯେଉଁ ସଂପ୍ରସାରଣ ହୋଇଥିଲା, ସେଥିରେ ସଦାଶିବବାବୁ ରାଜସ୍ୱ ବିଭାଗସମେତ ଅବକାରୀ ଓ ଯୋଗାଣ ବିଭାଗ ଦାୟିତ୍ୱରେ ଥିଲେ । ଉଲ୍ଲେଖନୀୟ ଯେ ସମାଜର ପୂର୍ବତନ ସଂପାଦକ ରାଧାନାଥ ରଥ ମଧ୍ୟ ପ୍ରଥମେ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ସେତେବେଳେ ସାମିଲ ହୋଇ ଅର୍ଥ ଓ ଶିକ୍ଷା ବିଭାଗ ଦାୟିତ୍ୱରେ ଥିଲେ ।

ଏହାପରେ ୧୯୫୬ ଅକ୍ଟୋବର ୧୯ରେ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରିମଣ୍ଡଳରେ ସଦାଶିବବାବୁଙ୍କୁ ସାମିଲ କରାଯାଇନଥିଲା । ଏପରିକି ୧୯୫୭ ଏପ୍ରିଲ ୬ରେ ଦ୍ୱିତୀୟ ବିଧାନସଭା ଅଧିବେଶନ ଉପଲକ୍ଷେ ମହତାବଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରିମଣ୍ଡଳରେ କିନ୍ତୁ ସଦାଶିବବାବୁ ସ୍ଥାନ ପାଇ ପାରିଲେ ନାହିଁ । ଅଥଚ ସେ ବର୍ଷ ଏପ୍ରିଲ ୨୭ (୧୯୫୭) କିମ୍ବା ୧୯୫୯ ମେ ୨୨ରେ ମହତାବଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ମନ୍ତ୍ରିମଣ୍ଡଳର ସଂପ୍ରସାରଣ ଓ ବିଭାଗ ଅଦଳବଦଳ ହୋଇଥିଲେ ହେଁ ସଦାଶିବବାବୁଙ୍କୁ ମନ୍ତ୍ରିମଣ୍ଡଳରେ ନିଆଯାଇ ନଥିଲା । ମାତ୍ର ମହତାବ ମନ୍ତ୍ରିମଣ୍ଡଳର ପତନ ୧୯୬୧ ଫେବୃଆରୀ ୨୫ରେ ଘଟିବା ପରେ ୧୯୬୧ ଜୁନ୍ ୨୩ ତାରିଖରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ତୃତୀୟ ବିଧାନସଭା ଅଧିବେଶନ ପାଇଁ ଯେଉଁ ନୂତନ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା, ସେଥିରେ ସଦାଶିବବାବୁଙ୍କୁ ସାମିଲ କରାଯାଇ ରାଜସ୍ୱ, ଅବକାରୀ ଓ ଜଙ୍ଗଲ ବିଭାଗର ଦାୟିତ୍ୱ ଦିଆଯାଇଥିଲା । ସେହି ମନ୍ତ୍ରିମଣ୍ଡଳ ତାଲିକାରେ ତାଙ୍କର ନାମ ତୃତୀୟରେ ଥିଲା । ତାଙ୍କ ଉପରକୁ କେବଳ ବୀରେନ ମିତ୍ରଙ୍କ ନାମ ରହିଥିଲା ।

ଅବଶ୍ୟ କାମରାଜ ଯୋଜନାରେ ବିଜୁବାବୁ ଇସ୍ତଫା ଦେବାରୁ ବିଜୁବାବୁଙ୍କ ସୁପାରିଶ ଅନୁଯାୟୀ ୧୯୬୩ ଅକ୍ଟୋବର ୨ରେ ବୀରେନ ମିତ୍ର ଓଡ଼ିଶାର ନୂତନ ମୁଖ୍ୟମନ୍ତ୍ରୀ ହେଲେ ଓ ତାଙ୍କ ମନ୍ତ୍ରିମଣ୍ଡଳରେ ସଦାଶିବ ତ୍ରିପାଠୀଙ୍କୁ ସ୍ଥାନ ଦେଇ ତାଙ୍କୁ ପୂର୍ବପରି ରାଜସ୍ୱ ବିଭାଗସମେତ ଅବକାରୀ, ସମବାୟ ଓ ଜଙ୍ଗଲ ବିଭାଗର ଦାୟିତ୍ୱ ଦିଆଯାଇଥିଲା ।

ରାଜନୀତିକ କାରଣରୁ ପ୍ରାୟ ଦୁଇବର୍ଷରୁ କମ୍ ସମୟ ପାଇଁ ରହି ବୀରେନ ମିତ୍ରଙ୍କ ସରକାରର ପତନ ଘଟିଲା ୧୯୬୫ ଫେବୃଆରୀ ୨୧ରେ । ଆଉ ସେହିଦିନ ତତ୍କାଳୀନ କଂଗ୍ରେସ ଦଳର ଏକ ନିର୍ବିବାଦୀୟ ବ୍ୟକ୍ତି ଭାବେ ସଦାଶିବବାବୁଙ୍କୁ ମୁଖ୍ୟମନ୍ତ୍ରୀ କରାଗଲା । ମାତ୍ର ବିଭିନ୍ନ କାରଣ ଯୋଗୁଁ ସଦାଶିବବାବୁଙ୍କ ମନ୍ତ୍ରିମଣ୍ଡଳ ୧୯୬୭ ମାର୍ଚ୍ଚ ୮ ତାରିଖରେ ଇସ୍ତଫା ଦେଇଥିଲେ । ଏହାପରେ ଚତୁର୍ଥ ବିଧାନସଭା ପାଇଁ ନିର୍ବାଚନ ହୋଇଥିଲା ଏବଂ ୧୯୬୭ ମସିହା ମାର୍ଚ୍ଚ ୮ ତାରିଖରେ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଓ ଜନକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ସେତେବେଳେ ଆଭ୍ୟନ୍ତରୀଣ କନ୍ଦଳ ଯୋଗୁଁ କଂଗ୍ରେସ ଦଳ ନିର୍ବାଚନରେ ଭଲ କରିପାରି ନଥିଲା । ସେତେବେଳେ ୧୪୦ ସଂଖ୍ୟା ବିଶିଷ୍ଟ ବିଧାନସଭା ଆସନରେ ସରକାର ଗଠନ କରିଥିବା ସ୍ୱତନ୍ତ୍ର ଦଳକୁ ୪୯ଟି ଆସନ ଓ ଜନକଂଗ୍ରେସ ଦଳକୁ ୨୬ଟି ଆସନ ମିଳିଥିଲା । କଂଗ୍ରେସ ଦଳକୁ ମିଳିଥିଲା ମାତ୍ର ୩୧ଟି ଆସନ । ଅବଶ୍ୟ ସେହି ନିର୍ବାଚନରେ ସଦାଶିବବାବୁ କଂଗ୍ରେସ ଦଳପକ୍ଷରୁ ବିଧାୟକ ଭାବେ ନିର୍ବାଚିତ ହୋଇଥିଲେ ଓ ସମ୍ମାନ ଦୃଷ୍ଟିରୁ ତାଙ୍କୁ ତା.୧୮.୦୩.୧୯୬୭ରେ ବିଧାନସଭାର ବିରୋଧୀ ଦଳର ନେତା କରାଯାଇଥିଲା । ସେ ସେହି ପଦବୀରେ ତା.୨୩.୧.୧୯୭୧ ପର୍ଯ୍ୟନ୍ତ ରହି ମିଳିତ ସରକାରଙ୍କୁ ଗଠନମୂଳକ ସମାଲୋଚନା କରି ଉଜ୍ଜ୍ୱଳ ଦୃଷ୍ଟାନ୍ତ ସୃଷ୍ଟି କରିଥିଲେ । ମାତ୍ର କଂଗ୍ରେସ ଦଳରେ କନ୍ଦଳ ତୀବ୍ର ରୂପ ନେଇଥିଲା ଓ ସେତେବେଳେ ସର୍ବଭାରତୀୟ ସ୍ତରରେ କଂଗ୍ରେସର ବିଭାଜନ ଘଟିଥିଲା । ତାହାର ପ୍ରଭାବ ମଧ୍ୟ ଓଡ଼ିଶାର କଂଗ୍ରେସ ଦଳ ଉପରେ ପଡ଼ିଥିଲା । ନୀତି ଓ ଆଦର୍ଶକୁ ଜଳାଞ୍ଜଳି ଦେଇ ସଦାଶିବବାବୁ କ୍ଷମତାସର୍ବସ୍ୱ ହେବାକୁ ଚାହିଁଲେ ନାହିଁ । ତେଣୁ ବିରୋଧୀ ଦଳର ନେତା ପଦବୀରେ ସଦାଶିବବାବୁ ଆଉ ରହିଲେ ନାହିଁ ଆଉ ଉତ୍କଳ କଂଗ୍ରେସ ପକ୍ଷରୁ ଗଙ୍ଗାଧର ମହାପାତ୍ରଙ୍କୁ ସେତେବେଳେ ବିରୋଧୀ ଦଳର ନେତା କରାଯାଇଥିଲା ।

ସଦାଶିବବାବୁ ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ସର୍ବୋଦୟ ନେତା ଭାବେ ମଧ୍ୟ ପରିଚିତ ଥିଲେ । ଯେତେବେଳେ ଭୂଦାନ ଆନ୍ଦୋଳନର ମୁଖ୍ୟ ବିନୋବା ଭାବେ କୋରାପୁଟ ଅଞ୍ଚଳର ଗରିବ ଆଦିବାସୀ ଲୋକଙ୍କ ସ୍ୱାର୍ଥରକ୍ଷା ପାଇଁ ଭୂଦାନ ଜମିର ସୁବଣ୍ଟନ କରାଇବାକୁ ଚାହିଁଲେ । ସଦାଶିବବାବୁ ସେଥିରେ ସହଯୋଗ କରିଥିଲେ । ସେ ୧୯୫୮ରୁ ୧୯୬୧ ମସିହା ପର୍ଯ୍ୟନ୍ତ ଓଡ଼ିଶା ଭୂଦାନ ଯଜ୍ଞ ସମିତିର ସଂପାଦକ ଦାୟିତ୍ୱରେ ମଧ୍ୟ ଥିଲେ । ତାଙ୍କର ସ୍ୱାଧୀନତା ସଂଗ୍ରାମ ଓ ଭୂଦାନ କାର୍ଯ୍ୟକ୍ରମ ତାଙ୍କ ରାଜନୀତିକୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ରାଜସ୍ୱ ମନ୍ତ୍ରୀ ଭାବେ ତାଙ୍କର ଦୀର୍ଘ ଦିନର ଅଭିଜ୍ଞତା ମଧ୍ୟ ରହିଥିଲା । ତେଣୁ ସେ ଭୂସଂସ୍କାର ଆଇନକୁ ରାଜ୍ୟରେ କାର୍ଯ୍ୟକାରୀ କରିଥିଲେ । ଜମି ସିଲିଙ୍ଗ ଆଇନ ଯୋଗୁଁ ସେ ଓ ତାଙ୍କର ବଡ଼ଭାଇ ନାରାୟଣ ତ୍ରିପାଠୀ ବିପୁଳ ଭୂସଂପତ୍ତି ହରାଇଥିଲେ । ତାଙ୍କର ଏପରି ଆଦର୍ଶ ନୀତିପ୍ରତି ସମସ୍ତେ ଆକୃଷ୍ଟ ହୋଇଥିଲେ ।

ତାଙ୍କର ଆଉ ଏକ ଅବଦାନ ହେଉଛି, ଓଡ଼ିଶାର ଦକ୍ଷିଣାଞ୍ଚଳ ପାଇଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ପଶ୍ଚିମାଞ୍ଚଳ ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଗଠନ । ଭୁବନେଶ୍ୱରରେ କେବଳ ଉତ୍କଳ ବିଶ୍ୱବିଦ୍ୟାଳୟ ଥିବାରୁ ପଶ୍ଚିମ ଓ ଦକ୍ଷିଣାଞ୍ଚଳର ଲୋକେ ଖର୍ଚ୍ଚାନ୍ତ ହୋଇ ଭୁବନେଶ୍ୱରର ଉତ୍କଳ ବିଶ୍ୱବିଦ୍ୟାଳୟକୁ ଆସୁଥିଲେ । କାର୍ଯ୍ୟ ମଧ୍ୟ ବିଳମ୍ବିତ ହେଉଥିଲା । ଏପରି ନିଷ୍ପତ୍ତି ଯୋଗୁଁ ଲୋକେ ତାଙ୍କର ଦୂରଦୃଷ୍ଟିକୁ କେବଳ ନୁହେଁ, ଓଡ଼ିଶାର ଏକତା ରକ୍ଷା ପାଇଁ ତାଙ୍କର ମନୋବୃତ୍ତିକୁ ମଧ୍ୟ ପ୍ରଶଂସା କରିଥିଲେ ।

ମୋର ସୌଭାଗ୍ୟ ଯେ ଭୁବନେଶ୍ୱରରେ ମୁଁ ସ୍କୁଲର ଛାତ୍ର ଥିବାବେଳେ ସଦାଶିବବାବୁଙ୍କୁ ବିଭିନ୍ନ ସଭାସମିତିରେ ଦେଖିଛି । ସେ ଦେଇଥିବା ବକ୍ତୃତାକୁ ମନେ ରଖି ନାହିଁ ସତ କିନ୍ତୁ ତାଙ୍କର ବିନୟୀ ସ୍ୱଭାବ ଓ ନିରାଡ଼ମ୍ବର ବ୍ୟକ୍ତିତ୍ୱ ମୋତେ ଆକୃଷ୍ଟ କରିଥିଲା । ମୋର ପିତୃବ୍ୟ ବିରୋଧୀ ଦଳ ସମର୍ଥନରେ ସ୍ୱାଧୀନ ବିଧାୟକ ସେତେବେଳେ ଥିଲେ । ସଦାଶିବବାବୁ ମୁଖ୍ୟମନ୍ତ୍ରୀ ପଦବୀରୁ ଯିବା ପରେ ଗଠିତ ମିଳିତ ମନ୍ତ୍ରିମଣ୍ଡଳରେ ସେ କ୍ୟାବିନେଟ ପାହ୍ୟାର ମନ୍ତ୍ରୀ ହୋଇଥିଲେ । ତେଣୁ ତାଙ୍କ ପାଖରେ ରହୁଥିବା ଯୋଗୁଁ ତତ୍କାଳୀନ ରାଜନୀତି ବିଷୟରେ ସ୍କୁଲ ଜୀବନରୁ ଏ ଲେଖକର ଏକପ୍ରକାର ଧାରଣା ସୃଷ୍ଟି ହୋଇଥିଲା ।

ସେ ଯାହା ହେଉ, ଶେଷ ଜୀବନରେ କୁଆଡ଼େ ସଦାଶିବବାବୁ ଘୋର ଆର୍ଥିକ ଦୁରବସ୍ଥା ଦେଇ ଗତି କରୁଥିଲେ । ବିଜୁବାବୁଙ୍କର ଅନ୍ୟ ଜଣେ ସହଯୋଗୀ ବୀରେନ ମିତ୍ରଙ୍କର ମଧ୍ୟ ସେପରି ଅବସ୍ଥା ହୋଇଥିଲା । ବିଜୁବାବୁଙ୍କର ଉଭୟ ସହଯୋଗୀ କଟକ ବଡ଼ଡାକ୍ତରଖାନାରେ ପଡ଼ିରହି ପ୍ରାଣ ହରାଇଥିଲେ । ୧୯୮୦ ମସିହା ସେପ୍ଟେମ୍ବର ୯ ତାରିଖରେ କଟକ ବଡ଼ ମେଡ଼ିକାଲରେ ସଦାଶିବବାବୁ ଚିକିତ୍ସାଧୀନ ଥିବା ଅବସ୍ଥାରେ ପ୍ରାଣତ୍ୟାଗ କରିଥିଲେ । ଆମ ସ୍ୱାଧୀନତା ସଂଗ୍ରାମ ଓ ରାଜନୀତିର ଉଜ୍ଜ୍ୱଳ ଦୀପଟିଏ ଚିରଦିନ ପାଇଁ ନିର୍ବାପିତ ହୋଇ ଯାଇଥିଲା ସେଦିନ ।

ମାତ୍ର ସେ ଜନ୍ମ ହେବାର ଶହେ ବର୍ଷ ପରେ ତାଙ୍କୁ କେହି ମନେ ପକାଉ ବା ନପକାଉ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ

ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ରାଜ୍ୟ ସରକାର ଏକ ଜନ୍ମ ଶତବାର୍ଷିକ କମିଟି ରାଜ୍ୟ ସୂଚନା ଓ ଲୋକ ସଂପର୍କ ତଥା ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲଙ୍କ ଅଧ୍ୟକ୍ଷତାରେ ଗଠନ କରିଛନ୍ତି । ପ୍ରମୁଖ ସାଂସ୍କୃତିକ ଅନୁଷ୍ଠାନ ଶବରୀ ସାଂସ୍କୃତିକ ସଂସଦ ଏହି କମିଟିରେ ମଧ୍ୟ ସାମିଲ ହୋଇଛି । ଏହି ସଂସଦର ସଭାପତି ଅଛନ୍ତି ରାଜ୍ୟର ବିଜ୍ଞାନ ଓ ପ୍ରଯୁକ୍ତି ମନ୍ତ୍ରୀ ଶ୍ରୀ ରମେଶ ମାଝୀ ଓ ସଂପାଦକ ଶ୍ରୀ ସୁବାସ ହୋତା । ବରିଷ୍ଠ ରାଜନେତା ତଥା ସାଂସଦ ଶ୍ରୀ ପ୍ୟାରୀମୋହନ ମହାପାତ୍ର ଓ ସମାଜସେବୀ ଶ୍ରୀ ଏ.ଭି. ସ୍ୱାମୀ ମଧ୍ୟ ସରକାରଙ୍କର ଏହି ଶତବାର୍ଷିକ ଉତ୍ସବ ପାଳନ କ୍ଷେତ୍ରରେ ସହଯୋଗ ପ୍ରଦାନ ଲାଗି ସମ୍ମତି ଦେଇଛନ୍ତି । ଅବିଭକ୍ତ କୋରାପୁଟ ଜିଲ୍ଲାର ସମସ୍ତ ସାଂସଦ ଓ ବିଧାୟକ ଏହି ରାଜ୍ୟସ୍ତରୀୟ ଜନ୍ମ ଶତବାର୍ଷିକ କମିଟିର ସଦସ୍ୟ ରହିଛନ୍ତି । ଲୋକ ସଂପର୍କ ବିଭାଗର ଶାସନ ସଚିବ ଶ୍ରୀ ରବିନ୍ଦ୍ରନାଥ ଦାଶ ଏହି କମିଟିରେ ସଦସ୍ୟ ରହିଥିବାବେଳେ ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି ଏହାର ସଭ୍ୟ-ଆବାହକ ଅଛନ୍ତି । ଆନନ୍ଦର କଥା ଯେ ଏହି ଅବସରରେ 'ଉତ୍କଳ ପ୍ରସଙ୍ଗ'ର ଏକ ସଂଖ୍ୟାକୁ ସଦାଶିବବାବୁଙ୍କ ସ୍ମୃତିରେ ଏହି ଲେଖକର ଦାୟିତ୍ୱରେ ପ୍ରକାଶନ ପାଇଁ ବ୍ୟବସ୍ଥା କରାଯାଇଛି ।

ଯେଉଁ ଦିବଂଗତ ପୂର୍ବତନ ମୁଖ୍ୟମନ୍ତ୍ରୀମାନଙ୍କର ପ୍ରତିମୂର୍ତ୍ତି ରାଜଧାନୀ ଭୁବନେଶ୍ୱରରେ ଶୋଭା ପାଉନାହିଁ, ସେମାନଙ୍କ ମଧ୍ୟରେ ଅନ୍ୟତମ ସ୍ୱର୍ଗୀୟ ସଦାଶିବ ତ୍ରିପାଠୀ । ତାଙ୍କର ପ୍ରତିମୂର୍ତ୍ତିଟିଏ ରାଜଧାନୀରେ ପ୍ରତିଷ୍ଠା କରିବା ପାଇଁ ଉଭୟ ସରକାରୀ ଓ ବେସରକାରୀ ସ୍ତରରେ ଉଦ୍ୟମ ହେବା ଉଚିତ ବୋଲି ଏ ଲେଖକ ଅନୁଭବ କରେ । ଶହେ ବର୍ଷ ପରେ ଏ ଲେଖକ ଦିବଂଗତ ସେହି ପବିତ୍ର ବରପୁତ୍ରଙ୍କ ସ୍ମୃତି ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଡି-୧୦/୫
ୟୁନିଟ୍-୮, ଭୁବନେଶ୍ୱର



ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଜୟନ୍ତୀ ଅବସରରେ ଓଡ଼ିଶା ବିଧାନସଭା ପରିସରରେ ଥିବା ତାଙ୍କର ପ୍ରତିମୂର୍ତ୍ତିରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଶ୍ରଦ୍ଧାସୁମନ ଅର୍ପଣ କରୁଛନ୍ତି । ୯.୧୦.୦୯

# ସମାଚାର ପ୍ରସଙ୍ଗ

## ଅନୁଗୁଳରେ ରାଜ୍ୟର ଆଲୁମିନିୟମ୍ ପାର୍କ ହେବ

ଅନୁଗୁଳଠାରେ ଏକ ଆଲୁମିନିୟମ ପାର୍କ ପ୍ରତିଷ୍ଠା ପାଇଁ ନାଲ୍‌କୋ ଏବଂ ଇଡ୍‌କୋ ମଧ୍ୟରେ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି । ଗତ ଅକ୍ଟୋବର ୧୯ ତାରିଖ ସନ୍ଧ୍ୟାରେ ସଚିବାଳୟଠାରେ ଆୟୋଜିତ ଏକ ସ୍ୱତନ୍ତ୍ର ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓ ଶିଳ୍ପ ମନ୍ତ୍ରୀ ଶ୍ରୀ ରଘୁନାଥ ମହାନ୍ତିଙ୍କ ଉପସ୍ଥିତିରେ ନାଲ୍‌କୋର ଜେନେରାଲ୍ ମ୍ୟାନେଜର (ବ୍ୟବସାୟ) ପି.କେ. ଦେ ଏବଂ ଇଡ୍‌କୋର କାର୍ଯ୍ୟକାରୀ ପରିଚାଳନା ନିର୍ଦ୍ଦେଶକ ଶ୍ରୀକାନ୍ତ କବି ଏହି ବୁଝାମଣାପତ୍ରରେ ସ୍ୱାକ୍ଷରିତ କରିଥିଲେ । ଅନୁଗୁଳର ନାଲ୍‌କୋ ନିକଟରେ ଏହି ଆଲୁମିନିୟମ ପାର୍କ ପ୍ରତିଷ୍ଠା ପାଇଁ ଦୁଇ ଶହ ଏକର ଜମି ଚିହ୍ନଟ କରାଯାଇଛି । ଏହି ପାର୍କ ପ୍ରତିଷ୍ଠା ନିମନ୍ତେ ୭୫ କୋଟି ଟଙ୍କା ଖର୍ଚ୍ଚ ହେବ । ଉଭୟ ନାଲ୍‌କୋ ଏବଂ ଇଡ୍‌କୋ ମିଳିତ ଉଦ୍ୟୋଗରେ (୫୦ ପ୍ରତିଶତ) ଏହି ପାର୍କ ପ୍ରତିଷ୍ଠା ହେବ । ଏଥିପାଇଁ ଏକ ମିଳିତ ଉଦ୍ୟୋଗ କମ୍ପାନୀ ଗଠନ କରାଯିବ । ମେସର୍ସ ଏ.ଏଫ୍. ଫ୍ରେଗୁସନ୍ ସଂସ୍ଥା ଦ୍ୱାରା ପ୍ରସ୍ତାବିତ ଆଲୁମିନିୟମ ପାର୍କର ସମ୍ଭାବ୍ୟ ଅନୁଧ୍ୟାନ କରାଯାଇଛି । ଖୁବ୍‌ଶୀଘ୍ର ପ୍ରକଳ୍ପ ପାଇଁ ଏକ ପେଶାଦାର ସଂସ୍ଥା ଦ୍ୱାରା ପୂର୍ଣ୍ଣାଙ୍ଗ ପ୍ରକଳ୍ପ ରିପୋର୍ଟ (ଡିପିଆର୍) ପ୍ରସ୍ତୁତ କରାଯିବ । ଇପିକଲ୍ ଏବଂ ଶିଳ୍ପ ନିର୍ଦ୍ଦେଶାଳୟ ଭଳି ସଂସ୍ଥାମାନେ ଏହି ପାର୍କରୁ ଉତ୍ପାଦିତ ସାମଗ୍ରୀର ବଜାର ବ୍ୟବସ୍ଥା ପାଇଁ ଯୋଜନା କରିବେ । ରାଜ୍ୟରେ କ୍ଷୁଦ୍ର, ମଧ୍ୟମ ଓ ଆନୁଷଙ୍ଗିକ ଶିଳ୍ପଗୁଡ଼ିକର ବିକାଶ ନିମନ୍ତେ ରାଜ୍ୟ ସରକାର ସର୍ବାଧିକ ଗୁରୁତ୍ୱ ଦେଉଥିବାରୁ ପ୍ରସ୍ତାବିତ ଆଲୁମିନିୟମ୍ ପାର୍କରେ ଏଥିପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯିବ । କଷ୍ଟିକ୍ ସୋଡ଼ା, ପେଟ୍ରୋଲିୟମ୍ କୋକ୍, କୋଲତାରପିଚ୍, ଆଲୁମିନିୟମ ଫ୍ଲୋରାଇଡ୍, ଆଲୁମିନିୟମ କଣ୍ଡକ୍ଟର, ଆଲୁମିନିୟମ୍ ଏକ୍ସଟ୍ରସନ, କାଷ୍ଟିଂସ୍ଲାଗ ଓ ଆଲୁମିନିୟମ୍‌ର ପାଓ୍ୱାର ଇତ୍ୟାଦି ସାମଗ୍ରୀ ଏହି ଆନୁଷଙ୍ଗିକ ଶିଳ୍ପ ସଂସ୍ଥା ଜରିଆରେ ଉତ୍ପାଦନ ହେବ ।

ଏହି ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କହିଥିଲେ ଯେ, ରାଜ୍ୟରେ ଶିଳ୍ପ ବିକାଶ ପାଇଁ ବିଶେଷ କରି ବଡ଼ ଶିଳ୍ପ ନିକଟରେ ଆନୁଷଙ୍ଗିକ ଶିଳ୍ପ ସ୍ଥାପନକୁ ଅଧିକ ଗୁରୁତ୍ୱ ଦିଆଯାଇଛି । ଏହାଦ୍ୱାରା ରାଜ୍ୟର ଆର୍ଥିକ ଅଭିବୃଦ୍ଧି ଘଟିବା ସହିତ ରାଜସ୍ୱ ଆଦାୟ ବୃଦ୍ଧି ପାଇବ । ଏଥିପାଇଁ ରାଜ୍ୟ ସରକାର ଅନେକ ଶିଳ୍ପ ଅନୁକୂଳ ପଦକ୍ଷେପ ଗ୍ରହଣ କରିଛନ୍ତି । ୨୦୦୭ ମସିହାର ଶିଳ୍ପନୀତି ଏବଂ ୨୦୦୯ ମସିହାର ଏମ୍.ଏସ୍.ଏମ୍.ଇ ନୀତି ଅନୁସାରେ ଆନୁଷଙ୍ଗିକ ଶିଳ୍ପର ବିକାଶକୁ ସର୍ବାଧିକ ଗୁରୁତ୍ୱ ଦିଆଯାଇଛି । ଇସ୍ପାତ ଓ ଆଲୁମିନିୟମ୍ ଶିଳ୍ପଜାତ ପଦାର୍ଥକୁ ଅଧିକ ମୂଲ୍ୟଯୁକ୍ତ କରିବା ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଇଛି । ରାଜ୍ୟ ସରକାର ଇତିମଧ୍ୟରେ ଓଡ଼ିଶା କ୍ଷୁଦ୍ରଶିଳ୍ପ ନିଗମ ଏବଂ ରାଜ୍ୟ ଅର୍ଥ ନିଗମର ପୁନର୍ବିନ୍ୟାସ କରିଛନ୍ତି । ରାଜ୍ୟର ରାଜସ୍ୱ ଏବଂ ରପ୍ତାନୀ ବୃଦ୍ଧି କ୍ଷେତ୍ରରେ ଏହା ସହାୟକ ହେବ । ରାଜ୍ୟର ବିଭିନ୍ନ ଅଞ୍ଚଳରେ ବିଶେଷ କରି କଳିଙ୍ଗନଗର, ପାରାଦ୍ୱୀପ, ଧାମରା, ଗୋପାଳପୁର, ଝାରସୁଗୁଡ଼ା, ଅନୁଗୁଳ, ଢେଙ୍କାନାଳ, କେନ୍ଦୁଝର ଆଦି ଶିଳ୍ପାଞ୍ଚଳରେ ଆନୁଷଙ୍ଗିକ ଶିଳ୍ପ ପ୍ରତିଷ୍ଠା ଉପରେ ଗୁରୁତ୍ୱ ଦିଆଯାଇଛି । ପ୍ରସ୍ତାବିତ ଆଲୁମିନିୟମ ପାର୍କ ପ୍ରତିଷ୍ଠାଦ୍ୱାରା ରାଜ୍ୟ ବିଶେଷଭାବେ ଉପକୃତ ହେବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ଏହି ବୁଝାମଣାପତ୍ର ସ୍ୱାକ୍ଷରିତ ହେବାପରେ ପ୍ରକଳ୍ପର ସମ୍ପୂର୍ଣ୍ଣ ରିପୋର୍ଟ ପ୍ରସ୍ତୁତ କରାଯିବ । ଇପିକଲ୍ ଓ ଶିଳ୍ପ ନିର୍ଦ୍ଦେଶାଳୟ ଭଳି ଏହି ପାର୍କର ଯୋଜନା ବଜାର ସହିତ ସଂଶ୍ଳିଷ୍ଟ ରହିବ, ରାଜ୍ୟର ଆଲୁମିନିୟମ୍ ଇସ୍ପାତ ଶକ୍ତି କ୍ଷେତ୍ରରେ ପ୍ରତିଷ୍ଠା ହେବାକୁ ଯାଉଥିବା ବୃହତ୍ ପ୍ରକଳ୍ପ ନିକଟରେ ଆନୁଷଙ୍ଗିକ ତଥା ସହଯୋଗୀ ଶିଳ୍ପ ପାର୍କ ଗଠନ ପାଇଁ ଏହା ପ୍ରୋତ୍ସାହନ ଦେବ । ଶିଳ୍ପ ମନ୍ତ୍ରୀ ଶ୍ରୀ ରଘୁନାଥ ମହାନ୍ତି କହିଲେ ଯେ, ତାଙ୍କ ସରକାର କ୍ଷମତାସୀନ ହେବାପରେ ପ୍ରତ୍ୟେକ କ୍ଷେତ୍ରକୁ ଗୁରୁତ୍ୱ

ଦେଉଛନ୍ତି । ଶିଳ୍ପ କ୍ଷେତ୍ରରେ ଅଧିକ ଗୁରୁତ୍ୱ ଦିଆଯାଉଛି । ଏହାଦ୍ୱାରା ଅଧିକ କର୍ମନିଯୁକ୍ତି ସୃଷ୍ଟି ହେବା ସହ ରାଜ୍ୟକୁ ଅଧିକ ରାଜସ୍ୱ ମିଳିବ । ନାଲ୍‌କୋର ଅଧକ୍ଷ ତଥା ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଚିତ୍ତରଞ୍ଜନ ପ୍ରଧାନ କହିଲେ ଯେ, ଆନୁଷଙ୍ଗିକ ତଥା ସହଯୋଗୀ ଶିଳ୍ପ ସଂସ୍ଥା ଏହି ପାର୍କ ପାଇଁ ବିଶେଷ ସହାୟକ ହେବ । ପାଣି, ବିଦ୍ୟୁତ୍, ରାସ୍ତା ବିଶେଷ କରି ଭିତ୍ତିଭୂମି ସହଜରେ ମିଳିପାରିବ । ଏହି ବୁଝାମଣାପତ୍ର ସ୍ୱାକ୍ଷରିତ ଅବସରରେ ମୁଖ୍ୟ ଶାସନ ସଚିବ ଶ୍ରୀ ତରୁଣକାନ୍ତି ମିଶ୍ର, ଉନ୍ନୟନ କମିଶନର ଶ୍ରୀ ସତ୍ୟପ୍ରକାଶ ନନ୍ଦ ଓ ଶିଳ୍ପ ବିଭାଗ ସଚିବ ଶ୍ରୀ ସୌରଭ ଗର୍ଗ ପ୍ରଭୃତି ଉପସ୍ଥିତ ଥିଲେ ।

## ଉଚ୍ଚଶିକ୍ଷାର ସଂସ୍କାର ପାଇଁ ଟାସ୍କ ଫୋର୍ସ

ଉଚ୍ଚଶିକ୍ଷା କ୍ଷେତ୍ରରେ ସଂସ୍କାର, ଯୁଗୋପଯୋଗୀ ଶିକ୍ଷା ପ୍ରଚଳନ, ଆନ୍ତର୍ଜାତିକ ଶିକ୍ଷା ସହ ସମାନତା ଆଣିବା, ଶିଳ୍ପ, କୃଷି ଓ ସ୍ୱାସ୍ଥ୍ୟ ପ୍ରତି ଗୁରୁତ୍ୱ ଦେଇ ଶିକ୍ଷା ପ୍ରଚଳନ କରିବା ଏବଂ ଉଚ୍ଚଶିକ୍ଷା ନୀତିର ଚିଠା ପ୍ରସ୍ତୁତ ପାଇଁ ସରକାର ଏକ ଟାସ୍କଫୋର୍ସ ଗଠନ କରିଛନ୍ତି । ଟାସ୍କଫୋର୍ସ ୨୦୨୧-୨୨ ପର୍ଯ୍ୟନ୍ତ ଉଚ୍ଚଶିକ୍ଷା ପାଇଁ ଏକ ଭିଜନ୍ ଡକ୍ୟୁମେଣ୍ଟ୍ (ଯୋଜନା ଚିଠା) ପ୍ରସ୍ତୁତ କରିବ । ଆଗାମୀ ୩ ମାସ ମଧ୍ୟରେ ଟାସ୍କଫୋର୍ସ ତା'ର ରିପୋର୍ଟ ଦେବ ବୋଲି ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ଦେବୀପ୍ରସାଦ ମିଶ୍ର ଗତ ଅକ୍ଟୋବର ୭ ତାରିଖରେ କହିଛନ୍ତି ।

ଶ୍ରୀ ମିଶ୍ର କହିଲେ ଯେ, ବିଭାଗୀୟ ମନ୍ତ୍ରୀଙ୍କ ସହ ଆଲୋଚନା କରି ୫ ବର୍ଷିଆ ଯୋଜନା ପ୍ରସ୍ତୁତ କରିବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଚଳିତ ବର୍ଷ ଜୁନ୍ ୧୩ ତାରିଖରେ ସବୁ ବିଭାଗକୁ ନିର୍ଦ୍ଦେଶ ଦେଇଥିଲେ । ଗତ ବିଧାନସଭା ଅଧିବେଶନରେ ସେ ଜୁଲାଇ ୧୩ ତାରିଖରେ ଉଚ୍ଚଶିକ୍ଷା ବିଭାଗ ଖର୍ଚ୍ଚଦାବି ଆଲୋଚନାର ଉତ୍ତର ଦେବା ବେଳେ ଉଚ୍ଚଶିକ୍ଷା ପାଇଁ ଏକ ଭିଜନ ଡକ୍ୟୁମେଣ୍ଟ-୨୦୨୦ ପ୍ରସ୍ତୁତ କରାଯିବ ବୋଲି କହିଥିଲେ । ଜୁଲାଇ ୨୪ ତାରିଖରେ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ଉଚ୍ଚଶିକ୍ଷା ସଚିବ ସମ୍ମିଳନୀରେ କେନ୍ଦ୍ର ମାନବ ସମ୍ବଳ ବିକାଶ ମନ୍ତ୍ରୀ କପିଳ ଶିବାଲ ଗୋଟିଏ ଲେଖାଏଁ ଭିଜନ୍ ଡକ୍ୟୁମେଣ୍ଟ ୩ ମାସ ମଧ୍ୟରେ ପ୍ରସ୍ତୁତ କରିବାକୁ ରାଜ୍ୟମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଅଗଷ୍ଟ ୩୧ ତାରିଖରେ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ଉଚ୍ଚଶିକ୍ଷା ସମ୍ପର୍କିତ କେନ୍ଦ୍ରୀୟ ପରାମର୍ଶଦାତା ବୋର୍ଡ଼ ବୈଠକରେ ଏ ବିଷୟରେ ବି ଆଲୋଚନା ହୋଇଥିଲା । ତେଣୁ ପଦାର୍ଥ ବିଜ୍ଞାନ ପ୍ରତିଷ୍ଠାନର ପୂର୍ବତନ ନିର୍ଦ୍ଦେଶକ ତଥା ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପ୍ରଫେସର ତ୍ରିଲୋଚନ ପ୍ରଧାନଙ୍କ ଅଧକ୍ଷତାରେ ଏକ ଟାସ୍କଫୋର୍ସ ଗଠନ କରାଯାଇଛି । ଉଚ୍ଚଶିକ୍ଷା ସଚିବ ଏହାର ସଭ୍ୟ-ଆବାହକ ଥିବା ବେଳେ ପ୍ରଫେସର କେ.ଏଲ୍. ଚୋପ୍ରା, ଡି.ପି. ପଟ୍ଟନାୟକ, ଡି.ପି. ରାୟ, ଏ.କେ. ପୂଜାରୀ, ସୁନୀଲ ଷଡ଼ଙ୍ଗୀ, ପ୍ରିୟମ୍ବଦା ମହାନ୍ତି, ହେଜ୍‌ମାଦି, ସ୍ୱାଧୀନ ପଟ୍ଟନାୟକ, ଅବନୀ ବରାଳ, ଡି.ପି. ରମଣ, ଏଲ୍.ଏନ୍. ମିଶ୍ର, ରବୀନ୍ଦ୍ର କୁମାର ନନ୍ଦ, ଦାମୋଦର ଆଚାର୍ଯ୍ୟ, ରାଜୀବ ସାହୁ ଓ ଅଚ୍ୟୁତ ସାମନ୍ତ ଏହି ଟାସ୍କଫୋର୍ସର ସଭ୍ୟ ଅଛନ୍ତି । ଏହାବ୍ୟତୀତ କେତେକ ସବ୍‌କମିଟି ଗଠନର ପ୍ରସ୍ତାବ ରହିଛି । ଶିଳ୍ପ, କୃଷି ଓ ସ୍ୱାସ୍ଥ୍ୟ ଭଳି କ୍ଷେତ୍ରରେ ସାଂପ୍ରତିକ ଶିକ୍ଷା ବ୍ୟବସ୍ଥାକୁ ଟାସ୍କଫୋର୍ସ ଅନୁଧ୍ୟାନ କରିବ । ଆନ୍ତର୍ଜାତିକ ଶିକ୍ଷାର ମାନ ସହିତ ସମାନତା ଆଣିବା ଏବଂ ଉଚ୍ଚଶିକ୍ଷା ଚିଠା ନୀତି ପ୍ରସ୍ତୁତ କରିବା ପାଇଁ ଟାସ୍କଫୋର୍ସକୁ ଦାୟିତ୍ୱ ଦିଆଯାଇଛି । ଟାସ୍କଫୋର୍ସକୁ ୨ଟି ବର୍ଷିକିଆ ଯୋଜନା ଓ ଦୁଇଟି ୫ ବର୍ଷିଆ (ଦ୍ୱାଦଶ ଓ ତ୍ରିୟୋଦଶ ପଞ୍ଚ ବାର୍ଷିକ) ଯୋଜନା ପ୍ରସ୍ତୁତ କରିବାକୁ କୁହାଯାଇଛି । ରିପୋର୍ଟ ପ୍ରସ୍ତୁତିରେ ସହାୟତା ପାଇଁ କେତେକ ସବ୍‌କମିଟି ଗଠନର ପ୍ରସ୍ତାବ ରହିଛି । ସଂପ୍ରସାରଣ ଓ ଢାଞ୍ଚାଗତ ପୁନର୍ଗଠନ, ଉଚ୍ଚମାନର ପାଠ୍ୟକ୍ରମ, ସ୍ୱୟଂଶାସିତ ଓ ନିୟନ୍ତ୍ରଣ ଏବଂ ଉଚ୍ଚଶିକ୍ଷାରେ ଆକଳନ ପ୍ରଭୃତି ବିଷୟରେ ସବ୍‌କମିଟିଗୁଡ଼ିକ କାମ କରିବେ । କଟକ, ବ୍ରହ୍ମପୁର, ବାଲେଶ୍ୱର, ସମ୍ବଲପୁର ଓ ଜୟପୁରଠାରେ ଆଞ୍ଚଳିକ ବିତର୍କ କର୍ମଶାଳା ଅନୁଷ୍ଠିତ ହେବ । ଆଞ୍ଚଳିକ କର୍ମଶାଳା ସରିବା ପରେ ରାଜ୍ୟସ୍ତରୀୟ କର୍ମଶାଳା କରାଯିବ ଏବଂ 'ଭିଜନ ଡକ୍ୟୁମେଣ୍ଟ' ପସ୍ତୁତିରେ ଏହି କର୍ମଶାଳାର ସୁପାରିଶକୁ ଗୁରୁତ୍ୱ ଦିଆଯିବ । ଆନ୍ତଃ ବିଭାଗୀୟ ସମନ୍ୱୟ ସମିତି ବୈଠକରେ ଏ ସମ୍ପର୍କରେ ଆଲୋଚନା କରାଯାଇପାରେ । ଟାସ୍କଫୋର୍ସ ଡିସେମ୍ବର ଶେଷ ସୁଦ୍ଧା ରିପୋର୍ଟ ଦେବ । ଏହି ରିପୋର୍ଟକୁ ଆଧାର କରି 'ଭିଜନ ଡକ୍ୟୁମେଣ୍ଟ' ପ୍ରସ୍ତୁତ ହେବ ବୋଲି ଶ୍ରୀ ମିଶ୍ର କହିଛନ୍ତି ।

## ରାଜ୍ୟ ଯୋଜନା ରୂପାୟନକୁ କେନ୍ଦ୍ର ଯୋଜନା କମିଶନଙ୍କ ତାରିଫ୍

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ଅଧିକାଂଶ କେନ୍ଦ୍ରୀୟ ଯୋଜନା ଆଶାଜନକ ସଫଳତା ହାସଲ କରିପାରିଛି । କିନ୍ତୁ ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତିକରଣ ଯୋଜନା (ଆର୍‌ଜିଜିଭିୱାଇ) ଓ ଜାତୀୟ ଗ୍ରାମ୍ୟ ସ୍ୱାସ୍ଥ୍ୟ ମିଶନ (ଏନ୍‌ଆର୍‌ଏଚ୍‌ଏମ୍)ର କାର୍ଯ୍ୟକାରିତା

ସନ୍ତୋଷଜନକ ନୁହେଁ । କେନ୍ଦ୍ରୀୟ ଫ୍ଲାଗସିପ୍ କାର୍ଯ୍ୟକ୍ରମଗୁଡ଼ିକୁ ସମୀକ୍ଷା କରି ଏଭଳି ମନ୍ତବ୍ୟ ଦେଇଛନ୍ତି ଓଡ଼ିଶା ପାଇଁ ନିଯୁକ୍ତ କେନ୍ଦ୍ର ଯୋଜନା କମିଶନଙ୍କ ଶ୍ରମ ନିୟୋଜନ ଓ ଲୋକଶକ୍ତି ବିଭାଗର ବରିଷ୍ଠ ପରାମର୍ଶଦାତ୍ରୀ ଶ୍ରୀମତୀ ନୈନୀ ଜୟୀସିଲନ୍ ।

ସୋମବାର ଦିନ ସଚିବାଳୟରେ ଅତିରିକ୍ତ ମୁଖ୍ୟ ଶାସନ ସଚିବ ତଥା ଉନ୍ନୟନ କମିଶନର ଶ୍ରୀ ସତ୍ୟପ୍ରକାଶ ନନ୍ଦଙ୍କ ଅଧ୍ୟକ୍ଷତାରେ ଏବଂ କେନ୍ଦ୍ରୀୟ ପରାମର୍ଶଦାତ୍ରୀ ଶ୍ରୀମତୀ ଜୟୀସିଲନ୍‌ଙ୍କ ଉପସ୍ଥିତିରେ ଅନ୍ତତଃପକ୍ଷେ ୧୩ଟି କେନ୍ଦ୍ରୀୟ ଯୋଜନାର ସମୀକ୍ଷା ହୋଇଥିଲା । କେବଳ ଆରଜିଜିଭିୱାଇ ଓ ଏନ୍ଏଚ୍ଆର୍ଏମ୍‌କୁ ଛାଡ଼ି ଦେଲେ ଅନ୍ୟ ସମସ୍ତ ଯୋଜନା ରାଜ୍ୟରେ ସଫଳତାର ସହ କାର୍ଯ୍ୟକାରୀ ହେଉଛି ବୋଲି ଶ୍ରୀମତୀ ଜୟୀସିଲନ୍ କହିଥିଲେ । ରାଜୀବ ଗାନ୍ଧୀ ବିଦ୍ୟୁତ୍ ଯୋଜନାରେ ହୋଇଥିବା ସର୍ଭେ ଅନୁସାରେ ରାଜ୍ୟରେ ମୋଟ ୮୮ ହଜାର ଜନବସତି ରହିଛି । ସେହି ବସତିଗୁଡ଼ିକୁ ବିଦ୍ୟୁତ୍ ସଂଯୋଗ ଦେବା ହେଉଛି ଏହି ଯୋଜନାର ଲକ୍ଷ୍ୟ । ମାତ୍ର ଅଦ୍ୟାବଧି ମାତ୍ର ୬ ହଜାର ବସତିକୁ ସଂଯୋଗ ଦିଆଯାଇଛି । ଏହି ଯୋଜନାର ବିଫଳତା ପାଇଁ କେନ୍ଦ୍ରୀୟ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଯଥା- ଏନ୍.ଟି.ପି.ସି., ଏନ୍.ଏଚ୍.ପି.ସି. ଆଦି ସଂସ୍ଥାଗୁଡ଼ିକର ଆନ୍ତରିକତାର ଅଭାବ ହିଁ ଦାୟୀ । ଅନ୍ୟପକ୍ଷରେ ଓଡ଼ିଶାରେ ପ୍ରଥମେ ବିଦ୍ୟୁତ୍ କ୍ଷେତ୍ରରେ ଘରୋଇକରଣ ହୋଇଥିବାରୁ ଏଥିଯୋଗୁଁ ଯୋଜନା ବାବଦରେ ମିଳୁଥିବା ଅର୍ଥ ପ୍ରଦାନ ନେଇ ପ୍ରତିବନ୍ଧକ ସୃଷ୍ଟି ହୋଇଛି । ଏଣୁ ମନ୍ଥର ଗତିରେ ଚାଲିଥିବା ଏହି ଯୋଜନାକୁ ତ୍ୱରାନ୍ୱିତ କରିବାକୁ ରାଜ୍ୟ ସରକାରଙ୍କୁ କେନ୍ଦ୍ରୀୟ ପ୍ରତିନିଧି ପରାମର୍ଶ ଦେଇଥିଲେ । ସେହିପରି ସ୍ୱାସ୍ଥ୍ୟ କ୍ଷେତ୍ରରେ ମଧ୍ୟ ରାଜ୍ୟର ସୂଚକାଙ୍କ ଓ ପ୍ରଦର୍ଶନ ସନ୍ତୋଷଜନକ ନୁହେଁ । ଏ ଦିଗରେ ରାଜ୍ୟ ସରକାରଙ୍କୁ ଅନେକ କାର୍ଯ୍ୟକରି ପରିସ୍ଥିତିରେ ଉନ୍ନତି ଆଣିବାକୁ ସେ ପରାମର୍ଶ ଦେଇଥିଲେ ।

ଅପରପକ୍ଷରେ ଉଦ୍ୟାନ ମିଶନର କାର୍ଯ୍ୟକ୍ରମ ସଫଳ ହୋଇଥିବା ଦର୍ଶାଯାଇଥିଲା । ପୂର୍ବରୁ ନର୍ସରୀ ଲାଗି ଅନ୍ୟ ରାଜ୍ୟଗୁଡ଼ିକ ଉପରେ ଏହି ରାଜ୍ୟ ନିର୍ଭରଶୀଳ ଥିଲେ ମଧ୍ୟ ଅଳ୍ପ କିଛି ବର୍ଷ ମଧ୍ୟରେ ଏ ଦିଗରେ ଉନ୍ନତି ପରିଲକ୍ଷିତ ହୋଇଛି । ତେବେ ଉଦ୍ୟାନ କ୍ଷେତ୍ରରେ ଆଶାଜନକ ଅଭିବୃଦ୍ଧି ଲାଗି ଚାଷୀମାନଙ୍କୁ ୪୦ରୁ ୫୦% ହାରରେ ସବ୍‌ସିଡ଼ି ପ୍ରଦାନ କରାଯାଉ ବୋଲି ରାଜ୍ୟ ତରଫରୁ ପ୍ରସ୍ତାବ ଦିଆଯାଇଥିଲା । ଚାଷୀମାନଙ୍କୁ ରାଜ୍ୟ ସରକାର ୧୫% ସବ୍‌ସିଡ଼ି ପ୍ରଦାନ କରୁଛନ୍ତି । ସମ୍ବଲପୁର ନିକଟରେ ଟର୍ମିନାଲ୍ ମାର୍କେଟ ସ୍ଥାପନ କରିବାକୁ କେନ୍ଦ୍ରକୁ ରାଜ୍ୟ ସରକାର ପ୍ରସ୍ତାବ ଦେଇଥିବା ବୈଠକରେ ଉପସ୍ଥାପିତ ହୋଇଥିଲା । ଅନୁରୂପ ଭାବେ ରାଷ୍ଟ୍ରୀୟ କୃଷି ବିକାଶ ଯୋଜନା ମଧ୍ୟ ସଫଳତାର ସହ କାର୍ଯ୍ୟକାରୀ ହେଉଛି ବୋଲି ସମୀକ୍ଷା ବୈଠକରେ କେନ୍ଦ୍ରୀୟ ପ୍ରତିନିଧି ମତ ଦେଇଥିଲେ । ରାଜ୍ୟରେ ଧାନସଂଗ୍ରହ ବୃଦ୍ଧି ପାଉଥିଲେ ମଧ୍ୟ ଆବଶ୍ୟକ ଗୋଦାମଘର ନଥିବାରୁ ଏହାକୁ ଗଚ୍ଛିତ ରଖିବା ଗୁରୁତର ସମସ୍ୟା ହୋଇପଡ଼ିଛି । ଏଣୁ ପ୍ରତିବର୍ଷ ଅନ୍ୟୁନ ୧୦ ଲକ୍ଷ ଟନ୍ ଚାଉଳ ଅନ୍ୟ ରାଜ୍ୟକୁ ଚାଲାଣ କରିବା ପାଇଁ କେନ୍ଦ୍ର ବ୍ୟବସ୍ଥା କରିବାକୁ ଖାଦ୍ୟ ଯୋଗାଣ ବିଭାଗ ସଚିବ ପ୍ରସ୍ତାବ ଦେଇଥିଲେ । ରାଜ୍ୟ ସରକାରଙ୍କ ପକ୍ଷରୁ ଅତିରିକ୍ତ ୫ ଲକ୍ଷ ଟନ୍ ସାମଗ୍ରୀ ଗଚ୍ଛିତ କରିବାକୁ ଯୋଜନା କରିଥିବା ସେ ପ୍ରକାଶ କରିଥିଲେ । ଜବାହରଲାଲ ନେହେରୁ ସହରାଞ୍ଚଳ ଯୋଜନା (ଜେଏନ୍ଏନ୍‌ୟୁଆର୍ଏମ୍)ରେ ଭୁବନେଶ୍ୱରରେ ୭୫୦ କୋଟି ଟଙ୍କା ବ୍ୟୟରେ ସ୍ୱିରେଜ୍ ବ୍ୟବସ୍ଥା କାର୍ଯ୍ୟକାରୀ ହେଉଥିବା ବୈଠକରେ ଆଲୋଚନା ହୋଇଥିଲା । ଏହି କାର୍ଯ୍ୟ ମନ୍ଥର ଗତିରେ ଚାଲୁଥିବା ଏବଂ ଏଥିନିମନ୍ତେ ଜମି ଅଧିଗ୍ରହଣ ସମସ୍ୟା ଉପୁଜୁ ଥିବା ଜଣା ପଡ଼ିଥିଲା । ତେବେ ଜମି ଅଧିଗ୍ରହଣ ସାଙ୍ଗକୁ ଏହାର କାର୍ଯ୍ୟ ଜାରି ରଖିବାକୁ ମତପ୍ରକାଶ ପାଇଥିଲା । ଏହି ଯୋଜନାରେ ରାଜଧାନୀରେ ଜାନୁଆରୀ ସୁଦ୍ଧା ୫୫ଟି ନୂତନ ବସ୍ ଓ ୭୨ଟି ମିନିବସ୍ ଟାଉନ୍‌ବସ୍ ଭାବେ ଚାଲିବ ବୋଲି ସ୍ଥିର କରାଯାଇଛି । ଏହା ସହିତ ଐତିହ୍ୟ ସହର ପୁରୀରେ ମଧ୍ୟ ୨୦ରୁ ୨୫ଟି ବସ୍ ଚଳାଚଳ କରିବ । ଜାତୀୟ ଗ୍ରାମୀଣ କର୍ମନିଯୁକ୍ତି ଯୋଜନା (ଏନ୍‌ଆର୍‌ଇଜିଏସ୍)ରେ ହିତାଧିକାରୀମାନଙ୍କୁ ସେମାନଙ୍କର ଦେୟ ପ୍ରଦାନ ନେଇ ପ୍ରଚଳିତ ବ୍ୟବସ୍ଥା ସଫଳତାର ସହ କାର୍ଯ୍ୟକାରୀ ହୋଇପାରୁନାହିଁ ବୋଲି ଆଲୋଚନା ହୋଇଥିଲା । ଡାକଘର କିମ୍ୱା ବ୍ୟାଙ୍କ ମଧ୍ୟ ଏହି ସମସ୍ୟା ଦୂର କରିପାରୁନାହିଁ । ଏଣୁ ଦେୟ ବ୍ୟବସ୍ଥାକୁ ସରଳୀକୃତ କରିବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ କେନ୍ଦ୍ର ସରକାରଙ୍କୁ ପ୍ରସ୍ତାବ ଦିଆଯିବ । ଇନ୍ଦିରା ଆବାସ ଯୋଜନାରେ ଗତ ବର୍ଷ ନିର୍ବାଚନ ଘୋଷଣାର ଅବ୍ୟବହିତ ପୂର୍ବରୁ ସ୍ୱତନ୍ତ୍ର ଇନ୍ଦିରା ଆବାସ ଗୃହ ଘୋଷଣା କରାଯାଇଥିବାବେଳେ ଚଳିତବର୍ଷ ୨ ଲକ୍ଷ ୧୫ ହଜାର ଗୃହ ନିର୍ମାଣ ଲକ୍ଷ୍ୟ ରଖାଯାଇଛି । ମାତ୍ର ଏହାକୁ କାର୍ଯ୍ୟକାରୀ କରିବା ଦିଗରେ ସମସ୍ୟା ରହିଛି ବୋଲି ବୈଠକରେ ମତ ପ୍ରକାଶ ପାଇଥିଲା । ସମ୍ପ୍ରତି ପ୍ରଥମରୁ ୮ମ ଶ୍ରେଣୀ ପର୍ଯ୍ୟନ୍ତ ପିଲାଙ୍କ ନିମନ୍ତେ ଶିକ୍ଷା ଅଧିକାର କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟକୁ ପ୍ରଥମ ବର୍ଷ ୮ ହଜାର କୋଟି ଓ ଦ୍ୱିତୀୟ ବର୍ଷ ଆହୁରି ୧୧ ହଜାର କୋଟି ଟଙ୍କା ଆବଶ୍ୟକ ବୋଲି ବିଭାଗୀୟ ପ୍ରମୁଖ ସଚିବ କହିଥିଲେ । ପ୍ରଧାନମନ୍ତ୍ରୀ ଗ୍ରାମସଡ଼କ ଯୋଜନା (ପିଏମ୍‌ଜିଏସ୍‌ୱାଇ)ରେ ଅଦ୍ୟାବଧି ରାଜ୍ୟକୁ ୪ ହଜାର ୪୦୪ କୋଟି ଟଙ୍କା ମିଳିଥିବାବେଳେ ବ୍ୟୟ

ହୋଇଛି ୪ ହଜାର କୋଟି । ଏହା ସଫଳତାର ପରିଚୟ । ତେବେ ରାଜ୍ୟର ନକ୍ସଲପ୍ରବଣ ଅଞ୍ଚଳ ଓ ବହୁସଂଖ୍ୟକ ଛୋଟ ଛୋଟ ଆଦିବାସୀ ଜନବସତିକୁ ରାସ୍ତା ନିର୍ମାଣ ନେଇ ରହିଥିବା ଗାଇଡ଼୍‌ଲାଇନ୍‌କୁ ପରିବର୍ତ୍ତନ କରାଯାଉ ବୋଲି ବିଭାଗୀୟ ସଚିବ ପ୍ରସ୍ତାବ ଦେଇଥିଲେ । ସେହିପରି ସେହି ଆଦିବାସୀ ଇଲାକାଗୁଡ଼ିକୁ ପାନୀୟଜଳ ଯୋଗାଣ ନେଇ ରହିଥିବା ଗାଇଡ଼୍‌ଲାଇନ୍ ମଧ୍ୟ ପରିବର୍ତ୍ତନ କରିବାକୁ ପ୍ରସ୍ତାବ ଦିଆଯାଇଥିଲା । ପ୍ରତି ବିଦ୍ୟାଳୟ, ଅଙ୍ଗନବାଡ଼ି କେନ୍ଦ୍ରରେ ଗୋଟିଏ ଲେଖାଏଁ ପାଇଖାନା ନିର୍ମାଣ ପାଇଁ ଯେଉଁ ପ୍ରସ୍ତାବ ରହିଛି ତାହା ବାସ୍ତବରେ କାର୍ଯ୍ୟକାରୀ କରିବାରେ ରହିଥିବା ଅସୁବିଧା ସମ୍ପର୍କରେ ମଧ୍ୟ ଆଲୋଚନା ହୋଇଥିଲା । ସେହିପରି ସମନ୍ୱିତ ଶିଶୁବିକାଶ ଯୋଜନାରେ ପ୍ରତ୍ୟେକ ଅଙ୍ଗନବାଡ଼ି କେନ୍ଦ୍ରକୁ ଗୃହନିର୍ମାଣ କରିବା ପାଇଁ ଆବଶ୍ୟକ ଅର୍ଥର ବ୍ୟବସ୍ଥା କରାଯାଉ ବୋଲି ପ୍ରସ୍ତାବ ଦିଆଯାଇଥିଲା । ବୈଠକରେ ଅର୍ଥ, ଯୋଜନା ଓ ସମନ୍ୱୟ, ପଞ୍ଚାୟତିରାଜ, ବିଦ୍ୟାଳୟ ଓ ଗଣଶିକ୍ଷା, ଗୃହନିର୍ମାଣ ଓ ନଗର ଉନ୍ନୟନ, ଜଳସମ୍ପଦ, କୃଷି, ଖାଦ୍ୟ ଯୋଗାଣ ବିଭାଗର ପ୍ରମୁଖ ସଚିବ, ସଚିବ ଓ ସ୍ୱତନ୍ତ୍ର ସଚିବମାନେ ଯୋଗ ଦେଇଥିଲେ ।

## ନଭେମ୍ବର ପହିଲାରୁ ରାଜ୍ୟରେ ୮ଟି ଟ୍ରେନ୍ ଚାଲିବ

ନଭେମ୍ବର ମାସ ପହିଲାଠାରୁ ରେଳବାଇର ନୂତନ ସମୟ ସାରଣୀରେ ପୂର୍ବତଟ ରେଳପଥରେ ୮ଟି ନୂତନ ଟ୍ରେନ୍, ୪ଟି ଟ୍ରେନ୍‌ର ସଂପ୍ରସାରଣ ଏବଂ ଦୁଇଟି ଟ୍ରେନ୍‌ର ଚଳାଚଳ ବୃଦ୍ଧି ସହ ବହୁ ଟ୍ରେନ୍‌ର ସମୟରେ ପରିବର୍ତ୍ତନ କରାଯାଇଛି । ନୂତନ ଟ୍ରେନ୍‌ଗୁଡ଼ିକ ମଧ୍ୟରୁ ୨ଟି ଟ୍ରେନ୍‌କୁ ଦୈନିକ ଚଳାଚଳ କରାଯାଇଥିବା ବେଳେ ଗୋଟିଏ ଟ୍ରେନ୍ ସପ୍ତାହରେ ଦୁଇଥର ଚଳାଚଳ କରିବ ଏବଂ ୫ଟି ନୂତନ ସାପ୍ତାହିକ ଟ୍ରେନ୍ ପ୍ରଚଳନ କରାଯିବ ବୋଲି ଇଷ୍ଟକୋଷ୍ଟ ରେଳବାଇ ସୂତ୍ରରୁ ପ୍ରକାଶ ।

**ନୂତନ ଟ୍ରେନ୍ :** ଦୈନିକ ଦୁଇଟି ଟ୍ରେନ୍ ମଧ୍ୟରୁ ରାଉରକେଲା ଓ ଭୁବନେଶ୍ୱର ମଧ୍ୟରେ ଗୋଟିଏ ଏବଂ ରାଉରକେଲା ଓ କୋରାପୁଟ ମଧ୍ୟରେ ଗୋଟିଏ ଇଣ୍ଟରସିଟି ଏକ୍ସପ୍ରେସ୍ ଚଳାଚଳ କରିବ ।

ଭୁବନେଶ୍ୱର ଓ ନୂଆଦିଲ୍ଲୀ ମଧ୍ୟରେ ଗୋଟିଏ ତୁରନ୍ତ ସାପ୍ତାହିକ ନନ୍‌ଷ୍ଟପ୍ ସୁପରଫାଷ୍ଟ ଟ୍ରେନ୍ ଚଳାଚଳ କରିବ । ଏହି ଟ୍ରେନ୍ ଭୁବନେଶ୍ୱରଠାରୁ ରବିବାର ଏବଂ ନୂଆଦିଲ୍ଲୀରୁ ସୋମବାର ଦିନ ଛାଡ଼ିବ ।

ପୁରୀ ଓ ସୁରାଟ ମଧ୍ୟରେ ସମ୍ବଲପୁର-ଟିଟିଲାଗଡ଼-ରାୟପୁର ହୋଇ ଗୋଟିଏ ସାପ୍ତାହିକ ସୁପରଫାଷ୍ଟ ଟ୍ରେନ୍ ପ୍ରଚଳନ କରାଯାଉଛି ଯାହା ପୁରୀଠାରୁ ରବିବାର ଏବଂ ସୁରଟ୍‌ଠାରୁ ମଙ୍ଗଳବାର ଦିନ ଛାଡ଼ିବ ।

ସମ୍ବଲପୁର-ଝାରସୁଗୁଡ଼ା-ରାଇଗଡ଼ ଦେଇ ପୁରୀ ଓ ଲୋକମାନ୍ୟ ଟର୍ମିନସ୍ (ଏଲ୍.ଟି.ଟି.) ମଧ୍ୟରେ ଗୋଟିଏ ସାପ୍ତାହିକ ସୁପରଫାଷ୍ଟ ଟ୍ରେନ୍ ପ୍ରଚଳନ କରାଯିବ । ଏହା ପୁରୀଠାରୁ ମଙ୍ଗଳବାର ଓ ଏଲ୍.ଟି.ଟି.ଠାରୁ ଗୁରୁବାର ଦିନ ଛାଡ଼ିବ । ପୁରୀ ଓ କାମାକ୍ଷା ମଧ୍ୟରେ ଗୋଟିଏ ନୂତନ ସାପ୍ତାହିକ ଟ୍ରେନ୍ ପୁରୀଠାରୁ ଶନିବାର ଓ କାମାକ୍ଷାଠାରୁ ଗୁରୁବାର ଦିନ ପ୍ରଚଳନ ପାଇଁ ଏହି ସାରଣୀରେ ଦର୍ଶାଯାଇଛି ।

ହାଓଡ଼ା ଓ ଯଶୋବନ୍ତପୁର ମଧ୍ୟରେ ଗୋଟିଏ ନୂତନ ସାପ୍ତାହିକ ଟ୍ରେନ୍ ହାଓଡ଼ାଠାରୁ ରବିବାର ଓ ଯଶୋବନ୍ତପୁରଠାରୁ ଗୁରୁବାର ଦିନ ଛାଡ଼ିବ । ବିଶାଖାପାଟଣା ଓ ଏଲ୍.ଟି.ଟି. ମଧ୍ୟରେ ସପ୍ତାହକୁ ଦୁଇଦିନ ଚଳାଚଳ କରାଯିବାକୁ ଥିବା ଏକ ସୁପରଫାଷ୍ଟ ଟ୍ରେନ୍ ବିଶାଖାପାଟଣାଠାରୁ ବୁଧବାର ଓ ଶନିବାର ଏବଂ ଏଲ୍.ଟି.ଟି.ଠାରୁ ଗୁରୁବାର ଓ ରବିବାର ଦିନ ଛାଡ଼ିବ ।

**ସଂପ୍ରସାରଣ :** ରେଳବାଇର ନୂତନ ସମୟ ସାରଣୀରେ ୪ଟି ଟ୍ରେନ୍‌କୁ ସଂପ୍ରସାରଣ କରାଯାଇଛି । ରାୟପୁର-ଭୁବନେଶ୍ୱର ଓ ପାରାଦ୍ୱୀପ-ଭୁବନେଶ୍ୱର ଇଣ୍ଟରସିଟି ଏକ୍ସପ୍ରେସ୍ ଏବଂ ହାଓଡ଼ା-ଭୁବନେଶ୍ୱର ଧଉଳି ଏକ୍ସପ୍ରେସ୍‌କୁ ପୁରୀ ପର୍ଯ୍ୟନ୍ତ ସଂପ୍ରସାରଣ କରାଯିବାକୁ ନିଷ୍ପତ୍ତି ହୋଇଛି । ପୁରୀ-କେନ୍ଦୁଝରଗଡ଼ ଏକ୍ସପ୍ରେସ୍‌କୁ ବଡ଼ବିଲ ପର୍ଯ୍ୟନ୍ତ ସଂପ୍ରସାରଣ କରାଯିବ ।

**ଚଳାଚଳ ଦିବସ ବୃଦ୍ଧି :** ୨୪୪୩ ଭୁବନେଶ୍ୱର-ନୂଆଦିଲ୍ଲୀ ରାଜଧାନୀ ଏକ୍ସପ୍ରେସ୍ ଦୁଇଦିନ ପରିବର୍ତ୍ତେ ୪ ଦିନ ଚଳାଚଳ କରିବ । ଏହା ଭୁବନେଶ୍ୱରଠାରୁ ସୋମବାର, ମଙ୍ଗଳବାର, ଗୁରୁବାର ଓ ଶୁକ୍ରବାର ଦିନ ଛାଡ଼ିବାକୁ ଥିବାବେଳେ ନୂଆଦିଲ୍ଲୀଠାରୁ ମଙ୍ଗଳବାର, ବୁଧବାର, ଗୁରୁବାର ଓ ଶନିବାର ଦିନ ଛାଡ଼ିବ । ନଭେମ୍ବର ମାସ ୩ ତାରିଖରୁ ଏହି ଟ୍ରେନ୍ ଭୁବନେଶ୍ୱରଠାରୁ ଗୁରୁବାର ବ୍ୟତୀତ ସପ୍ତାହରେ ୩ ଦିନ ଚଳାଚଳ କରିବ ଏବଂ ୪ର୍ଥ ଦିନର ଚଳାଚଳକୁ ବିଜ୍ଞପ୍ତି ମାଧ୍ୟମରେ ପ୍ରକାଶ କରାଯିବ । ବିଶାଖାପାଟଣା-ସିକନ୍ଦରାବାଦ ଏକ୍ସପ୍ରେସ୍ ଦୈନିକ ଚଳାଚଳ କରିବ ।

**ଚଳାଚଳ ଦିବସ ପରିବର୍ତ୍ତନ :** ନଭେମ୍ବର ପହିଲାରୁ ଗୌହାଟୀ-ପୁରୀ ସାପ୍ତାହିକ ଏକ୍ସପ୍ରେସ୍ ଗୌହାଟୀଠାରୁ ଗୁରୁବାର ପରିବର୍ତ୍ତେ ରବିବାର ଦିନ ଛାଡୁଥିବା ବେଳେ ୩ ତାରିଖଠାରୁ ପୁରୀ-ଗୌହାଟୀ ଏକ୍ସପ୍ରେସ୍ ପୁରୀଠାରୁ ଶନିବାର ପରିବର୍ତ୍ତେ ମଙ୍ଗଳବାର ଛାଡ଼ିବ ।

ଏହି ନୂତନ ସମୟ ସାରଣୀରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା ନୂଆଦିଲ୍ଲୀ ପୁରୁଷୋତ୍ତମ ଏକ୍ସପ୍ରେସ୍ କଟକଠାରେ ଏବଂ ହାଓଡ଼ା-ଚେନ୍ନାଇ କରମଣ୍ଡଳ ଏକ୍ସପ୍ରେସ୍ ବ୍ରହ୍ମପୁରଠାରୁ ମଧ୍ୟରାତ୍ର ପରେ ଛାଡ଼ିବ ।

## ଛେଳିଗଡ଼ ସେଚ ପ୍ରକଳ୍ପ ସଂପର୍କିତ ସମୀକ୍ଷା ବୈଠକ

ଛେଳିଗଡ଼ ଜଳସେଚନ ପ୍ରକଳ୍ପକୁ ନେଇ ଏକ ଉଚ୍ଚସ୍ତରୀୟ ବୈଠକ ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ରଙ୍କ ଅଧକ୍ଷତାରେ ଗତ ଅକ୍ଟୋବର ୨୬ ତାରିଖରେ ରାଜ୍ୟ ସଚିବାଳୟଠାରେ ଅନୁଷ୍ଠିତ ହୋଇଯାଇଛି ।

ଛେଳିଗଡ଼ ଜଳସେଚନ ପ୍ରକଳ୍ପରୁ ପାଉଥିବା ଜଳକୁ ଛେଳିଗଡ଼ ଡ୍ୟାମ୍‌ଠାରୁ ଘୋଡ଼ାହାଡ଼ ନଦୀରେ ଡାକାଇଡିକିଲିଠାରୁ ଗୋଟିଏ ଚ୍ୟାନେଲରେ ସେହି ଜଳ ଆଣି ରାମନଦୀ ଅଞ୍ଚଳର ପ୍ରାୟ ୮୦୦୦ ଏକର ଜମି ଜଳସେଚନ ପାଇଁ ପୂର୍ବରୁ ନିର୍ଦ୍ଧାରିତ ହୋଇଥିଲା । ଏହି ମର୍ମରେ ପ୍ରକୃତରେ ସେଠାରୁ କେତେ ଅଧିକ ଜଳ ମିଳିପାରିବ ତାକୁ ଜଳସଂପଦ ବିଭାଗ ହାଇଡ୍ରୋଲୋଜି ସେକସନ୍ ପରୀକ୍ଷା କରିବ । ଅଧିକା ଜଳକୁ କିପରି ଦିଗପହଣ୍ଡି, ଜକର, କରପଡ଼ା, ଡୁମୁଳା, ତୁରୁଗୁଡ଼ି, ବାସୁଦେବପୁର, କୁସପଡ଼ା, ଗୋକର୍ଣ୍ଣପୁର, ସିଦ୍ଧେଶ୍ୱର ପଞ୍ଚାୟତରେ ଥିବା ମରୁଡ଼ିପ୍ରବଣ ଜମିକୁ ଜଳସେଚିତ କରାଯିବା ସଂଗେ ସଂଗେ କୁକୁଡ଼ାଖଣ୍ଡି ବ୍ଲକ୍‌ର ବାଲିପଡ଼ା, ଡେଙ୍ଗପଦରରୁ ଦକ୍ଷିଣଖଣ୍ଡି ପର୍ଯ୍ୟନ୍ତ ଜମିକୁ କିପରି ଜଳସେଚିତ କରାଯିବ ତା'ର ଅନୁଧ୍ୟାନ କରାଯାଇ ରିପୋର୍ଟ ପ୍ରସ୍ତୁତ କରାଯାଇ କେନ୍ଦ୍ର ଜଳସଂପଦ କମିଶନକୁ ମଧ୍ୟ ରିପୋର୍ଟ ପଠାଯିବ । ବ୍ରହ୍ମପୁର ସହରର ପାନୀୟ ଜଳ ଆବଶ୍ୟକତାକୁ ଦୃଷ୍ଟିରେ ରଖି ଦକ୍ଷିଣପୁରଠାରେ ଆଉ ୧୦୦ ଏକର ଜମିରେ ଆଉ ଗୋଟିଏ ଜଳଭଣ୍ଡାରକୁ ତିଆରି ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ଏହି ଜଳଭଣ୍ଡାରକୁ ଜଳସଂପଦ ବିଭାଗର ସେମାନଙ୍କର ସୋରଡ଼ା, ଭଞ୍ଜନଗର ଏବଂ ଅଡ଼ବା ଥିବା ଜଳଭଣ୍ଡାରକୁ ଜଳ ଯୋଗାଇ ଦେବା ପାଇଁ ନିଷ୍ପତ୍ତି ନିଆଗଲା । ଆବଶ୍ୟକ ପଡ଼ିଲେ ଛେଳିଗଡ଼ରୁ ମଧ୍ୟ ବ୍ରହ୍ମପୁରକୁ ଜଳ ଯୋଗାଇ ଦିଆଯିବା ପାଇଁ ବ୍ରହ୍ମପୁର କର୍ପୋରେସନ ଏବଂ ନଗର ଉନ୍ନୟନ ବିଭାଗ ତୁରନ୍ତ ତାହା କାର୍ଯ୍ୟକରିବା ପାଇଁ କୁହାଗଲା ।

ଉକ୍ତ ପ୍ରକଳ୍ପରୁ ଗଜପତି ଜିଲ୍ଲାର ମହେନ୍ଦ୍ରଗଡ଼ ଓ ଛେଳିଗଡ଼ ଅଞ୍ଚଳରେ ଆଉ ୧୦୦୦ ଏକର ଜମିକୁ ଜଳସେଚିତ କରିବାକୁ ନିଷ୍ପତ୍ତି ନିଆଯାଇଥିଲା । ବାସଚ୍ୟୁତ ପରିବାରଗୁଡ଼ିକୁ ଗଞ୍ଜାମର ବଡ଼ସାମନ୍ତପୁର, ଜସେଇପୁରଠାରେ ପୁନର୍ବାସ ଥଇଥାନ ପାଇଁ ସମସ୍ତ ବ୍ୟବସ୍ଥା କରାଯିବ । ପୁନର୍ବାସ ଥଇଥାନ କାର୍ଯ୍ୟକ୍ରମରେ ଘର ତିଆରି, କ୍ଷତିପୂରଣ ଓ ପାରିପାର୍ଶ୍ୱ ଉନ୍ନତି ପାଇଁ ସମସ୍ତ ସୁବିଧା ଦିଆଯିବ ।

ଉକ୍ତ ବୈଠକରେ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ବଦ୍ରିନାରାୟଣ ପାତ୍ର, ବ୍ରହ୍ମପୁର ବିଧାୟକ ଡାକ୍ତର ରମେଶ ଚନ୍ଦ୍ର ଚ୍ୟାଉପଟ୍ଟନାୟକ, ବ୍ରହ୍ମପୁର ମେୟର ଶିବସୁନ୍ଦର ଦାଶ ଓ ବିଭାଗୀୟ ଅଫିସରମାନେ ଯୋଗ ଦେଇଥିଲେ ।

## ରାଜ୍ୟର ୧୪ଟି ବୃହତ୍ ପ୍ରକଳ୍ପର ଅଗ୍ରଗତି ଉପରେ ସମୀକ୍ଷା : ୨୧୦୩୧.୭୧ କୋଟି ଟଙ୍କାର ପୁଞ୍ଜି ଅଦ୍ୟାବଧି ବିନିଯୁକ୍ତ

ଗତ ସେପ୍ଟେମ୍ବର ୧୭ତାରିଖ ପୂର୍ବାହ୍ନରେ ରାଜ୍ୟ ଶିଳ୍ପ, ଇସ୍ପାତ ଓ ଖଣି ଏବଂ ସଂସଦୀୟ ବ୍ୟାପାର ମନ୍ତ୍ରୀ ଶ୍ରୀ ରଘୁନାଥ ମହାନ୍ତି ରାଜ୍ୟରେ ରାଜିନାମା ହୋଇଥିବା ୧୪ଟି ବୃହତ୍ ପ୍ରକଳ୍ପର ଅଗ୍ରଗତି ସଂପର୍କରେ ଇଡ୍‌କୋ ଟାୱାର ସମ୍ମିଳନୀ କକ୍ଷରେ ବିସ୍ତୃତ ଭାବେ ସମୀକ୍ଷା କରିଛନ୍ତି ।

ଏହି ସମୀକ୍ଷା ବୈଠକରେ ମୁଖ୍ୟତଃ ଜମି ଅଧିଗ୍ରହଣ, ଜଳ ଉପଲବ୍ଧତା, ଶକ୍ତି ଯୋଗାଣ, ବିସ୍ଥାପନ ଓ ପୁନର୍ବାସ, ସିଏସ୍‌ଆର୍ କାର୍ଯ୍ୟକ୍ରମର ବିସ୍ତାର ଉପରେ ସବିଶେଷ ଆଲୋଚନା ହୋଇଥିଲା । ବୃହତ୍ ପ୍ରକଳ୍ପଗୁଡ଼ିକର ମୋଟ ୨,୦୦,୬୫୩.୮୦ କୋଟି ଟଙ୍କାର

ପୁଞ୍ଜିନିବେଶର ପ୍ରସ୍ତାବ ଥିବାବେଳେ ଏ ପର୍ଯ୍ୟନ୍ତ ୨୧୦୩୧.୭୧ କୋଟି ଟଙ୍କାର ପୁଞ୍ଜିନିବେଶ ହୋଇଛି । ଏହି ସଂସ୍ଥାମାନଙ୍କରେ ପ୍ରାୟ ୨୫୮୦୭ ଜଣଙ୍କୁ ପ୍ରତ୍ୟକ୍ଷ ନିଯୁକ୍ତି ଦିଆଯାଇଛି ।

ବୃହତ୍ ପ୍ରକଳ୍ପଗୁଡ଼ିକର ମୋଟ ୪୫,୬୦୭ ଏକର ଜମି ଆବଶ୍ୟକ ଥିବା ବେଳେ ଏ ପର୍ଯ୍ୟନ୍ତ ୧୪୧୩୧.୯୦ ଏକର ଜମି ହସ୍ତାନ୍ତର କରାଯାଇଛି । ଶିଳ୍ପାନୁଷ୍ଠାନଗୁଡ଼ିକ ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକର ସମାଧାନ ଲାଗି ମନ୍ତ୍ରୀ ଶ୍ରୀ ମହାନ୍ତି ବିଭାଗୀୟ ମୁଖ୍ୟମାନଙ୍କୁ ନିର୍ଦ୍ଦେଶ ଦେବା ସହ ସମୟସୀମା ମଧ୍ୟରେ ପ୍ରକଳ୍ପ କାମ ସାରିବାକୁ ତଥା କର୍ପୋରେଟ ସାମାଜିକ ଦାୟିତ୍ୱବଦ୍ଧତା କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟକାରୀ କରି ଜନସାଧାରଣଙ୍କ ନିକଟବର୍ତ୍ତୀ ହେବାକୁ ଓ ସେମାନଙ୍କ ସହ ଆପୋଷ ଆଲୋଚନା ମାଧ୍ୟମରେ ସମସ୍ୟାର ସମାଧାନ କରିବାକୁ କମ୍ପାନୀଗୁଡ଼ିକୁ ପରାମର୍ଶ ଦେଇଥିଲେ । ସ୍ଥାନୀୟ ଲୋକଙ୍କ ପାଇଁ ଯେପରି ଅଧିକରୁ ଅଧିକ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯାଇପାରିବ ସେଥିପ୍ରତି ଗୁରୁତ୍ୱ ଦେବାକୁ କହିଥିଲେ । ରାଜ୍ୟର ପ୍ରତି ବ୍ଲକ୍‌ରେ ଅତି କମ୍‌ରେ ଗୋଟିଏ ଆଇଟିଆଇ ପ୍ରତିଷ୍ଠା ଲାଗି ସରକାରଙ୍କ ପ୍ରତିବଦ୍ଧତାକୁ ସେ ଦୋହରାଇ ଥିଲେ । ନିଜ ନିଜ ପ୍ରକଳ୍ପ ଅଞ୍ଚଳରେ ଯେପରି ଗୋଟିଏ ଆଇଟିଆଇ ପ୍ରତିଷ୍ଠା ହୋଇପାରିବ ସେ ଦିଗରେ କମ୍ପାନୀମାନେ ଉଦ୍ୟମ କରିବା ଆବଶ୍ୟକ, ଯାହାଦ୍ୱାରା ସ୍ଥାନୀୟ ତାଲିମପ୍ରାପ୍ତ ଯୁବକଯୁବତୀମାନେ ସେହି କମ୍ପାନୀମାନଙ୍କରେ ନିଯୁକ୍ତି ପାଇ ପାରିବେ ।

ଭବିଷ୍ୟତରେ ସୃଷ୍ଟି ହେବାକୁ ଥିବା ଜଳ ସଂକଟର ମୁକାବିଲା ଲାଗି ପ୍ରସ୍ତୁତ ହେବାକୁ କମ୍ପାନୀମାନଙ୍କୁ ମନ୍ତ୍ରୀ ପରାମର୍ଶ ଦେଇଥିଲେ । ଇବ୍ ଓ ସଫେଇ ନଦୀରେ ବ୍ୟାରେଜ୍ ନିର୍ମାଣ କରିବାକୁ ସେ ପରାମର୍ଶ ଦେଇଥିଲେ । ଶିଳ୍ପ ପ୍ରତିନିଧିମାନେ ସେମାନଙ୍କ ପ୍ରକଳ୍ପ କାର୍ଯ୍ୟକୁ ସଂପୂର୍ଣ୍ଣ କରିବା ନିମନ୍ତେ ବିହିତ ପଦକ୍ଷେପ ନେବେ ବୋଲି ଆଶ୍ୱାସନା ଦେଇଥିଲେ । ମନ୍ତ୍ରୀ ସ୍ଥାନୀୟ ଲଘୁ, କ୍ଷୁଦ୍ର ଓ ମଧ୍ୟମ ଶିଳ୍ପୋଦ୍ୟୋଗୀମାନଙ୍କ ପାଇଁ ଆନୁଷଙ୍ଗିକ ଶିଳ୍ପଗୁଡ଼ିକର ପ୍ରାଧାନ୍ୟ ଉପରେ ଗୁରୁତ୍ୱ ଦେଇଥିଲେ । ପସ୍କୋ, ଟାଟା ଷ୍ଟିଲ୍, ଆର୍ସେଲର, ମିତ୍ତଲ, ଓ୍ୱେଲସ୍ପନ୍ ପାଓ୍ୱାର ଆଣ୍ଡ୍ ଷ୍ଟିଲ୍, ଜିନ୍ଦଲ ଷ୍ଟିଲ୍ ଆଣ୍ଡ୍ ପାଓ୍ୱାର, ଷ୍ଟେରିଲାଇଟ୍ ଆଇରନ୍ ଏଣ୍ଡ୍ ଷ୍ଟିଲ୍, ଆଦିତ୍ୟ ଆଲୁମିନିୟମ୍, ଏସାର୍ ଷ୍ଟିଲ୍, ବେଦାନ୍ତ ଆଲୁମିନିୟମ, ଉତ୍ତମ ଗାଲଭା ଷ୍ଟିଲ୍, ଏସ୍.ଏସ୍.ଏଲ୍. ଏନର୍ଜି, ଭୂଷଣ ପାଓ୍ୱାର ଷ୍ଟିଲ୍, ଜିନ୍ଦଲ ଇଣ୍ଡିଆ ଥର୍ମାଲ ପାଓ୍ୱାର ଆଦି ୧୪ଟି ବୃହତ୍ ପ୍ରକଳ୍ପର ଅଧିକାରୀମାନେ ସେହି ବୈଠକରେ ଯୋଗ ଦେଇଥିଲେ ।

ରାଜ୍ୟ ସରକାରଙ୍କ ତରଫରୁ ଶିଳ୍ପ ବିଭାଗ କମିଶନର ତଥା ଶାସନ ସଚିବ ଶ୍ରୀ ସୌରଭ ଗର୍ଗ, ଇସ୍ପାତ ଓ ଖଣି ସଚିବ ଶ୍ରୀ ଅଶୋକ ଦଲଓ୍ୱାଇ, ଜଳସଂପଦ ସଚିବ ଶ୍ରୀ ସୁରେଶ କୁମାର ମହାପାତ୍ର, ରାଜସ୍ୱ, ଶକ୍ତି, ରାଜ୍ୟ ପ୍ରଦୂଷଣ ବୋର୍ଡ଼, ଇପିକଲ, ଇଡ଼କୋ ପ୍ରମୁଖର ବରିଷ୍ଠ ଅଧିକାରୀମାନେ ଯୋଗ ଦେଇ ସମୀକ୍ଷାରେ ଅଂଶଗ୍ରହଣ କରିଥିଲେ ।

